

# ବନଜ୍ୟୋସ୍ନା

**୨୫**

୨୦୦୨-୨୦୦୩

**ବାଙ୍କୀ ମହାବିଦ୍ୟାଳୟ**

●

ମହାଦେବୀ ନାମ ଚର୍ଚ୍ଚିକା ଯେ'ସ୍ଥାନେ
ନନ୍ଦୀ ନାମ-ମହାନନ୍ଦୀ,
ପର୍ବତର ନାମ ମହାପର୍ବତ ଯେ
ଆକାଶେ ଯାଇଛି ଭେଦି
ମହାନ୍ ସେ ବାଂକୀ ମାଟି-
ମହାବିଦ୍ୟାଳୟ ଛାତ୍ର ବୋଲି ଆମେ
ଗରବେ ଯାଉଛୁ ଫାଟି ।


ଅଧ୍ୟକ୍ଷ :
ପ୍ରାଧ୍ୟାପକ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଚନ୍ଦ୍ର ରାଜ

ମୁଖ୍ୟ ସମ୍ପାଦକ :
ପ୍ରାଧ୍ୟାପକ ଡକ୍ଟର ନିଶାକର ପାଢ଼ୀ

ସହଯୋଗୀ ସଂପାଦକ :
ପ୍ରାଧ୍ୟାପିକା ଶ୍ରୀମତୀ ମିନତି ନାୟକ
ଅଧ୍ୟାପକ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ସୁବୁଦ୍ଧି
ଅଧ୍ୟାପକ ଶ୍ରୀଯୁକ୍ତ ମୁରଲୀଧର ରଥ
ଅଧ୍ୟାପକ ଶ୍ରୀଯୁକ୍ତ ମନମୋହନ ଆଚାର୍ଯ୍ୟ
ଅଧ୍ୟାପକ ଶ୍ରୀଯୁକ୍ତ ଶଶିଭୂଷଣ ମହାପାତ୍ର

## || ଆମର ପ୍ରକାଶ ପାଇଲା ||


୧୯୯୯ : ବାଙ୍କୀ ବିଶେଷାଙ୍କ

୨୦୦୦ : କବିଚନ୍ଦ୍ର ବିଶେଷାଙ୍କ

୨୦୦୧ : ଗୋବିନ୍ଦ ରଥ ବିଶେଷାଙ୍କ

୨୦୦୨ : ବିଦ୍ୟାରଣ୍ୟ ବିଶେଷାଙ୍କ

୨୦୦୩ : ବାଂକୀ : କିଛି ଦୁଃଖ କିଛି ସୁଖ ସଂଖ୍ୟା


|| 'ବନଜ୍ୟୋତ୍ସ୍ନା' ର କୃତଜ୍ଞତାର ପାତ୍ର ||


ଶ୍ରୀ ସାମନ୍ତ ନାରାୟଣ ଶ୍ରୀଚନ୍ଦନ ମହାପାତ୍ର, ଶ୍ରୀଯୁକ୍ତ ଉନ୍ଦ୍ରମଣି ସାହୁ, ଶ୍ରୀଯୁକ୍ତ ଜ୍ଞାନେନ୍ଦ୍ର ମୋହନ ମିଶ୍ର
ଶ୍ରୀଯୁକ୍ତ ହର ପ୍ରସାଦ ଧଳ, ଶ୍ରୀଯୁକ୍ତ କୌଶିକ ନାୟକ, ଶ୍ରୀଯୁକ୍ତ ଭଗବାନ ସାମଲ, ଅଧ୍ୟାପକ ମନୋଜ କୁମାର ମହାପାତ୍ର
ଶ୍ରୀଯୁକ୍ତ ସୋମନାଥ ପୃଷ୍ଟି, ଶ୍ରୀଯୁକ୍ତ ଦ୍ୱାରିକାନାଥ ପଣ୍ଡା, ଶ୍ରୀମାନ୍ ନୀରୋଦ କୁମାର ମନ୍ତ୍ରୀ, ଶ୍ରୀମାନ୍ ଗୁରୁବାରୀ ରାଉତ (ବିପ୍ଳବ)
ଶ୍ରୀମାନ୍ ପ୍ରଦୀପ କୁମାର ପଣ୍ଡା, ଶ୍ରୀଯୁକ୍ତ ରମାକାନ୍ତ ଭଞ୍ଜ, ଶ୍ରୀମାନ୍ ରାକେଶ ଆଇନ୍ ଷ୍ଟାଇନ୍

ଏବଂ

କବିକେଶରୀ ଶ୍ରୀଯୁକ୍ତ ନବକିଶୋର ମହାରଣା



Photographs :
**STUDIO RENUKA**
Cuttack Road, Banki, Cuttack

Printed at :
**DASH PRINTERS**
Cuttack-1, Ph : 0671-2617719

**|| *Cover :* Sri Jiten Kr. Swain ||**

## ।। ବାଂକୀର ବୀରାରାଣୀ ଶୁକଦେଈ (ଖ୍ରୀ ୧୬୮୬-ଖ୍ରୀ ୧୭୨୬)ଙ୍କ ଢାଲ ଓ ତରବାରୀ ।।



ରାଣୀ ଶୁକଦେଈଙ୍କ ଢ଼ାଲ ତରବାରୀ



ରାଣୀ ଶୁକଦେଈଙ୍କ ତରବାରୀ



ରାଣୀ ଶୁକଦେଈଙ୍କ ତରବାରୀ



ସେ କାଳର ତୋପ

।। ବାଂକୀର ରାଜାସାହେବ ଶ୍ରୀ ସାମନ୍ତ ନାରାୟଣ ଶ୍ରୀ ଚନ୍ଦନ ମହାପାତ୍ରଙ୍କ ସୌଜନ୍ୟରୁ ।।

କେବଳ ବାଂକୀ ବା ଓଡ଼ିଶାର ନୁହେଁ, ଏ ଦେଶ ତଥା ସମଗ୍ର ବିଶ୍ୱ ଇତିହାସରେ ସେ ଥିଲେ ଅନନ୍ୟା - ପ୍ରାୟ ତିନିଶହ ବର୍ଷ ତଳେ, ନାରୀ ସଶକ୍ତିକରଣର ପ୍ରଣବ ଉଚ୍ଚାରଣ - ଯୁଗଯୁଗ ଧରି ପୁରୁଷ ସମାଜର ଅବଜ୍ଞା ଓ ଅବହେଳା ପ୍ରତି ଏକ କଠୋର ପ୍ରତିବାଦ । ପୁରୁଷର ଆସ୍ପର୍ଦ୍ଧାକୁ, ଅହଂକାରକୁ ଉଲଗ୍ନ କରିବା ପାଇଁ; ପ୍ରତିଶୋଧର ଅଗ୍ନି ମଧ୍ୟରୁ ଜାତ; ଏ ଯୁଗର ଭିନ୍ନ ଯାଜ୍ଞସେନୀ - ଯନ୍ତ୍ରଣାରେ ବିଦୀର୍ଣ୍ଣ ମନୋଭୂମି - ସମ୍ଭୂତା - ସହାନୁଭୂତି ସଂପନ୍ନା, ଏ ଯୁଗର ଜାନକୀ ସେ ମହାଭୟଙ୍କରୀ ଦୁର୍ଗା, ପୁଣି ଅଭୟଦାୟିନୀ ଦେବୀ ପାର୍ବତୀ, ଯାହାଙ୍କର ବୀରତ୍ୱପୂର୍ଣ୍ଣ ଗାଥା ଗାନ କରି ପୁରୀର ସିପାହୀ ପଣ୍ଡା ଚାଖି ଖୁଣ୍ଟିଆ ଓରଫ୍ ଚନ୍ଦନ ହଜୁରୀ, ସେଦିନ ଝାନ୍ସି ରାଣୀ ଲକ୍ଷ୍ମୀ ବାଈଙ୍କୁ; ଯୁଦ୍ଧ ଭୂମିକୁ ନିର୍ଭୟରେ ଲମ୍ଫ ଦେବା ପାଇଁ ଉନ୍ମାଦିତ ଏବଂ ଅନୁପ୍ରେରିତ କରିଥିଲେ - ସେ ହେଉଛନ୍ତି ଆମର ଏଇ ବାଂକୀ ମାଟିର ବୀରାଙ୍ଗନା ରାଣୀ ଶୁକଦେଈ ।

## ।। ବ୍ୟାସ କବି ଫକୀର ମୋହନଙ୍କ 'ଛ' ମାଣ ଆଠଗୁଣ୍ଠ'ର ଭାବଭୂମି ।।

(ଶ୍ରୀଯୁକ୍ତ ଇନ୍ଦ୍ରମଣି ସାହୁ (ତଳ ପାଥପୁର)ଙ୍କ ସୌଜନ୍ୟରୁ)



ତଥାକଥିତ ରାମଚନ୍ଦ୍ର ମଙ୍ଗରାଜଙ୍କ ଘର
(ତଳ ପାଥପୁର)



ସେଇ ଘରବୁଡ଼ା ଛ'ମାଣ ଆଠଗୁଣ୍ଠ
(ତଳ ପାଥପୁର)



ନାଣ୍ଡି ଭଗିଆ ଡିହ
(ତଳ ପାଥପୁର)



ଅସୁରୀ ଦୀଘିର ରୂପ କଳ୍ପନା
(ଡମପଡ଼ା)



ଧ୍ୱଂସପ୍ରାୟ ଫକୀର ମୋହନ ବଙ୍ଗଳା
(ଡମପଡ଼ା)



କୃଷ୍ଣକୁମାରୀ (ଫକୀର ମୋହନଙ୍କ ପତ୍ନୀ) କୂଅ
(ଡମପଡ଼ା)

କାଳ-ଜ୍ଞାନ ନଥିବା କେତେଜଣ ସମାଲୋଚକ କେନ୍ଦ୍ରାପଡ଼ା ଅଞ୍ଚଳକୁ କେନ୍ଦ୍ରକରି ଫକୀର ମୋହନଙ୍କ 'ଛ' ମାଣ ଆଠଗୁଣ୍ଠ' ଲେଖାଯାଇଛି ବୋଲି କହିଛନ୍ତି । ମାତ୍ର ଓଡ଼ିଆ ଭାଷାର ଏହି ସର୍ବ ପ୍ରଥମ ସାମାଜିକ ଉପନ୍ୟାସର ଭାବ-ଭୂମି ହେଉଛି ଆମର ଏହି ବାଂକୀ-ଡମପଡ଼ା ଅଞ୍ଚଳ – ବିଶେଷ କରି 'ଚଳ ପାଥପୁର' ଗ୍ରାମ । ଡମପଡ଼ା ଗଡ଼ରେ ପ୍ରାୟ ଚାରିବର୍ଷକାଳ, ଦୁଇ ଦୁଇଥର ଦେବାନ ହେଲା ପରେ, ଫକୀର ମୋହନ ନାନା ସାମାଜିକ ସମସ୍ୟା-ଶଙ୍କୁଳ ତୀବ୍ର ଅନୁଭୂତିକୁ ପୁଂଜି କରି; ଏଠାରୁ ୧୮୯୬ ସାଲ୍‌ରେ ବିଦାୟ ନେଇଥିଲେ । ତା'ପରେ ପରେ 'ଛ'ମାଣ ଆଠଗୁଣ୍ଠ' ଲେଖାଗଲା । ୧୮୯୭ ସାଲ୍ ଅକ୍ଟୋବର ସଂଖ୍ୟାରୁ ୧୮୯୯ ସାଲ୍ ଜୁଲାଇ ସଂଖ୍ୟା ମଧ୍ୟରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏଇଟି କ୍ରମାଗତ ଭାବେ ପ୍ରକାଶ ପାଇଲା । ଏହାପରେ ଯାଇ ସେ କେନ୍ଦ୍ରାପଡ଼ାର ଲକ୍ଷ୍ମୀ ନାରାୟଣ ଜଗଦେବଙ୍କଠାରୁ ଟେଲିଗ୍ରାଫିକ୍ ଡାକରା ପାଇ, ବହୁ କଷ୍ଟ କରି ନଦୀ ପଥରେ ଷ୍ଟିମର୍‌ରେ ଯାଇ ପ୍ରଥମ ଥର ପାଇଁ କେନ୍ଦ୍ରାପଡ଼ାରେ ପହଞ୍ଚିଲେ, ୧୮୯୯ ସାଲ୍ ଅକ୍ଟୋବର ୨୭ ତାରିଖରେ – ଅର୍ଥାତ୍ 'ଛ'ମାଣ ଆଠଗୁଣ୍ଠ' ପୂର୍ଣ୍ଣ ପ୍ରକାଶନର ତିନିମାସ ପରେ । କେନ୍ଦ୍ରାପଡ଼ାରେ ପୁଣି ତା'ଙ୍କର ରହଣି ଥିଲା ମାତ୍ର ନଅଟି ମାସ । ଗୁରୁତ୍ୱପୂର୍ଣ୍ଣ କଥା ହେଲା – ଫକୀର ମୋହନ ତା'ଙ୍କର ଆତ୍ମଜୀବନୀରେ ଅତ୍ୟନ୍ତ କୃତଜ୍ଞତାର ସହିତ ସ୍ୱୀକାର କରିଛନ୍ତି – " XXX ତାଙ୍କ (ଡମପଡ଼ା ରାଜାଙ୍କ) ନିଜ ଦପ୍ତରରୁ ଯେଉଁ ବଡ଼ କାଚ ଦୁଆତଟି ଦେଇଥିଲେ; XXX ମୋହର ସମସ୍ତ କବିତା, ସମସ୍ତ ଉପନ୍ୟାସ ଏହି ଦୁଆତ କାଳିରେ ଲେଖା । ଦୁଆତ ପାଖରେ ବସିଲେ, ସେହି ରାଜା ରଘୁନାଥ ମାନସିଂହ ଭ୍ରମରବରଙ୍କ ଗମ୍ଭୀର ମୂର୍ତ୍ତି ମନରେ ପଡ଼େ । XXX ଯେମନ୍ତ ରାଜା ସାହେବ ମୋତେ କହୁଅଛନ୍ତି ମୁଁ ଲେଖିଯାଉଅଛି ।"

୧୮୭୪ ସାଲ୍‌ରେ ପ୍ରକାଶିତ ବଂଗଳାର ଲେଖକ ରେଭରେଣ୍ଡ ଲାଲ୍‌ବିହାରୀ ଦେ'ଙ୍କ ଇଂରାଜୀ ଉପନ୍ୟାସ "Bengal Peasant's Life " ର ପ୍ରେରଣାରେ 'ଛ'ମାଣ ଆଠଗୁଣ୍ଠ'ଟି ରଚିତ ହୋଇଛି ବୋଲି ବିଶ୍ୱାସ କରାଯାଏ । ଏହି ପ୍ରେରଣା ସହିତ ବାଂକୀ ଡମପଡ଼ା ଅଞ୍ଚଳର ତତ୍କାଳୀନ ସାମାଜିକ ଉପଲବ୍ଧିର ସଂଶ୍ଳେଷଣରେ ଛ'ମାଣ ଆଠଗୁଣ୍ଠଟି ପରିକଳ୍ପିତ । ଏହିଠାରେ ସେ ସାକ୍ଷାତ୍ କରିଛନ୍ତି; ସମାଜର ବହୁ ଖଳ ଓ ଦୁର୍ବଳ ଚରିତ୍ରଙ୍କୁ – ସର୍ବୋପରି ରାଜାଙ୍କ ସର୍ବରାକାର ଖୋଦ୍ ରାମଚନ୍ଦ୍ର ମଙ୍ଗରାଜ ନାମଧେୟ ରକ୍ତ ମାଂସ ଦେହଧାରୀ ବ୍ୟକ୍ତି ବିଶେଷଙ୍କୁ । ଏବେ ବି ଅଭିଶପ୍ତ 'ଛ'ମାଣ ଆଠଗୁଣ୍ଠ'ଟି ଚଳ ପାଥପୁରରେ ଦୃଷ୍ଟିଗୋଚର ହୁଏ ।

## ।। ପବିତ୍ର, ସୁନ୍ଦର, ଭାବୁକର ଭୂମି : ମା' ଚର୍ଚ୍ଚିକା-ଧାମ : ବାଂକୀ ।।



ମା' ଚର୍ଚ୍ଚିକାଙ୍କ ମନ୍ଦିର, ରଟିକ ଗିରି ଓ ରେଣୁକା ନଦୀ



ସ୍ୱରୂପା ଅଂଶୁପା ଲୋକେ ଅଗୋଚର



କବିଚନ୍ଦ୍ର କାଳୀଚରଣଙ୍କ ଖମାରଙ୍ଗ ଗୃହ

## ।। ଆମର ପ୍ରିୟ ଅଧ୍ୟକ୍ଷ ।।



• ପ୍ରାଧ୍ୟାପକ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଚନ୍ଦ୍ର ରାଜ •

ସେଦିନ ମୁଁ ସିଣ୍ଡିକେଟ୍ ମିଟିଂରେ ଯୋଗଦେବାକୁ ଭୁବନେଶ୍ୱର ଯାଉଥାଏ । ଜନୈକ ତରୁଣ ଅଧ୍ୟାପକ ବଂଧୁ ମୋତେ ଖୋର୍ଦ୍ଧାରୁ ଲିଫ୍ଟିଏ ମାଗିଲେ । ପୂର୍ବରୁ କିଞ୍ଚିତ୍ ପରିଚୟ ଥିଲା । ସେ ଯାଉଥିଲେ ତା'ଙ୍କର ଜଣେ ବଂଧୁଙ୍କ ପାଇଁ କନ୍ୟାଘର ଦେଖିବାକୁ । ଯା'ହେଉ, ଆଳାପ ଆଲୋଚନା ମଧ୍ୟରେ ସେ ଯେତେବେଳେ ଜାଣିବାକୁ ପାଇଲେ ଯେ; ଆଗାମୀ ୨୦୦୪ରେ ମୁଁ ଅବସର ନେବାକୁ ଯାଉଛି, ଏଥିପାଇଁ ଅବଶ୍ୟ ଦି'ପଦ ଦୁଃଖ ପ୍ରକାଶ କଲେ (ବୋଧହୁଏ ମୋ' ଗାଡ଼ିରେ ଯାଉଥିବାରୁ) । ମାତ୍ର ତା'ପରେ କୌଣସି କାରଣରୁ ଶିକ୍ଷା ବିଭାଗର ବରିଷ୍ଠ ଗୋଷ୍ଠୀ ଉପରେ ଅଚାନକ ତା'ଙ୍କର ବିକ୍ଷୋଦ୍‌ଗାର ଆରମ୍ଭ ହୋଇଗଲା । ମୁଁ ନୀରବରେ ତା'ଙ୍କର ଭାଷଣ ଶୁଣୁଥିଲି – 'ଏବେ ସବୁ ଅବସର ନେଉଥିବା ବୃଦ୍ଧ ଜରଦ୍‌ଗବମାନେ ସମସ୍ତ ପ୍ରକାର ସୁବିଧା ସୁଯୋଗ ଲାଭ କରିଗଲେ; ଅଥଚ ସମସ୍ତେ ଯେ ଯୋଗ୍ୟ ଥିଲେ, ଏ କଥା ଜୋର ଦେଇ କୁହାଯାଇ ପାରିବ ନାହିଁ । ସେମାନେ ଏଇଥିପାଇଁ ଭାଗ୍ୟବାନ୍ ଯେ, ପରାଧୀନତାର ଜିନ୍ ଭିତରୁ ସେମାନେ ସବୁ ଜନ୍ମ ନେଇଥିଲେ । ସେ କାଳରେ କେବଳ ଜିନ୍ଦାବାଦ-ମୁର୍ଦ୍ଦାବାଦ କରି କେତେଜଣ ସଂଗ୍ରାମୀ ଭତ୍ତା ପାଇଲା ଭଳି, ଏମାନେ ଉଚ୍ଚ ହାରରେ ଦରମା ପାଇ ଶିକ୍ଷା ବିଭାଗର ବିଭିନ୍ନ ପଦପଦବୀ ଅଳଙ୍କୃତ କରିଗଲେ । ନମ୍ରତା, ସହିଷ୍ଣୁତା ଗୁଣରେ ଉପରିସ୍ଥମାନଙ୍କୁ ସନ୍ତୁଷ୍ଟ କରିଦେଲେ, ଅଥଚ ଆମମାନଙ୍କ ପାଇଁ କିଛି ବି କଲେ ନାହିଁ ! ଏ ସବୁ ସଂଳାପର ମଝିରେ ମଝିରେ ବ୍ରାକେଟ୍ ଦେଲାପରି, ମୋତେ ସେ ମୁଗ୍ଧ କରୁଥା'ନ୍ତି – 'ସାର୍, ଆପଣ ଅବଶ୍ୟ ଏ ଦୃଷ୍ଟିରୁ ଭିନ୍ନ ', 'ଆପଣ ଜଣେ ଉତ୍ତମ ଅଧ୍ୟାପକ ଏବଂ ସଫଳ ଅଧ୍ୟକ୍ଷ' ଇତ୍ୟାଦି ଇତ୍ୟାଦି ( ଏ ସବୁ ବୋଧହୁଏ, ମୋ' ଗାଡ଼ିରେ ସେ ସୁବିଧାରେ ଏବଂ ବିନା ଖର୍ଚ୍ଚରେ ଭୁବନେଶ୍ୱର ଯାଉଥିବାରୁ ) ।

ସେହି ତରୁଣ ବଂଧୁଙ୍କ ଈର୍ଷା ଓ ଅସୂୟା ଅପେକ୍ଷା, ତା'ଙ୍କର ସାଧାରଣ ଶାଳୀନତା ଜ୍ଞାନର ଅଭାବକୁ ମଧ ମୁଁ ଲକ୍ଷ୍ୟ କରୁଥିଲି । ଏ ଭିତରେ ତା'ଙ୍କର ରହଣି ସ୍ଥଳ ଖଣ୍ଡଗିରି ଛକ ଆସିଯାଇଥିଲା । ଗାଡ଼ିରୁ ଓହ୍ଲାଇ ଯାଉ ଯାଉ କହିଲେ, 'ସାର୍, ଆସନ୍ତୁ ଏଠାରେ ମୋ ସହ ଟିକେ ଚା' ଖାଇକରି ଯିବେ ।'

ସମୟ ସେତେବେଳକୁ ଦଶଟା ତିରିଶ । ମୋ'ର ମିଟିଂ ଥାଏ ଏଗାରଟାରେ । ଧନ୍ୟବାଦର ସହିତ ମୁଁ କହିଲି, 'ଆପଣ ପରା ଲିଫ୍ଟ ମାଗିଲା ବେଳେ ତରତର ହୋଇ କହୁଥିଲେ, ଦଶଟା ବେଳେ ଆପଣଙ୍କ ବଂଧୁଙ୍କ ଘରେ ପହଞ୍ଚିବା ନିହାତି ଜରୁରୀ ! ସେଥିପାଇଁ ବସ୍‌ରେ ନ ଆସି ମୋ' ସହ ଆସିଲେ । ଏବେ ଘଡ଼ିକୁ ଚାହାନ୍ତୁ ତ ?' ମୋ' କଥାରେ ତା'ଙ୍କର ଉତ୍ତର ଥିଲା, 'ସାର୍, କନ୍ୟାଘର ଆଖିରୁ ପାଣି ମଲା ପର୍ଯ୍ୟନ୍ତ, ସେମାନେ ଅପେକ୍ଷା କରିବାକୁ ବାଧ । ଆଜିକାଲି କ'ଣ ସହଜରେ ବର ମିଳୁଛନ୍ତି ? ବଂଧୁ ତା'ଙ୍କର ବାଛିବେ କନ୍ୟାକୁ, ମାତ୍ର ମୋ ଉପରେ କି ଦାୟିତ୍ୱ ଜାଣନ୍ତି – ମୁଁ ଉଚ୍ଚା ଯୌତୁକର ଦାବୀଟା ହିଁ ଶୁଣାଇବି ।

ମୁଁ କେବଳ ନିର୍ବାକ୍ ଭାବରେ ସେଇ ବିଚିତ୍ର ଚରିତ୍ରଟିକୁ ଚାହିଁଥିଲି । ସେ ଚାଲିଗଲେ । ସେ ଗଲାପରେ ଭାବୁଥିଲି କି ଶିକ୍ଷା ଦେବେ ଏମାନେ ଶିଷ୍ୟ ସଂପ୍ରଦାୟକୁ ? ଗୁରୁ ଗୁରୁଜନଙ୍କ ପ୍ରତି ଏମାନଙ୍କ ଅସମ୍ମାନବୋଧ, ଈର୍ଷା ଓ ଅସୂୟା ଭାବ ଶୁଣି ପ୍ରଚୁର ଅର୍ଥଲିପ୍‌ସା, ଅନ୍ୟ ଦିଗରେ କର୍ତ୍ତବ୍ୟନିଷ୍ଠା ଏବଂ ସମୟାନୁବର୍ତ୍ତିତାର ଅଭାବ !! ସେ ରୀତିମତ୍ କଲେଜ ଯାଉଥିବେ ତ ? ଯଥା ସମୟରେ କ୍ଲାସ୍ ନେଉଥିବେ ତ ?? ଆଉ ଅଧିକ କିଛି ଭାବି ହେଲା ନାହିଁ !

ଆଜିକାଲି ଏମିତି ଆତ୍ମ-ସମୀକ୍ଷା ଅଭାବରୁ ଚାଲୁଣୀମାନେ ଛୁଞ୍ଚିମାନଙ୍କୁ ଉପହାସ କରିବାକୁ ପଶ୍ଚାତ୍‌ପଦ ହେଉ ନାହାନ୍ତି । ଏଇଥିପାଇଁ ଦେଶର ସମସ୍ତ ବ୍ୟବସ୍ଥା ଯେପରି ଏକ ବିପର୍ଯ୍ୟୟ ଦିଗକୁ ଗତି କରିଚାଲିଛି । ନିଶାଗ୍ରସ୍ତ ନେତା ମଞ୍ଚରେ ନିଶା ନିବାରଣ ପାଇଁ ଠିପିଖୋଲା ସୁନ୍ଦର ଭାଷଣ ବାଜି ମାରୁଛି, ଦୁର୍ନୀତିଗ୍ରସ୍ତ ଲୋକ ତୁଳସୀମାଳ ପକାଇ ଦୁର୍ନୀତି ବିରୁଦ୍ଧରେ ପ୍ରବଚନ ଦେଉଛି । ଛାତ୍ରସମାଜ ଠାରୁ ଆରମ୍ଭ କରି ଦେଶର ଜନସାଧାରଣ ସଦାସର୍ବଦା ଏମାନଙ୍କ ପ୍ରତି ସଜାଗ ଓ ସତର୍କ ରହିବା ଦରକାର ।

- ସମଗ୍ର ରାଜ୍ୟରେ ଏକ ନୂତନ ଦିଗ୍‌ଦର୍ଶନ ଦେଇଥିବା ଆମ ମହାବିଦ୍ୟାଳୟ ମୁଖପତ୍ର 'ବନଜ୍ୟୋତ୍ସ୍ନା'ର ସମସ୍ତ ପ୍ରକାର ପ୍ରଶସ୍ତି ଓ ସଫଳତା ପଛରେ; ବାଙ୍କୀ ମହାବିଦ୍ୟାଳୟର ଛାତ୍ର ସମାଜ, ସମସ୍ତ କର୍ମଚାରୀ, ପରିଚାଳନା ସମିତି, ସର୍ବୋପରି ବାଙ୍କୀର ଜନସାଧାରଣଙ୍କର ସାହାଯ୍ୟ, ସହଯୋଗ ଏବଂ ପ୍ରେରଣା ରହିଛି । ଆଜି ମୋ' ସହିତ ମୁଖ୍ୟ ସଂପାଦକଙ୍କ ଆସନ୍ନ ଅବସର (୨୦୦୪ ସାଲ) ଅବକାଶରେ ଉପର୍ଯ୍ୟୁକ୍ତ ସମସ୍ତଙ୍କୁ କୃତଜ୍ଞତା ଜଣାଇବା ସହ. ମୁଖପତ୍ରର ଏହି ପରଂପରାକୁ ଆମର ଉତ୍ତର ଦାୟାଦ ଅବ୍ୟାହତ ରଖିବେ ବୋଲି ମୋ'ର ବିଶ୍ୱାସ ରହିଛି ।

|| ଅଧ୍ୟକ୍ଷ ମହୋଦୟଙ୍କ ସହ ସଂପାଦନା ମଣ୍ଡଳୀ ||



ବାମରୁ :

ଅଧ୍ୟାପକ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ସୁବୁଦ୍ଧି
ଅଧ୍ୟାପକ ଶ୍ରୀଯୁକ୍ତ ମନମୋହନ ଆଚାର୍ଯ୍ୟ
ପ୍ରାଧ୍ୟାପକ ଡକ୍ଟର ନିଶାକର ପାଢ଼ୀ - ମୁଖ୍ୟ ସଂପାଦକ
ପ୍ରାଧ୍ୟାପକ ଶ୍ରୀଯୁକ୍ତ ପ୍ରଫୁଲ୍ଲ ଚନ୍ଦ୍ର ରାଜ - ଅଧ୍ୟକ୍ଷ
ପ୍ରାଧ୍ୟାପିକା ଶ୍ରୀମତୀ ମିନତି ନାୟକ
ଅଧ୍ୟାପକ ଶ୍ରୀଯୁକ୍ତ ମୁରଲୀଧର ରଥ
ଅଧ୍ୟାପକ ଶ୍ରୀଯୁକ୍ତ ଶଶିଭୂଷଣ ମହାପାତ୍ର

ସଂପାଦକୀୟ

## || ଉର୍ବରା ବାଂକୀ ଓ ବର୍ବର ବନ୍ୟା ||

• କେଉଁ ଚୌଦ ପୁରୁଷ ଅମଳରୁ ଏକ ଆଦିମ ପ୍ରଶ୍ନଟିଏ ଆମର ପିଲାମାନଙ୍କୁ – 'ବନ୍ୟା ଉପରେ ରଚନା' ଲେଖ । ଏହା ଏମିତି ଲେଖା ହୋଇ ଆସୁଛି ଏବଂ ଲେଖା ବି ହୋଇ ଚାଲିଥିବ ଯାବଦ୍ ଚନ୍ଦ୍ରାର୍କେ – ଯେହେତୁ ନଦୀ ମାତୃକା ଓଡ଼ିଶାରେ ପ୍ରତ୍ୟେକ ବର୍ଷ କେଉଁଠି ନା କେଉଁଠି ବନ୍ୟା ହେଉଛି ଏବଂ ଭବିଷ୍ୟତରେ ବି ହେବ ନିଶ୍ଚୟ । କଥା ଅଛି 'ବଢ଼ି, ଝଡ଼ି, ମରୁଡ଼ି/ଓଡ଼ିଆଙ୍କ ଚିରନ୍ତନ ରଡ଼ି ।' ପ୍ରକୃତି ଉପରେ ଏଠାରେ ଅତ୍ୟାଚାର, ପୁଣି ସମ୍ବଳ ଶୂନ୍ୟ ଆମର ସରକାର – ଆନ୍ଧ୍ରରୁ ଦିଲ୍ଲୀ ପର୍ଯ୍ୟନ୍ତ ଅନ୍ୟମାନଙ୍କ ସହାନୁଭୂତିରେ ହିଁ ଯେମିତି ବଞ୍ଚିରହିଛି, ଓଡ଼ିଆ ଜାତିଟା ବିଚରା !

ସେ ଯା'ହେଉ – 'ବନ୍ୟା ଉପରେ ରଚନା', ପୁଣି ଆମ ବାଙ୍କୀ ପିଲାଙ୍କ ପାଇଁ ? ମାଛମାନଙ୍କୁ ପାଣି ସଂପର୍କରେ ପଚାରିବା ଯାହା; ଅଧିକାଂଶ ବର୍ଷ ବଢ଼ି ଭିତରେ ଉବୁଟୁବୁ ହେଉଥିବା ଆମ

ବାଙ୍କୀ ପିଲାଙ୍କୁ ଏହା ହେଉଛି ସେହିପରି ଏକ ହାସ୍ୟାସ୍ପଦ ପ୍ରଶ୍ନ ! ଜଘନ୍ୟ ବନ୍ୟା ବିଷୟରେ ଆମର ଧୁରନ୍ଧର ପିଲାମାନେ ହିଁ ସବୁଠାରୁ ସୁନ୍ଦର ରଚନା ଲେଖି ପାରିବେ । ସେମାନଙ୍କର ଆଶୈଶବ ଦାରୁଣ ଅନୁଭବରେ କେବଳ ବନ୍ୟା ଆଉ ବନ୍ୟା । ବାଲିରେ କ୍ରମଶଃ ପୋତି ହୋଇ ମହାନଦୀ ଏଠାରେ ଏବେ ଗର୍ଭବତୀ – ବାନ୍ତି କରୁଛି ଏ କୂଳ : ସେ କୂଳ । ଖାଲ, ବିଲରୁ ଉଠି, ରାସ୍ତାଘାଟ, ଘରଦ୍ୱାରଠାରୁ ଜୀବଜନ୍ତୁ ମଣିଷଙ୍କୁ ଯନ୍ତ୍ରଣା ଦେଇ ଜୀର୍ଣ୍ଣ ନକଲା ପର୍ଯ୍ୟନ୍ତ ଏଠାରେ ଜମେଇ ରହୁଛି ବନ୍ୟାଜଳ । ନଈପାଣି ନଈକୁ ଯାଉନାହିଁ, କି ଆମର ସିଲଟ ବିଚରା ଶୁଖୁନାହିଁ । ବର୍ଷାଋତୁ ତ ମାତ୍ର ଦୁଇମାସ - ଏଠାରେ କିନ୍ତୁ ବନ୍ୟା ଋତୁ ଚାରିମାସ । ବନ୍ୟା ହେଲା ମାତ୍ରେ ଖବରକାଗଜର ପ୍ରଥମ ପୃଷ୍ଠାରେ ଚିରାଚରିତ ସମ୍ବାଦ – 'ବାଂକୀ ବାହ୍ୟ ଜଗତରୁ ବିଚ୍ଛିନ୍ନ' । ଆମ ପିଲାମାନେ ତା'ହେଲେ କରିବେ କଅଣ ? ପାଣି ଘେରରେ ଥିବା ଘର ଭିତରେ ବନ୍ଦୀ ହୋଇ ଝର୍କାବାଟେ ବା ଛାତ ଉପରୁ ବନ୍ୟାର ଦୃଶ୍ୟକୁ ଅପଭୋଗ କରିବା ବ୍ୟତୀତ; ଆଉ କିଛି ଚାରା ନଥାଏ ସେମାନଙ୍କର । ଲାଭ ହୁଏ କେବଳ – ବନ୍ୟା ଉପରେ ରଚନା ଲେଖିବା ପାଇଁ ଅନୁଭୂତି କିଛି : ଶବ୍ଦ କିଛି । ସେମାନଙ୍କର ତେଣୁ ଅତି ସୁନ୍ଦର ରଚନା କେମିତି ନ ହେବ ଯେ ! ରଚନା ଲେଖା ଆରମ୍ଭ ହୋଇଯାଏ ......

..... ଏବଂ ବନ୍ୟା ଛାଡ଼ିଯାଏ – ସେତେବେଳକୁ ଆମ ପିଲାଙ୍କ ରଚନାର ଶେଷ ପାରାଟି ମଧ୍ୟ ଆସିଯାଇଥାଏ । ଯେଉଁଠି, ଯିଏ, ଯେତେବେଳେ ବି ବନ୍ୟା ଉପରେ ରଚନା ଲେଖିଛି; ସେମାନେ ଶେଷକୁ ଏମିତି ଦି'ପଦ ନିଶ୍ଚୟ ଲେଖନ୍ତି – 'ବନ୍ୟା ଅବଶ୍ୟ ଆମର ବହୁତ କ୍ଷତି କରେ, ମାତ୍ର ବନ୍ୟା ଦ୍ୱାରା ବିଲବାଡ଼ିରେ ପଟୁ ଚରିଯିବା ଫଳରେ ବର୍ଷ ବର୍ଷ ପାଇଁ ସେ ସବୁ ଉର୍ବର ହୋଇଯାଏ । ସତେଯେପରି ରାଗିଲା ମାଆଟିଏ ନିଜର ପିଲାଟିକୁ ପିଟାପିଟି ପରେ ଶେଷରେ ତା' ଗାଲରେ ବୋକ ଦେଉଛି ଗେହ୍ଲାରେ । ଆମର ବାଂକୀ ପିଲାମାନେ ଏଇଠି ଆଉଟିକେ ଅଧିକ କବି ହୋଇପଡ଼ନ୍ତି । ଏଇ ଯେମିତି – ବାଙ୍କୀ ହେଉଛି ବନ୍ୟାର କନ୍ୟା । ଯୌବନର ବନ୍ୟାରେ ଯେପରି ମଣିଷର ଶରୀର ହୁଏ ସୌଷ୍ଠବମୟ; ସେହିପରି ଏଠାରେ ସ୍ଫୀତବକ୍ଷା ମହାନଦୀର ଦୃଶ୍ୟ ଯେତିକି ସୁନ୍ଦର, ବନ୍ୟା ପରେ ଶସ୍ୟ ସମ୍ଭାର ଭରା ତା'ର ଦୁଇ କୂଳ ଦିଶେ ସେତିକି ଚମତ୍କାର ।

ଏବଂ ଏ କଥା ମଧ୍ୟ ଜଣେ ଲେଖିଦେଲା ଯେ – ଆମର ମୁଖପତ୍ର 'ବନଜ୍ୟୋତ୍ସ୍ନା'ରେ ବନ୍ୟା ଆସି ଯେପରି ବାଂକୀର ଇତିହାସକୁ ଖୋଳତାଡ଼ କରୁଛି; ସେହିପରି ବୟାଳିଶରେ ଦିନେ ବନ୍ୟା ଆସି ଲୁପ୍ତପ୍ରାୟ ପୁରାଣରୁ ରେଣୁକାକୁ ଆବିଷ୍କାର କରିଗଲା ବାଂକୀରେ ! ବାଃ – କି ସୁନ୍ଦର ପରିକଳ୍ପନା !!!

ତା' ହେଲେ ବନ୍ୟା କ'ଣ ସତରେ ବର୍ବର ? ବନ୍ୟା ଯଦି ବର୍ବର ହୋଇ ନଥା'ନ୍ତା, ବାଙ୍କୀ କ'ଣ ଉର୍ବର ହୋଇଥା'ନ୍ତା ? ଅଥବା ବାଂକୀ ଏକଦା ଉର୍ବରା ଭୂମି ଥିଲା – ବନ୍ୟା ତା'ର ଏମିତି କ୍ଷତି କରି ଚାଲିଛି ପ୍ରତିବର୍ଷ ? କେଉଁଟା ଠିକ୍ ? ଆଗ ମଞ୍ଜି ନା ଆଗ ଗଛ ??

ମୁଖ୍ୟ ସମ୍ପାଦକ

।। ଶିଷ୍ୟଙ୍କୁ କରିଣ ଅନାଥ । ସେମାନେ ଗଲେ ବାନପ୍ରସ୍ଥ ।।



ପ୍ରାଧ୍ୟାପକ ଶ୍ରୀଯୁକ୍ତ ନରସିଂହ ଚରଣ ନାୟକ
ଗଣିତ ବିଭାଗ - ମୁଖ୍ୟ



ପ୍ରାଧ୍ୟାପକ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ମହାନ୍ତି
ଇତିହାସ ବିଭାଗ - ମୁଖ୍ୟ



ଶ୍ରୀଯୁକ୍ତ ବନମାଳୀ ବେଉରା
ଗବେଷଣାଗାର ସହାୟକ
ପ୍ରାଣୀ ବିଜ୍ଞାନୀ ବିଭାଗ



ଶ୍ରୀଯୁକ୍ତ ସୁଦାମ ଚରଣ ନାୟକ
କର୍ମଚାରୀ
ପଦାର୍ଥ ବିଜ୍ଞାନ

।। ବୟସର ଅନୁରୋଧରେ ଚଳିତ ବର୍ଷ ଅବସର ପ୍ରାପ୍ତ ।।



**PLEASURE OF READING**
**Shuvendu Sekhar Panda**
+3 Sc. 1st Yr. (Chem. Hons)

'ବନଜ୍ୟୋସ୍ନା'ର କୌଣସି ଲେଖକ ବା ଲେଖିକା ଅନ୍ୟ କାହାର ଲେଖାକୁ ନକଲ କରିଥିଲେ, ସେଥିପାଇଁ ସଂପାଦନା ମଣ୍ଡଳୀ ଦାୟୀ ରହିବେ ନାହିଁ ।



Sri Yajneswar Mohapatra
+3 Sc. III Yr. (Bot.Hons)
President, College Union



Sri Manoj Kumar Sahoo
+3 Com. II Yr.
Vice President, College Union



Sri Alok Ranjan Satpathy
+3 Sc. II Yr.
General Secy, College Union



Hrusikesa Routray
+3 Arts II Yr. (Sans. Hons)
Asst. General Secy.
College Union



Dushmant Kumar Rout
+3 Arts III Yr. (Oriya Hons)
+3 Ath. Secretary



Kishore Kumar Pradhan
+2 Arts II Yr.
+2 Ath. Secretary



Lopamudra Satpathy
+3 Arts III Yr. (Pol.Sc.Hons)
+3 Dramatic Secretary



Dillip Ku. Nayak
+3 Arts III Yr. (Hist. Hons)
+3 Asst. Dramatic Secretary



Bijay Kumar Mohanty
+2 Arts II Yr.
+2 Cultural Secretary



Biswa Ranjan Sahoo
+3 Sc. II Yr. (Bot.Hons)
Secy. Science Association



Annapurna Sahoo
+3 Arts I Yr.
Girls' Common room Secy.



Prashanta Kumar Sahoo
+3 Arts III Yr.
+3 D.S.A. Secretary



Shraban Kumar Chhatoi
+3 Arts III Yr.
+3 Asst. D.S.A. Secretary



Khirod Ch. Sahoo
+2 Arts II Yr.
+2 D.S.A. Secretary



Subrat Debata
+3 Sc. II Yr. (Bot. Hons)
+3 S.S.G. Secretary



Ashit Kumar Jena
+2 Arts II Yr.
+2 S.S.G. Secretary



Sri Omkar Mishra
+3 Com. III Yr.
Secy. Commerce Association



Prakash Ranjan Panda
+3 Arts III Yr. (Oriya Hons)
Secretary Sahitya Samaj



Niroj Kumar Sethi
+3 Arts III yr. (Eng. Hons)
Secy. English Association



Miss. Rasmita Khatua
+3 A III Hist. Hons.

1. Dist : State : National Level Foot Ball Champion.
2. Dist. Level Hand Ball Champion.
3. College +3 Ath. Champ. (Womens').



Rakesh Einstein, +3 Sc. II Yr. (Phy. Hons.) Literary Champion, C- Union, Stood first in Inter College debate competition at P. N. College, Khurda Represented Khurda. Zone in Final Chancellor's Oriya debate competition at B.B.S.R.



Sanjit Kumar Pradhan
+3 Arts II Yr.
+3 Ath. Champion (Men)



Ramesh Kr. Debata
+3 Sc. II (Chem Hons)
Presented in Mufti Uniform at R.D. Parade at New Delhi



Sgt. Ramesh Ku. Debata
+3 Sc. II Yr (Chem. Hons.)
Participated in Republic Day Parade and also in Rajpath Parade at New Delhi - 2003



Sammohan Bibhutiray was presented Mufti Uniform at R.D. Parade at New Delhi.



S.U.O. Sammohan Bibhutiray,
+3 Arts II Yr. (Psy. Hons),
Participated in Republic Day Parade at New Delhi - 2003



S.U.O. Sanjay Kumr Das,
+3 Arts III Yr. (Hist. Hons.)
Attended A.T.C. Puri, N.I.C. Puri, Pre R.D.C. Cuttack, R.D.C. New Delhi and A.I.V.S.C. Bangalore.



Manas Paikray
+2 Arts I Yr.
+2 Athletic Champion



Kumar Sri Kanan
+3 Arts I Yr.
Badminton Champion



Dushmant Kumar Rout
+3 Arts III Yr. (Oriya Hons.),
Participated in Inter University
Kho-Kho tournament at
Chandigarh



Santosh Kumar Rout
+3 Arts III Yr. (Pol.Sc. Hons.)
Participated in Inter University
Kho-Kho tournament at
Chandigarh



Jiten Kumar Swain
+3 Arts III Yr.
Cover Page Artist



Himansu Sekhar Sahu
+2 Com II Yr.
+2 Dramatic Secretary



Biswajit Samal
+3 Sc. II Phy.
+3 Ath. Champion (Mens')



Rasmita Barik
+2 Ath. Champion (Girls')

## ।। ମହାବିଦ୍ୟାଳୟରେ ଅନୁଷ୍ଠିତ ଉତ୍ସବାନୁଷ୍ଠାନ ।।




**Inaugural function of Students Union**
**From L to R :**
**Sri. Manoj Kr. Sahoo,** Vice President
**Prof. P. C. Raj,** Principal
**Sj. Shrikanta Sahoo,** Sub-Collector
**Sj. Debasish Pattanaik,** Pol. Leader
**Sj. Bibhuti Bhusan Mishra,** Retd. IAS
**Sri Yagneshwar Mahapatra,** President
**Sj. Ramakanta Mishra,** Leader of OPPO.
**Sri Alok Ranjan Satapathy,** Secretary
**Prof. N. P. Panda,** Advisor
**Sm. Jayanti Pattanaik addressing to the meeting**




**Annual function of the Students' Union**
**From L to R :**
**Sri. Manoj Kr. Sahoo,** Vice President
**Sri Alok Ranjan Satapathy,** Secretary
**Prof. N. P. Panda,** Advisor
**Prof. P. C. Raj,** Advisor
**Sj. Kalindi Ch. Behera,** Hon'ble Minister
**Sri Yajneswara Mahapatra,** President
**Sj. Bharttruhari Mahatab,** Hon'ble M.P.



**Annual Function of +2 Cultural Society - 2003**
Hon'ble Minister **Sj. Surya Narayan Patra,**
Inaugurating the Function.
Banki M.L.A. **Sj. Pravat Ku. Tripathy,**
Principal **Prof. P.C. Raj,** Advisor
**Capt. Benudhar Lenka** and Secretary
**Bijay Kumar Mohanty** on the Stage.




**Hon'ble Minister Sj. S. N. Patra**
Addressing the Students




Annual Function of Oriya Sahitya Samaj - 2003
(From R to L) Vice President Prof. N.P. Panda, Chief guest Prof. Dr. Bairagi Charan Jena (Retd. Prof. Sambalpur University.) Principal Prof. P.C. Raj. Secretary Prakash Ranjan Panda and Asst. Secretary Sushant Kumar Mallik on the stage.




Annual Function of Science Association-2003
(From R to L) Chief Speaker Prof. Dr. A.K. Patra, Chief guest Prof. Dr. S.P. Rath, Vice Principal Prof. N.P. Panda, Vice President Prof. Basudev Sahoo and Secretary Biswa Ranjan Sahoo on the stage.



Blood Donation Camp on 20th Dec. - 2002
Donors, Volunteers and Officers with our beloved Principal Prof. P.C. Raj during Blood Donation Camp on December - 2002 jointly organised by Youth Red Cross, N.S.S., N.C.C. and L.C.C., Banki College.



Prof. P. C. Raj. Principal, Banki College, Banki Capt. Debasis Das. N.C.C. Officer along with cadets after winning first prize in the ceremonial parade held on the occasion of Independence Day i.e. 15th Aug. 03



Prof. P. C. Raj., Principal, Banki College, Banki along with Capt. Debasis Das N.C.C. Officer, J.U.O. Ramesh Kumar Debata S.U.O. Sammohan Bibhutiray on their return from New Delhi, on Mufti uniform after participating in the Republic Day Parade there in the year 2002-2003




## ବିଶେଷାଙ୍କ ବିଭାଗ



## କବିତା ବିଭାଗ

## ଗଳ୍ପ ବିଭାଗ



## ପ୍ରବନ୍ଧ ବିଭାଗ

## ହିନ୍ଦୀ ବିଭାଗ



## ENGLISH SECTION


ବିଶେଷାଙ୍କ
ବିଭାଗ
କିଛି ଦୁଃଖ
କିଛି ସୁଖ

# ବାଙ୍କୀକୁ ବିପଦ 'ବ' ବଉଳ ଲୋ ....

*ଶ୍ରୀଯୁକ୍ତ ସନ୍ତୋଷ କୁମାର ମହାପାତ୍ର (ମିଟୁ)*
କାର୍ଯ୍ୟାଳୟ ସହକାରୀ

*ବାଙ୍କୀକୁ ବିପଦ 'ବ' ବଉଳ ଲୋ*
*ବାଙ୍କୀକୁ ବିପଦ 'ବ'....*
*ସେଥିରୁ ବି'ପଦ ଶୁଣିବୁ ଯେବେ ଲୋ*
*ଆସି ମୋ' ପାଖରେ ବଅ ।*

## ବିଜୁଳି

ଧନ୍ୟ ଏଇ ବାଙ୍କୀ ମାଟି
କଲବଲ କରେ ଇଲେକ୍ଟ୍ରିସିଟି - ମୋ' ବଉଳ ଲୋ
ପ୍ରାଣ ହୁଏ ଛାଟିପିଟି ।

## ବାତେନି
### (ଖବର : ବାର୍ତ୍ତା)

ଧନ୍ୟ ଏଇ ବାଙ୍କୀ ମାଟି
ବାଟରେ ହଜଇ ଜରୁରୀ ଚିଠି - ମୋ' ବଉଳ ଲୋ
ଖୋଲ ଯାଇଥାଏ ଫିଟି ।

ଧନ୍ୟ ଏଇ ବାଙ୍କୀ ମାଟି
ଡାଏଲିଂ କରି ବିନ୍ଧେ ଆଙ୍ଗୁଠି –ମୋ' ବଉଳ ଲୋ
''କୁଛ୍ ଦେର୍‌ମେଁ ଡାଏଲିଂ କରେଁ''
କହଇ ଲଳିତ କଣ୍ଠୀ ।

## ବାଟ

ଧନ୍ୟ ଏଇ ବାଙ୍କୀ ମାଟି
ରାସ୍ତାରେ ଖାଲ ବା ପଥର ଗେଟି –ମୋ' ବଉଳ ଲୋ
ଟାୟାର ଯାଉଛି ଫାଟି
ପୁଣି ବାଟୋଇ ପଡୁଛି ଝୁଣ୍ଟି ।

## ବସ୍

ଧନ୍ୟ ଏଇ ବାଙ୍କୀ ମାଟି
ଓହଳନ୍ତି ଯହିଁ ବସ୍ ଯାତ୍ରୀ – ମୋ' ବଉଳ ଲୋ
ଗାଡ଼ି ତ ଶୁଖୁଆ ପେଟି ।

## ବନ୍ୟା

ଧନ୍ୟ ଏଇ ବାଙ୍କୀ ମାଟି
ବଢ଼ି ଆସେ ଏଠି ମେଲାଇ ପାଟି – ମୋ' ବଉଳ ଲୋ
ଘରଦ୍ୱାର ଦିଏ ଚାଟି

*ବାଙ୍କୀକୁ ଏ ସବୁ ଦୁଃଖ ବଉଳ ଲୋ*
*ଘାରିଅଛି ଅହରହ*
*ମାଆ ଚର୍ଚ୍ଚିକାୟୀ ଯାହାର ଭରସା*
*(ଆଉ) କାହାକୁ କହିବା କହ ?*

# ରାଣୀ ଶୁକଦେଈଙ୍କ ଶୋକ

ଜ୍ୟୋତିର୍ମୟୀ ରାଉତ
+୩ ବିଜ୍ଞାନ ଦ୍ୱିତୀୟ ବର୍ଷ (ଉଦ୍ଭିଦ ବିଜ୍ଞାନ ଅନର୍ସ)

ଏ ଦେଶର ଇତିହାସେ
ଅଜ୍ଞାତା, ଅପରିଚିତା
ଉତ୍କଳର ଇତିହାସେ ପୁଣି
ଅସ୍ପଷ୍ଟ, ସଂକ୍ଷିପ୍ତ
ଏକ ଛାୟାଚିତ୍ର ମାତ୍ର
ଦୁଃଖିନୀ, ହତଭାଗିନୀ ମୁଁ
ରାଣୀ ଶୁକଦେଈ,
ଯା'ର ନାମ ଗାଇ ଗାଇ
ବାଙ୍କୀବାସୀ ତୁମେ ଗର୍ବ କର
ମୋ' ନାମରେ ମୂର୍ତ୍ତି ଗଢ଼,
ଅନୁଷ୍ଠାନ କର,
ଧନ୍ୟବାଦ, ତୁମକୁ ବାବୁରେ
ଯେହେତୁ ମୋତେ ତ ପରା
କରିଛ ଅମର ।
ମୁଁ କିନ୍ତୁ ସୀମିତ ତୁମ
ବାଙ୍କୀ ବ୍ରାକେଟ୍‌ରେ,
ନା ମୁଁ ଅଛି, ରାଜଧାନୀ
ଅବା କଟକରେ ।
ଅନେକ ଓଡ଼ିଆ ପୁଅ
ଆଜି ମଧ୍ୟ ଜାଣନ୍ତିନି,
ଚିହ୍ନନ୍ତିନି ମୋତେ
ପ୍ରଶ୍ନ କରନ୍ତି -
କିଏ ଏଇ ଶୁକଦେଈ ?
ଉତ୍ତର ମିଳଇ
ହଁ, ଜଣେ କିଏ 'ଦେଈ' ହୋଇଥିବେ
ଏଇ ଯେମିତି
ଜେମା ଦେଈ, ରମା ଦେଈ ପରି ।
ତୁମେ ପରା ଜାଣିନାହଁ
ପୁରୀର ସିପାହୀ ପଣ୍ଡା
ଚନ୍ଦନ ହଜୁରୀ
ମୋହରି ବୀରତ୍ୱ ଗାଥା
ଝାନ୍ସିରାଣୀ ଲକ୍ଷ୍ମୀବାଈ କାନେ
ଫୁଙ୍କି ବାରମ୍ବାର
ବୀରାଙ୍ଗନା କରିଦେଲା ତା'ରେ
ଆଜି ଯା'ର ମହିମାକୁ
ଭାରତର ଇତିହାସ ଝୁରେ ।
ଅଥଚ
ମୁଁ ତା'ର ଅଗ୍ରଜା,
ଆଦର୍ଶ ହୋଇ ବି ଆଜି
ଉପେକ୍ଷିତ ଦେଶ ଇତିହାସେ,
ଆଉ ଏଇ ଉତ୍କଳରେ
ପାଇକ ପରମ୍ପରାକୁ ଗିଳିଥିବା
ଭୟଙ୍କରୀ ମହାକାଳ
ମୋ'ପଣ୍ଟାତେ ହସେ ।
ନାରୀ ସଶକ୍ତି କରଣ ଲାଗି
ବିଶ୍ୱସାରା ଉଠିଅଛି ନାରା
ତ୍ରିନିଶତ ବର୍ଷ ତଳେ,
ମା' ଚର୍ଚ୍ଚିକା ଆଶୀର୍ବାଦେ
ନାରୀ ଶକ୍ତି ମୂର୍ତ୍ତିମନ୍ତ ହୋଇ
ଉଭା ହେଲି ପରା,
ବିଜିତ, ବିଧ୍ୱସ୍ତ ଖୋର୍ଦ୍ଧା-
ସେନା ବାହିନୀର
କଟାମୁଣ୍ଡେ ଗଢ଼ିଲି ମୁଁ
'ମୁଣ୍ଡର ଦେଉଳ' କୁଶପଲ୍ଲୀଠାରେ,
ଗଜପତି ଗୋପୀନାଥ

ମୁଣ୍ଡ ନେଇ ଥୋଇଥା'ନ୍ତି
ଦଧି ନଉତିରେ,
କିନ୍ତୁ - ନା,
ପୌରୁଷର ଆବରଣ ତଳେ
ନାରୀର କୋମଳ ପ୍ରାଣ
ଉଠିଲା ବାହୁନି
ବୈଧବ୍ୟର ଯନ୍ତ୍ରଣାରେ
ତିଳ ତିଳ ଆପେ ଦଗ୍ଧ ହୋଇ
ବୁଝିଥିଲି ସ୍ୱାମୀହରା
ନାରୀର ମର୍ମକୁ
ସହାନୁଭୂତି ଆସିଲା
ଖୋର୍ଦ୍ଧା ରାଣୀ ପାଇଁ
ମୁକ୍ତ କଲି ଗୋପୀନାଥ ଦେବେ
ତଟସ୍ଥ ବୃଦ୍ଧ ବେବର୍ତ୍ତା
ପାତ୍ର, ମନ୍ତ୍ରୀ, ପୁତ୍ର ଦୟାନିଧି -
ପ୍ରଶ୍ନ ଥିଲା -
'ଯୁଦ୍ଧ କାହିଁ କରୁଥିଲ ତେବେ ? ? ?
'ସ୍ୱର୍ଗତ ସ୍ୱାମୀ ମୋହର
ଧନଞ୍ଜୟ
ଅତ୍ୟନ୍ତ ଉଦାର
ଯାହା ଆସି ସ୍ୱପ୍ନେ କହିଗଲେ
ତାହା ହିଁ ତ କଲି.....'
ବିକ୍ଷୁବ୍ଧ ଅନ୍ତର ତଳୁ
ଏ ଥିଲା ଉତ୍ତର ।
ଆଜି
ରଚିକ ଉପରେ ଅଛନ୍ତି
ମା' ଚର୍ଚ୍ଚିକା ଅଭୟ ଦାୟିନୀ
ଅଦୂରେ ମହାପର୍ବତ
ମଧ୍ୟେ ମହାନଦୀ
ପଶ୍ଚିମେ ମଧୁର - ନୀରା
ପୁଣ୍ୟ ଅଂଶୁପଦୀ
ଚତୁର୍ଦ୍ଦିଶେ ପ୍ରକୃତିର
ମନୋଜ୍ଞ ନିଗଡ଼,
ସବୁଅଛି ପୂର୍ବବତ
ବାଙ୍କୀ ବି ରହିଛି -
ନାହିଁ କିନ୍ତୁ ସ୍ମୃତି-ସିକ୍ତ
ମୋ'ର ବାଙ୍କୀଗଡ଼ ।।



## ବାଙ୍କୀରୁ ହଜିଯାଇଥିବା ନାମଟିଏ ସ୍ୱର୍ଗତ କେଳୁଚରଣ ପଟ୍ଟନାୟକ

**ବୈଦ୍ୟେଶ୍ୱର ବାଙ୍କୀ**

ପୁରୀର ରେଜିଷ୍ଟ୍ରାରୀ ଅଫିସ୍‌ରେ ଥିଲେ ସାମାନ୍ୟ କିରାଣୀ । ସେ କବିତା, ସଂଗୀତ, କୋଇଲି ଓ କେଳା ଭିକ୍ଷା ଆଦି ରଚନାକୁ 'ଯୋଗୀଥାଳ' ନାମକ ପୁସ୍ତକରେ ସଂକଳିତ କରି ପୁସ୍ତକଟିର ବିକ୍ରୟଲବ୍ଧ ପ୍ରାୟ ୩୬ (ଛତିଶ) ହଜାର ଟଙ୍କାରେ ବହୁ ଜନହିତକର ଧାର୍ମିକ କାର୍ଯ୍ୟମାନ ସଂପନ୍ନ କରିଥିଲେ । ପୁରୀ ନରେନ୍ଦ୍ର ପୁଷ୍କରିଣୀ ଉଝୁଳାଇବା, ଗୁରୁଜଙ୍ଗ (ଖୋର୍ଦ୍ଧା)ର ଧବଳେଶ୍ୱର ମନ୍ଦିରର ଜୀର୍ଣ୍ଣ ସଂସ୍କାର କରିବା, ଖୋରଧାର ବରୁଣାଇ ମନ୍ଦିର, ମୋହନ ମୁଖଶାଳା, ଟାଙ୍ଗୀର ବଳରାମ ଦେବଙ୍କ ଜୀର୍ଣ୍ଣ ମନ୍ଦିର ସଂସ୍କାର, ପୁରୀର ଲୋକନାଥ ଦେବଙ୍କ ପାର୍ବତୀ ସାଗର ମରାମତି, ନରେନ୍ଦ୍ର ପୁଷ୍କରିଣୀ ତଟସ୍ଥ ଶ୍ରୀ କାଳନ୍ଦୀଶ୍ୱର ମହାଦେବଙ୍କ ଜୀର୍ଣ୍ଣ ମନ୍ଦିର ସଂସ୍କାର ଓ ନୂତନ ମଣ୍ଡପ ନିର୍ମାଣାଦି ନାନା ଧାର୍ମିକ ଅନୁଷ୍ଠାନଗୁଡ଼ିକୁ ସମୟ ଦାଢ଼ରୁ ବଞ୍ଚାଇ ରଖିଥିଲେ ।

ପେନ୍‌ସନ୍ ନେଲାପରେ ପୁରୀର ମାର୍କଣ୍ଡ ପୋଖରୀ ଉପରେ ଗୋଟିଏ କୁଡ଼ିଆ କରି ରହିଥିଲେ – ଯାହାର ନାଁ ଦେଇଥିଲେ ''କେଳା କୁଡ଼ିଆ'' । ଆଜି ସେ ବାଙ୍କୀର ଗୌରବମୟ ଇତିହାସର ଜୀର୍ଣ୍ଣ ପୃଷ୍ଠାଟିଏ ହୋଇ ଯାଇଛନ୍ତି ।

ଆଭାସ ରଚନା

# ମା' ଚର୍ଚ୍ଚିକାଇ ! ଗଲା ପୁତ୍ର ବାହୁଡ଼ିଲେ ନାହିଁ

*Home Home*
*Sweet Home,*
*There is no place*
*Like Home*

*ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ଦାଶ*
ଆକାଉଣ୍ଟାଣ୍ଟ

ଶ୍ରୀକୃଷ୍ଣ ମଥୁରାକୁ ଗଲାପରେ, ଆଉ ଗୋପପୁରକୁ ଫେରିଲେ ନାହିଁ । ମାଆ ଯଶୋଦାଙ୍କର ମର୍ମବେଦନା ଫମ୍ପା ଆକାଶରେ ମିଳେଇଗଲା । ଓଡ଼ିଆ କବି ଶିଶୁଶଙ୍କର ଦାସଙ୍କ ଲେଖନୀ କରୁଣ ହୋଇ ଉଠିଲା ଏମିତି –

''କୋଇଲି ଲୋ,
କେଶବ ଯେ ମଥୁରାକୁ ଗଲା
କାହା ବୋଲେ ଗଲା ପୁତ୍ର
ବାହୁଡ଼ି ନଇଲା, ଲୋ କୋଇଲି ।''
(କେଶବ କୋଇଲି)

ଓଡ଼ିଆ ସାହିତ୍ୟର ଇତିହାସରେ ଏଇ ଚଉତିଶାଟି ଅତ୍ୟନ୍ତ ମର୍ମାନ୍ତିକ : ହୃଦୟ ବିଦାରକ । ସେଦିନ ଗୋପପୁରକୁ ଛାଡ଼ି ଶ୍ରୀକୃଷ୍ଣ ମଥୁରାକୁ ଯାଇନଥିଲେ, ହୁଏତ କଂସ ବଧ ସମ୍ଭବ ହୋଇ ନଥାନ୍ତା । ମାତ୍ର ଗୋପପୁରର କି ଲାଭ ହେଲା ? କୃଷ୍ଣ ବରଂ ଗୋପପୁରରେ ଥିଲେ, ସେଇ ସରଳ, ନିରୀହ ଗୋପାଳକୁଳର ଭବିଷ୍ୟତ ଉଜ୍ଜ୍ୱଳ ଓ ସମ୍ଭାବନାମୟ ହୋଇ ପାରିଥା'ନ୍ତା । ଗୋପାଳମାନଙ୍କ ସମେତ ସମୁଦାୟ ଗ୍ରାମଟିର ମଧ୍ୟ ଯଥେଷ୍ଟ ବିକାଶ ହୋଇ ପାରିଥା'ନ୍ତା । ଗୋପାଙ୍ଗନାମାନଙ୍କର ମେଳା, ଗସୋତ୍ସବରେ ସଦାସର୍ବଦା ଚଳଚଞ୍ଚଳ ହେଉଥା'ନ୍ତା ଗୋପପୁର । ଯମୁନା କୂଳର ବଂଶୀ ଧ୍ୱନିରେ ମୋହ ମୂର୍ଚ୍ଛିତ ହେଉଥା'ନ୍ତା ଗୋପପୁରର ଜନଜୀବନ । ଶ୍ରୀକୃଷ୍ଣଙ୍କ ପ୍ରେରଣାରେ ଗ୍ରାମୀଣ ଗୋପପୁରଟି ହୁଏତ ଦ୍ୱାରକା ପରି ନଗରୀଟିଏ ମଧ୍ୟ ହୋଇପାରିଥା'ନ୍ତା । ସମସ୍ତ ପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟର ଉପଭୋକ୍ତା ଭାବରେ ଗୋପର ଗୋପାଳକୁଳ ସାମାଜିକ ମାନମର୍ଯ୍ୟାଦା ବି ଲାଭ କରିଥା'ନ୍ତେ । ତରଙ୍ଗାୟିତ ଯମୁନାର ନ ଥା'ନ୍ତା ବିଷାଦ ଭାବ - ସର୍ବୋପରି ଯଶୋଦାଙ୍କ ହୃଦୟରେ ସୃଷ୍ଟି ହୋଇ ନ ଥା'ନ୍ତା ବୁକୁଫଟା କାରୁଣ୍ୟ !

ମାତ୍ର ଭାଗ୍ୟର ବିଡ଼ମ୍ବନା – ଶ୍ରୀକୃଷ୍ଣଙ୍କୁ ଅଗତ୍ୟା ଯିବାପାଇଁ ହେଲା ।

ଅବଶ୍ୟ ଶ୍ରୀକୃଷ୍ଣ ସେଦିନ ଗୋପଛାଡ଼ି ମଥୁରାକୁ ଯାଇ କଂସ ବଧ ନ କରିଥିଲେ, ସେ କ'ଣ ଦ୍ୱାପର ଯୁଗର ସର୍ବୋତ୍ତମ ନାୟକ ହୋଇ ପାରିଥା'ନ୍ତେ ? ଏହା ଏକ ବିବଦମାନ ପ୍ରଶ୍ନ । ତା'ଙ୍କର ଆଦ୍ୟ ଜୀବନରେ ତଥାପି କେତେକ ଆଶ୍ଚର୍ଯ୍ୟକର କ୍ରିୟା ପ୍ରକଟନ କରି ଗୋପବାସୀଙ୍କୁ ମଧ୍ୟ ସେ ବିମୁଗ୍ଧ କରିପାରିଥିଲେ । ଯାହା କଲେ ବି, ସେ ଥିଲେ ସେହି ଗୋପଦାଣ୍ଡର ଧୂଳି ଧୂସରିତ, ପୁଣି ସରଳବଣୀ ଚୋର, ଗାଈ ଚରାଳି କାହ୍ନା । 'ଗାଆଁ କନିଆଁ ସିଘଂଣୀ ନାକୀ' –ନ୍ୟାୟରେ ସେ ଗୋପପୁରର ନଟଖଟିଆ ଚରିତ୍ରଟିଏ ହୋଇ କେବଳ ରହିଯାଇଥା'ନ୍ତେ ।

ଦ୍ୱାପର ଯୁଗର ଏହି ଗୋପପୁର ପରି ସାରା ପୃଥିବୀ, ଭାରତ ବର୍ଷ; ତା' ଭିତରେ ଆମ ଓଡ଼ିଶାର ବହୁ ଗ୍ରାମ ଏମିତି ନିଜର ସୁଯୋଗ୍ୟ ସନ୍ତାନମାନଙ୍କ ବିଚ୍ଛେଦରେ କରୁଣ ବିଳାପ କରିଛନ୍ତି । ଯେଉଁମାନଙ୍କ

ଉପରେ ଭରସା କରି ଗାଆଁ ପୋଖରୀରେ ପଦ୍ମ ଫୁଟୁଥିଲା, ଆମ୍ବ ଗଛ ବଉଳି ଯାଉଥିଲା; ସେମାନେ ଶେଷରେ ଗାଆଁକୁ ଅନାଥ କରି ନିଜ ନିଜର ଭାଗ୍ୟ ଅନ୍ୱେଷଣରେ ବିଦେଶଯାଇ ବାହାରେ ସବୁ ଅଟକି ଯାଇଛନ୍ତି । ଆଜି ଆମର ବାଙ୍କୀ କାନ୍ଦୁଛି ସେଇଥିପାଇଁ : ସେଇମାନଙ୍କ ପାଇଁ; ଯେଉଁମାନେ ଦିନେ ମା' ଚର୍ଚ୍ଚିକାର କୋଳରେ ଜନ୍ମହୋଇ, ବିଦେଶରେ ଯାଇ ବାହାବା ନେଇଛନ୍ତି – ଅଥଚ ବାଙ୍କୀ ଆମର ପଡ଼ିଛି ପୂର୍ବପରି; ଯେମିତି : ସେମିତି । ଯେଉଁମାନଙ୍କର ଏନ୍ତୁଡ଼ି ଦିନେ ଜଳିଥିଲା ବାଙ୍କୀରେ, ସେମାନଙ୍କର ଚିତା ଜଳିଛି ଅନ୍ୟତ୍ର । ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଜୀବନରେ ଆପଣାର ଶୈଶବକୁ ଅଥବା ସାଥୀ ସଂଗାତକୁ ଖୋଜି, ଲୋଡ଼ି, ସଙ୍ଖୋଳିବା ପାଇଁ କ୍ୱଚିତ୍ ଫେରିଛନ୍ତି କେତେଜଣ । ସେମାନଙ୍କର ଆରାଧ୍ୟ ମା' ଚର୍ଚ୍ଚିକା, ପ୍ରିୟ ମହାନଦୀ, ପ୍ରିୟ ଶସ୍ୟ କେଦାର, ଅତିପ୍ରିୟ ଗାଆଁ ବା ସହର ସେମାନଙ୍କୁ ସହଜରେ ଆକର୍ଷିତ କରିପାରିନାହିଁ । ବରଂ ମହାନଦୀର ବାରମ୍ବାର ବନ୍ୟା, ଶୋଚନୀୟ ରାସ୍ତାଘାଟ, ଚାକଚକ୍ୟହୀନ ସହର ବଜାର ଆଦି ଅନେକଙ୍କର ଅସହ୍ୟ ହୋଇଯାଇଛି । ସେମାନଙ୍କର ମନକୁ ଏଠାରୁ ହଟେଇ ଦେଇଛି ଏହାର ରୁଗ୍ଣ ବା ଦରିଦ୍ର ପରିବେଶ । କେତେଜଣ ଏଠାକୁ ଫେରିବାକୁ ଚାହିଁ ବି, ପାରିବାରିକ ତାଡ଼ନା ଅଥବା ଜବର୍‌ଦସ୍ତି ମଧ୍ୟରେ ଅତ୍ୟନ୍ତ ଅସହାୟ ହୋଇ ବିଦେଶରେ ମାଟି କାମୁଡ଼ି ପଡ଼ି ରହିଛନ୍ତି । ଏଣେ ତା'ର ମାଆର, ମାତୃଭୂମିର ଆଖିରୁ ଲୁହ ଶୁଖିଯାଇଛି । ସେ ଅପେକ୍ଷା କରିଛି ପୁଅ ତା'ର ନିଶ୍ଚୟ ଫେରିବ ! ବାଙ୍କୀର ଆକାଶ ଆଜି ସେଇମାନଙ୍କ ମଧ୍ୟରୁ ଅନେକଙ୍କୁ ନେଇ ଗର୍ବ ଗୌରବରେ ଫାଟି ପଡ଼ିଲା ବେଳେ, ସେମାନଙ୍କ ପୃଥିବୀରୁ 'ବାଙ୍କୀ' ଶବ୍ଦଟି କେବେଠାରୁ ଲିଭି ଯାଇଛି । ରଂଗାଜୀବ ଗଙ୍ଗାଧରଙ୍କର ସର୍ବ ପରିଚିତ ପଦଟିଏ ମନେପଡ଼ିଯାଉଛି– "ମାତୃଭୂମି, ମାତୃଭାଷାରେ ମମତା, ଯା'ହୃଦେ ଜନମି ନାହିଁ, ତା'କୁ .....ଆଉ ଅଧିକ ମନେ ପକାଇବାନାହିଁ, କାରଣ, ସେମାନଙ୍କ ପାଇଁ ହିଁ ଦୁଃଖ ଲାଗିବ ।

ବେଳେବେଳେ ଅବଶ୍ୟ ପ୍ରତିଭାର ଉନ୍ମେଷ ଏବଂ ବିକାଶ ନିମିତ୍ତ ଅନ୍ୟ ପୃଥିବୀରେ ଆଶ୍ରୟ ନେବାକୁ ପଡ଼ିଥାଏ । କହିବା ବାହୁଲ୍ୟ; ଶ୍ରୀକୃଷ୍ଣ ହିଁ ଏହାର ଉଦାହରଣ । ଅଥଚ ସ୍ୱର୍ଣ୍ଣଲଙ୍କା ଅଧିକାର ସତ୍ତ୍ୱେ, ସେଠାକାର ସମସ୍ତ ପ୍ରଲୋଭନକୁ ଉପେକ୍ଷା କରି ମର୍ଯ୍ୟାଦା ପୁରୁଷ ଶ୍ରୀରାମ ତ ଦିନେ ପୁଣି ଫେରି ଆସିଥିଲେ ଅଯୋଧ୍ୟାପୁରୀକୁ !!! କାରଣ, ସେ ସଦାସର୍ବଦା ଅଯୋଧ୍ୟାର ମଙ୍ଗଳ କାମନା ହିଁ କରୁଥିଲେ । ରାମରାଜ୍ୟ ପ୍ରତିଷ୍ଠା କରି ସେ ହେଲେ ତ୍ରେତୟା ଯୁଗର ସର୍ବୋତ୍ତମ ନାୟକ ।

ଯମୁନା ନଦୀ ଶ୍ରୀକୃଷ୍ଣଙ୍କୁ ତରଙ୍ଗ ତରଙ୍ଗ କରି ଝୁରିହେଲା; କିନ୍ତୁ ସରଯୂନଦୀ ଶ୍ରଦ୍ଧାର ସହିତ କୋଳେଇ ନେଇଥିଲା ଶ୍ରୀରାମଙ୍କୁ ।

କିଏ ବଡ଼, କିଏ ତା'ହେଲେ ଆଜି ଅଧିକତର ସ୍ମରଣୀୟ ???

(ଏହି ଆଭାସ ରଚନାଟି ବାଙ୍କୀକୁ ଫେରିଥିବା ଶିଳ୍ପୀକଳାକାର ଶ୍ରୀଯୁକ୍ତ ହେମନ୍ତ ଦାସଙ୍କୁ ଉତ୍ସର୍ଗୀକୃତ) ।



## ମାଟ୍ରିକ୍ ପରୀକ୍ଷାରେ ଏ ମାଟିର ପିଲାଏ

(ପ୍ରଥମ ଦଶ ଜଣଙ୍କ ମଧ୍ୟରେ)

୧୯୯୯ – ଶ୍ରୀମାନ୍ ଦୀପକ କୁମାର ମିଶ୍ର - ଚତୁର୍ଥ ସ୍ଥାନ

୨୦୦୨ - କୁମାରୀ ଶୁଭ୍ରକଳି ପରମଗୁରୁ - ପ୍ରଥମ ସ୍ଥାନ

୨୦୦୩ - କୁମାରୀ ଅମିତା ପଣ୍ଡା - ଦ୍ୱିତୀୟ ସ୍ଥାନ

୨୦୦୩ - କୁମାରୀ ଅର୍ପିତା ନିବେଦିତା ରାଉତ - ଅଷ୍ଟମ ସ୍ଥାନ

# ବାଙ୍କୀର ହୋୟାଂହୋ ମହାନଦୀ : ବନ୍ୟା ବୟାଅଶି

*ଶ୍ରୀଯୁକ୍ତ ପ୍ରବୋଧ ଚନ୍ଦ୍ର ମହାପାତ୍ର*
କାର୍ଯ୍ୟାଳୟ ମୁଖ୍ୟ

ସ୍ମରଣାତୀତ କାଳରୁ ହିଁ ଓଡ଼ିଶା ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇ ଆସୁଛି । କେତେବେଳେ ବାତ୍ୟା ତ କେତେବେଳେ ମରୁଡ଼ି ତା'ର ଅର୍ଥନୈତିକ ମେରୁଦଣ୍ଡକୁ ଦୋହଲାଇ ଦୁର୍ବଳ କରି ଦେଇଛି । ପ୍ରାକୃତିକ ବିପର୍ଯ୍ୟୟ ବିରୁଦ୍ଧରେ ସଂଗ୍ରାମ କରି କରି ଏଇ ମାଟିର ମଣିଷ ଯେତେ ଉପରକୁ ଉଠିଲେବି ପ୍ରକୃତି ତା'ର ଦାଉ ସାଧି ତାକୁ କ୍ଷତ ବିକ୍ଷତ କରି ପକାଉଛି । ଏଇ ପରିପ୍ରେକ୍ଷୀରେ ୧୯୮୨ ମସିହାର ଅଗଷ୍ଟ ୨୯ ଓ ୩୦ ତାରିଖ ବେଶ୍ ସ୍ମରଣୀୟ । ଓଡ଼ିଆଜାତିର ଇତିହାସରେ ଏ ଦୁଇଦିନ ଚିରକାଳ ଲିପିବଦ୍ଧ ହୋଇ ରହିଥିବ । କାରଣ ଏ ଦୁଇଦିନରେ ପ୍ରଳୟଙ୍କର ବନ୍ୟା ଫଳରେ ଅବିଭକ୍ତ କଟକ, ପୁରୀ, ସମ୍ବଲପୁର, ବଲାଙ୍ଗୀର, ଫୁଲବାଣୀ, ଗଂଜାମ ଓ କଳାହାଣ୍ଡି ପ୍ରଭୃତି ଜିଲ୍ଲାର ହଜାର ହଜାର ଲୋକ ବିପନ୍ନ ହୋଇ ଯାଇଥିଲେ । ଏ ଜାତିର ଅର୍ଥନୈତିକ ଓ ସାମାଜିକ ମେରୁଦଣ୍ଡ ସଂପୂର୍ଣ୍ଣ ଭାବରେ ଦୁର୍ବଳ ହୋଇ ପଡ଼ିଥିଲା । ଓଡ଼ିଆ ଜାତି ଅନେକ ବର୍ଷ ପଛକୁ ଫେରି ଯାଇଥିଲା । ବୋଧହୁଏ ନ'ଅଙ୍କ ଦୁର୍ଭିକ୍ଷ ପରେ ୧୯୮୨ ମସିହାର ବନ୍ୟା ଥିଲା ସବୁଠାରୁ କରୁଣ ଓ ମର୍ମନ୍ତୁଦ । ୧୮୫୫ ସାଲରୁ ୧୯୫୫ ସାଲ ମଧ୍ୟରେ ଓଡ଼ିଶାକୁ ଗ୍ରାସ କରିଥିବା ବହୁ ଭୟଙ୍କରୀ ବନ୍ୟାଠାରୁ ଏହାଥିଲା ଅଧିକତର ଭୟାନକ । ଧନୀ, ଗରିବ, ରାଜା, ଭିକାରୀ ସମସ୍ତଙ୍କର ସେଇ ଏକଦଶା, ସମସ୍ତେ ସମ୍ବଳଶୂନ୍ୟ ଓ ବାସଶୂନ୍ୟ ହୋଇଯାଇଥିଲେ । ତନ୍ମଧ୍ୟରୁ କଟକ ଜିଲ୍ଲାର ବାଙ୍କୀ ସବ୍‌ଡିଭିଜନ ମଧ୍ୟ ବାଦ ପଡ଼ି ନଥିଲା । ବାହ୍ୟ ଜଗତରୁ ବିଚ୍ଛିନ୍ନ ହୋଇ ପଡ଼ିଥିବା ରାଜ୍ୟର ୧୬ଟି ସହର ମଧ୍ୟରେ ବାଙ୍କୀ ଥିଲା ଅନ୍ୟତମ ।

ବାଙ୍କୀ ସହର କଡ଼ଦେଇ ବହିଯାଇଛି ଓଡ଼ିଶାର ଗଙ୍ଗା କୁହାଯାଇଥିବା ମହାନଦୀ । ସମୟ ସୁବିଧା ଦେଖି ଏଇ ଗଙ୍ଗାବି ଚୀନ୍‌ର ହୋୟାଂହୋ ନଦୀପରି ଓଡ଼ିଶାର ଦୁଃଖ । ତା'ର ଜିଭ ବୁଲାଇ ଚାଟିଚୁଟି ଦେଇଛି ଓଡ଼ିଆ ଜାତିର ଭବିଷ୍ୟତକୁ । ବାଙ୍କୀମଧ୍ୟ ସେଥିରୁ ରକ୍ଷା ପାଇ ପାରିନି । କାରଣ ମହାନଦୀ କୂଳେ କୂଳେ ଗଢ଼ି ଉଠିଛି ବାଙ୍କୀ ସହର ଓ ଏହାର ଜନବସତି । ଜନବସତି ଓ ମହାନଦୀ ମଧ୍ୟରେ ଅନୁଚ୍ଚ ନଦୀବନ୍ଧ । ତେଣୁ, ମହାନଦୀର ଉପର ମୁଣ୍ଡରେ ପ୍ରବଳବର୍ଷା ହେତୁ ଜଳ ବଢ଼ିଲେ ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକରେ ବନ୍ୟା ହେବା ସ୍ୱାଭାବିକ୍ । ବୟାଅଶୀ ମସିହାରେ ତାହାହିଁ ହୋଇଥିଲା । ଅଗଷ୍ଟ ୨୮ ତାରିଖ ଦିନ ଓଡ଼ିଶାର ମଧ୍ୟାଞ୍ଚଳରେ ମୂଷଳଧାରାରେ ବର୍ଷା ହୋଇଥିଲା । ଏହି ବର୍ଷା ପ୍ରାୟ ୩୦ ତାରିଖ ଦ୍ୱିପହର ଯାଏ ଲାଗି ରହିଥିଲା । ଏହା ପୂର୍ବରୁ ଅବଶ୍ୟ ଅଗଷ୍ଟ ୨୭ ତାରିଖ ଦିନ ବଙ୍ଗୋପସାଗରରେ ଲଘୁଚାପ ସୃଷ୍ଟି ହୋଇଥିଲା । ପରେ ପରେ ଏହି ଲଘୁଚାପ ବାଲେଶ୍ୱର ଦେଇ ଅଗଷ୍ଟ



୧୯୮୨ ବନ୍ୟାରେ ବାଂକୀ ବଜାର ରାସ୍ତାର ବିଭତ୍ସ ଦୃଶ୍ୟ

୨୯ ତାରିଖ ଦିନ କେନ୍ଦୁଝର ଠାରେ କେନ୍ଦ୍ରୀଭୂତ ହୋଇଥିଲା । ରାଜ୍ୟରେ ପ୍ରବଳ ବର୍ଷା ହେବା ମୂଳରେ ଏହି ଲଘୁଚାପ ହିଁ ଥିଲା ମୁଖ୍ୟ କାରଣ, ପାଣି ପାଗ ଅଫିସ୍‌ର ତଥ୍ୟାନୁଯାୟୀ ଏହି ଦୁଇଦିନ ଅର୍ଥାତ୍ ଅଗଷ୍ଟ ୨୮ ଓ ୨୯ ତାରିଖରେ ରାଜ୍ୟରେ ଯେତିକି ବର୍ଷା ହୋଇଥିଲା ତାହା ବର୍ଷସାରା ହେବାକୁ ଥିବା ବର୍ଷାର ପ୍ରାୟ ଅଧେ । ତେଣୁ ୧୯୮୨ ମସିହାର ଏ ବନ୍ୟାରେ ହୀରାକୁଦ ଜଳ ଭଣ୍ଡାରରେ ସଞ୍ଚିତ ଥିବା ଜଳର କୌଣସି ଭୂମିକା ନଥିଲା ।

ଅଗଷ୍ଟ ୩୦ ତାରିଖ ସଂଧ୍ୟା ସୁଦ୍ଧା ବାଙ୍କୀ ଥିଲା ଚଳଚଞ୍ଚଳ । ତା'ପରେ ସବୁ କିଛି ଓଲଟ ପାଲଟ ହୋଇଗଲା । ସହରର ଅବସ୍ଥା ଉଦ୍‌ବେଗଜନକ ଆଡ଼କୁ ଗତି କଲା । ବାଙ୍କୀ ବଜାର ଉପରେ ୨ଟି ସ୍ଥାନରେ ଘାଇ ହୋଇଗଲା । ବନ୍ୟାଜଳ ଦ୍ୱାରା ସମଗ୍ର ସହର ଦୁଇ ଭାଗରେ ବିଭକ୍ତ ହୋଇଗଲା । ୩୧ ତାରିଖ ସଂଧ୍ୟାସୁଦ୍ଧା ମହାନଦୀ କଡ଼କୁ ଲାଗି ରହିଥିବା ମାଳବନ୍ଧଗୁଡ଼ିକରେ ଶତାଧିକ ଛିଦ୍ର ହୋଇ ପାଣିଝର ସୃଷ୍ଟି ଦ୍ୱାରା, ଧନ ଜୀବନ ନଦୀର ପ୍ରଖର ସ୍ରୋତରେ ଭସାଇ ଦେଲା । ଏପରିକି ଚାହୁଁ ଚାହୁଁ ବାଙ୍କୀ ବଜାର ଉପରେ ଛ'ଫୁଟ ଉଚ୍ଚର ଜଳସ୍ରୋତ ପ୍ରବାହିତ ହେବାକୁ ଲାଗିଲା ।

ଅଗଷ୍ଟ ୩୦ ତାରିଖ ଦିନ ରେଡ଼ିଓ ମାଧ୍ୟମରେ ଲୋକମାନଙ୍କୁ ସତର୍କକରି ଦିଆ ଯାଇଥିଲା ଦୂର ସ୍ଥାନକୁ ଚାଲିଯିବା ପାଇଁ । ତେଣୁ ଅଧିକାଂଶ ଲୋକ ଘରଦ୍ୱାର ଛାଡ଼ି ଚାଲିଯାଇଥିଲେ । କେତେକ ଲୋକ ସୁନାଦେଈ ମୁଣ୍ଡିଆ ଆଉ କେତେକ ଲୋକ ଜାତମୁଣ୍ଡିଆ ଓ ଏସ୍‌ଡ଼ିଓଙ୍କ ଅଫିସ୍‌ରେ ଆଶ୍ରୟ ନେଇଥିଲେ । କେତେକ ଲୋକ ତାଙ୍କର ଦୂର ସଂପର୍କୀୟଙ୍କ ଘର ଯେଉଁ ଅଞ୍ଚଳରେକି ବନ୍ୟାର ପ୍ରାଦୁର୍ଭାବ କମ୍ ସେ ଅଞ୍ଚଳକୁ ଚାଲିଯାଇଥିଲେ । ମାତ୍ର ଅଧିକାଂଶ ଲୋକ ବାଙ୍କୀର ଆରାଧ୍ୟା ଦେବୀ ମା' ଚର୍ଚ୍ଚିକାଙ୍କ ଉପରେ ଭରସା କରି ତାଙ୍କ ମନ୍ଦିର ବେଢ଼ାରେ ଆଶ୍ରୟ ନେଇଥିଲେ । ବାଙ୍କୀ ସହର ସନ୍ନିକଟ ହାଇସ୍କୁଲ ବରେନ୍ଦ୍ରକୃଷ୍ଣ ବିଦ୍ୟାପୀଠର ଛାତ ଉପରେ ମଧ୍ୟ କିଛି ଲୋକ ଆଶ୍ରୟ ନେଇଥିଲେ ।

କ୍ଷୁଧାର୍ତ୍ତ ନରନାରୀ ଓ ଶିଶୁମାନେ ଖୁବ୍, ଦୟନୀୟ ଅବସ୍ଥାରେ ସେଠାରେ ପଡ଼ିରହିଥିଲେ । ଚର୍ଚ୍ଚିକା ମନ୍ଦିର ବେଢ଼ାରେ ଆଶ୍ରୟ ନେଇଥିବା ଲୋକମାନଙ୍କର ଦୁର୍ଦ୍ଦଶା ଥିଲା ସବୁଠୁ ଅଧିକ । ଦୁଇଶହ କି ତିନିଶହ ଲୋକ ଆଶ୍ରୟ ନେଲାଭଳି ସ୍ଥାନ ରହିଥିଲେ ମଧ୍ୟ ସେଠାରେ ହଜାର ହଜାର ଲୋକ ଠେସା ଠେସି ହୋଇ ମହାନଦୀର ଭୟଙ୍କର ରୂପକୁ ଚକିତ ହୋଇ ଚାହିଁ ରହିଥିଲେ । କାହାରି ଆଖିରେ ଲୁହ ନାହିଁ । କାହାରି ଓଠରେ ଭାଷା ନାହିଁ । ସବୁ ଯେମିତି ନୀରବ, ନିସ୍ତବ୍ଧ । କେବଳ କରାଳରୂପୀ ମହାନଦୀର ଗୁରୁଗମ୍ଭୀର ଗର୍ଜନ ବ୍ୟତୀତ ଅନ୍ୟକିଛି ଶୁଣାଯାଉ ନଥିଲା । ମଝିରେ ମଝିରେ କ୍ଷୁଧାତୁର ଶିଶୁମାନଙ୍କର ବିକଳ କାନ୍ଦଣା ଯେକୌଣସି ନିଷ୍ଠୁର ଲୋକର ହୃଦୟକୁ ଚହଲାଇ ଦେବାଭଳି ହୃଦୟ ବିଦାରକ ଥିଲା । ମନ୍ଦିରର ସ୍ୱଳ୍ପସ୍ଥାନରେ ଏତେ ଅଧିକ ସଂଖ୍ୟକ ଲୋକ ଆଶ୍ରୟ ନେଇଥିଲେ ଯେ ସୋରିଷ ଗୋଟାଏ ପଡ଼ିବାକୁ ମଧ୍ୟ ଜାଗା ନଥିଲା । ତେଣୁ ଆକାଶମାର୍ଗରୁ ହେଲିକେପ୍ଟର ଯୋଗୁଁ ଫୋପଡ଼ା ହେଉଥିବା ସରକାରୀ ସାହାଯ୍ୟ ସେମାନଙ୍କ ପାଖରେ ପହଞ୍ଚି ପାରି ନଥିଲା । ଲୋକମାନେ ସେଠାରେ ୨ଦିନ କେବଳ ଅର୍ଦ୍ଧାହାର ଓ ଅନାହାରରେ ରହିବା ବ୍ୟତୀତ କୌଣସି ବିକଳ୍ପ ବ୍ୟବସ୍ଥା ତାଙ୍କ ପାଇଁ କରାଯାଇ ପାରି ନଥିଲା ।

୧୯୮୨ ମସିହାର ଦୁଇବର୍ଷ ତଳେ ଅର୍ଥାତ ୧୯୮୦ ରେ ମଧ୍ୟ ଏପରି ବନ୍ୟା ଆସିଥିଲା । ମାତ୍ର ତାହା ଏପରି ଭୟଙ୍କର ହୋଇନଥିଲା । ନଈପାଣି ନଈରେ ବହି ଯାଇଥିଲା । ତେଣୁ ଲୋକେ ଭାବିଲେ ଏ ବୟାଅଣୀରେ ସେୟାହେବ । ମାତ୍ର ଭାଗ୍ୟର ବିଡ଼ମ୍ବନା ଯେ ସବୁ କିଛି ଓଲଟ ପାଲଟ ହୋଇଗଲା । ମହାନଦୀର ଜଳ ପତନ ଦ୍ରୁତଗତିରେ ବୃଦ୍ଧି ପାଇଲା । ଏ ଆଡ଼େ ଆକାଶବାଣୀର ଘନ ଘନ ସତର୍କବାଣୀ । ତେଣୁ ଆଶ୍ରୟଟିକିଏ ପାଇଁ ଲୋକମାନେ ଇଆଡ଼େ ସିଆଡ଼େ ବିକଳ ଭାବରେ ଦୌଡ଼ିବାକୁ ଲାଗିଲେ । ଏତିକି ବେଳେ ଭୁସ୍‌କରି ଶବ୍ଦ ହେଲା ସହର ବଜାରର ବିଭିନ୍ନ ଛାତ ଆଉ ମନ୍ଦିରରେ ଆଶ୍ରୟ ନେଇଥିବା ଲୋକମାନଙ୍କର

ଛାତି ଭିତରୁ ଯେମିତି ଅତଡ଼ା ଖସିଲା । ଚିତ୍କାର ଶୁଭିଲା, 'ରଣପୁର ବନ୍ଧ ଭାଙ୍ଗିଗଲା ..... ।' ବାସ୍... । କେଇଟା ମୁହୂର୍ତ୍ତ ଭିତରେ ବାଙ୍କୀ ସହର ହୋଇଗଲା ଚିଲିକାମୟ, ବନ୍ୟା ଜଳର ପ୍ରଖର ସ୍ରୋତରେ ଭାସିଗଲା ଧନ, ଜୀବନ, ଘରଦ୍ୱାର ସବୁକିଛି । ଗାଈ, ଗୋରୁ, ଛେଳି ମେଣ୍ଢା, ବୃକ୍ଷଲତା କେହି ବି ବାଦ, ପଡ଼ିଲେନି ସେଥିରୁ । ବାଙ୍କୀ ସହର ଗୋଟାଏ ବିରାଟ ସମୁଦ୍ର ଭିତରେ ଛୋଟ ଦ୍ୱୀପଟିଏ ପରି ଦିଶିଲା । ବାରଫୁଟ ପାଣି ସହର ଭିତର ଦେଇ ଚାଲିଗଲା । ଚାରିଆଡ଼ ଜଳମଗ୍ନ । ଏପରିକି ବାଙ୍କୀ କଲେଜ ଉପରେ ମଧ ପ୍ରଚଣ୍ଡ ବେଗରେ ସ୍ରୋତ ଚାଲିଥାଏ । ସହରର ଏକ ଉଚ୍ଚସ୍ଥାନରେ ଥିବା ବାଙ୍କୀଥାନା ଉପରେ ମଧ ଚାରିଫୁଟ୍‌ର ବନ୍ୟାଜଳ ପ୍ରବାହିତ ହେଉଥିଲା । ଶିମିଳିପୁରର ପଶୁସ୍ୱାସ୍ଥ୍ୟ ପରିଦର୍ଶକ ମଧ ଏହି ବନ୍ୟାରେ ପ୍ରାଣ ହରାଇଥିଲେ । ବାଙ୍କୀର ଶିମିଳିପୁର ଓ ମକୁନ୍ଦପୁର ଠାରେ ଦୁଇଟି ବିରାଟ ଘାଇ ସୃଷ୍ଟି ହୋଇ ପାଖରେ ଥିବା ଶିମିଳିପୁର, ମକୁନ୍ଦପୁର, ଚାରିଘରିଆ, କରବର ପ୍ରଭୃତି ଗ୍ରାମର ଧନଜୀବନ ନଷ୍ଟ କରିଥିଲା । ବାଙ୍କୀ-କଟକ ମୁଖ୍ୟ ରାସ୍ତାରେ କରବର ଠାରେ ୧୯୧୬ ମସିହାରୁ ନିର୍ମିତ ରଣସେତୁରେ ବନ୍ୟାଜଳ ମାଡ଼ହେବା ଫଳରେ ତା'ର ଦି'ତିନିମାଇଲ ପରିଧି ମଧରେ ଅତି ଭୟଙ୍କର ଶବ୍ଦ ସୃଷ୍ଟି କରୁଥିଲା । ରଣଶଙ୍ଖର ଏ ପୈଶାଚିକ ଶବ୍ଦ ଲୋକମାନଙ୍କ ମନରେ କୋକୁଆ ଭୟସୃଷ୍ଟି କରୁଥିଲା ।

ବନ୍ୟା ସମୟର ଦୃଶ୍ୟଥିଲା ବାସ୍ତବିକ ବଡ଼ ହୃଦୟ ବିଦାରକ । ନିଜ ଆଖିରେ ଜଣେ ନଦେଖିଲେ ଏହା ବିଶ୍ୱାସ କରିବ ନାହିଁ । ୧୯୮୨ର ଏହି ସର୍ବଗ୍ରାସୀ ବନ୍ୟା ବାଙ୍କୀର ଅନ୍ୟତମ ପ୍ରତିଷ୍ଠିତ ଯୁବକବି ନବ କିଶୋର ମହାରଣାଙ୍କ ହୃଦୟ ଭିତରେ ଦାଗଟିଏ ହୋଇ ରହି ଯାଇଥିଲା । ବନ୍ୟାର ସେ ଭୟଙ୍କର ରୂପକୁ କବି ତାଙ୍କର କାବ୍ୟ ପୁସ୍ତକ 'ପ୍ରଳୟ ଉର୍ମି'ରେ ବର୍ଣ୍ଣନା କରିଛନ୍ତି ।

*''ସୁନା ଶଇଳର ଶିଖରୀ ଭାଗରେ ହୁଏ ଯେବେ ମୁହିଁ ଛିଡ଼ା*
*ହଜିଲା ଆତ୍ମା ହତାଶ ରୋଦନ ଅନ୍ତରେ କଲା କ୍ରୀଡ଼ା ।*
*ଗୋରୁ ମହିଷିର ହମ୍ବା ଆକୁଳ ତାଙ୍କର କଣ୍ଠାରୁ ଭାଡ଼ି*
*ଚାରୁ ଚପଳାର ସ୍ନେହ ସିନ୍ଦୁକ ଯାଇଛି କା'ମାଣପେଡ଼ି ।*
*ଧରିବ କେହୁଁଟି ଧର*
*ଘୁ...ଘୁ...ଘୁ ଗର୍ଜଇ ନଈ କରଇ କେ ଧିକ୍କାର ।''*

ଖାଲିଯେ ବନ୍ୟାସମୟର କରୁଣ ଦୃଶ୍ୟ କବିଙ୍କ ମନରେ ଗଭୀର ରେଖାପାତ କରିଛି ତା' ନୁହେଁ । ବନ୍ୟାର ପରବର୍ତ୍ତୀ ଦୃଶ୍ୟଗୁଡ଼ିକ ମଧ କବିଙ୍କ ଲେଖନୀରେ ହୋଇ ଉଠିଛି ପ୍ରାଣସ୍ପର୍ଶୀ ଓ ସତେଜ । ଏଇ ଯେମିତି

*'....ବାଡ଼ି କାନିସିରି ମଦରଙ୍ଗୀ ଫୁଲେ ଯେ ଜାତି ନିଃଶ୍ୱାସ ଥାଏ*
*ସହିବ ସେ କେହ୍ନେ ଏତେ ବ୍ୟୁତ୍ପାତ ପାଷାଣ ହେଲକି ଦିଏଁ*
*ବସ୍ତାନି ଧରି ଫେରିନି ଭଉଣୀ ସଂଧ୍ୟା ଆଳତି ନାଇଁ*
*ସଂଜ ସଳିତା ଚଉରା ପଡ଼ିଚି ଖରା ପାଣି ଖାଇ ଖାଇ*
*ଗୁଣ୍ଡୁଚି ମୂଷା ଭାସି ଯାଇଛିଯେ ଫୁଟି ନାହିଁ ଜହ୍ନି ଫୁଲ*
*ରଙ୍ଗଣୀଧରି ଆସିବ ମୋ' କୁନି ହେବାକୁ ଟିକିଏ ଗେଲ ।'*

x x x

ସେପ୍ଟେମ୍ବର ୧ ତାରିଖ ଅପରାହ୍ନ ସୁଦ୍ଧା ବାଙ୍କୀ ସହିତ କୌଣସି ସରକାରୀ ସଂପର୍କ ସ୍ଥାପନ କରାଯାଇ ପାରିନଥିଲା କି ସାହାଯ୍ୟ ମଧ ପହଞ୍ଚି ପାରିନଥିଲା । ହଜାର ହଜାର ଲୋକ ଛାତ ଉପରେ; ଗଛ ଉପରେ, ନିଜର ଚାଳ ଉପରେ ଆଶ୍ରୟ ନେଇ ଜୀବନ ମରଣର ଦୋ'ଛକି ରାସ୍ତା ଉପରେ ମହାନଦୀର ଭୟଙ୍କର ରୂପକୁ ଦେଖୁଥିଲେ । ପ୍ରଚଣ୍ଡ ସ୍ରୋତ ଚାଲୁଥିବାରୁ ସରକାରୀ କି ବେସରକାରୀ ସାହାଯ୍ୟ ପହଞ୍ଚିବା ସମ୍ଭବ ନହେବାରୁ ଆକାଶମାର୍ଗରୁ ବିମାନ ବାହିନୀର ହେଲିକେପ୍ଟର ଯୋଗୁଁ ରିଲିଫ୍ ସାମଗ୍ରୀ ଆକାଶ ମାର୍ଗରୁ ପକା ଯାଇଥିଲା । ବାଙ୍କୀ ସହ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ କରାଯାଇ ପାରିନଥିବାରୁ ମୃତାହତଙ୍କ ସଂଖ୍ୟା ନିର୍ଦ୍ଦିଷ୍ଟ ଭାବରେ କିଛି ଜଣା ପଡ଼ିନଥିଲା । ମାତ୍ର ସର୍ବାଧିକ କ୍ଷତିଗ୍ରସ୍ତ ହୋଇଥିବା ରାଜ୍ୟର ପାଞ୍ଚଟି କ୍ଷୁଦ୍ର ସହର ମଧରେ ବାଙ୍କୀ ଥିଲା ଅନ୍ୟତମ ।

ବନ୍ୟାବିପନ୍ନ ଲୋକମାନଙ୍କ ପାଇଁ ଧୀରେ ଧୀରେ ଯୋଗାଣ ବିଭାଗ ତରଫରୁ ଅଟା, ଚାଉଳ, ମହମବତୀ, ଦିଆସିଲି, ଚୁଡ଼ା ପ୍ରଭୃତି ଯୋଗାଇ ଦିଆ ଯାଇଥିଲା । ଏକ ହିସାବରୁ ଜଣାଯାଏ ଯେ ରିଲିଫ୍ ଆକାରରେ ବାଙ୍କୀକୁ ୧୫୦ ବସ୍ତା ଚୁଡ଼ା ଓ ୪୦୪

କ୍ୟୁଶ୍ଲାଲ ଚାଉଳ ସରକାରୀ ସାହାଯ୍ୟ ମିଳିଥିଲା । ତିନି ତାରିଖ ଆଡ଼କୁ ଜଳସ୍ତର ହ୍ରାସ ପାଇବା ସହିତ ଜଳର ବେଗ ମଧ ହ୍ରାସ ପାଇଲା । ମାତ୍ର ପ୍ରକୃତିର କ୍ରୂର ପରିହାସ ବେଳେ ଅସାମାଜିକ ବ୍ୟକ୍ତିଙ୍କ କାର୍ଯ୍ୟକଳାପ ବୃଦ୍ଧି ପାଇଥିଲା । କେତେକ ବ୍ୟକ୍ତି ଡଙ୍ଗା ସାହାଯ୍ୟରେ ସହର ମଧକୁ ପ୍ରବେଶ କରି ଦୋକାନଗୁଡ଼ିକରୁ ମାଲପତ୍ର ଲୁଟିବାକୁ ଲାଗିଲେ । ଏପରିକି ତାଙ୍କ ମଧରୁ କେତେକ ଲୋକମାନଙ୍କର ଘରତାଲା ଭାଙ୍ଗି ଧନସଂପତ୍ତି ମଧ ଲୁଟିବାକୁ ପଛ ଘୁଞ୍ଚା ଦେଲେ ନାହିଁ । ସବୁଠୁ ଦୁଃଖର କଥାଯେ ସେମାନଙ୍କୁ ଏଥିରୁ ନିବୃତ୍ତ କରିବାକୁ ଯାଇଥିବା ବାଙ୍କୀ ଥାନାର କର୍ମଚାରୀମାନଙ୍କୁ ସେମାନେ ଆକ୍ରମଣ କରିଥିଲେ । ପରେ ଅବଶ୍ୟ ସେମାନେ ଆତ୍ମରକ୍ଷା ପାଇଁ ଗୋଟିଏ ରାଉଣ୍ଡ ଗୁଳି ପାଇଁ ଫୁଟାଇଥିଲେ ଓ କେତେକଙ୍କୁ ଗିରଫ୍‌କରିବା ପାଇଁ ସକ୍ଷମ ହୋଇଥିଲେ ।

ଏହି ବନ୍ୟାଫଳରେ ବାଙ୍କୀକୁ ସଂଯୋଗ କରୁଥିବା ବିଭିନ୍ନ ସଡ଼କ ପଥଗୁଡ଼ିକ ଅସମ୍ଭବ ଭାବରେ କ୍ଷତିଗ୍ରସ୍ତ ହୋଇଥିଲା । କଟକ-ତ୍ରିଶୁଳିଆ-ବାଙ୍କୀ ରାସ୍ତା, ବାଙ୍କୀ-ସିମର ରାସ୍ତା ଓ ବାଙ୍କୀ ବୈଦେଶ୍ୱର ରାସ୍ତାଗୁଡ଼ିକର ଠାଏ ଠାଏ ବିରାଟ ଘାଇ ମାନ ସୃଷ୍ଟି ହୋଇଥିଲା । ଫଳରେ ସଡ଼କ ପଥରେ ଅନେକ ଦିନଯାଏ ବାଙ୍କୀ ସହ ଯୋଗାଯୋଗ କରିବା ସମ୍ଭବ ହୋଇ ପାରି ନଥିଲା ।

ବନ୍ୟାଜଳ ଛାଡ଼ିଲା ବେଳକୁ ବାଙ୍କୀର ଭୂଗୋଳ ସଂପୂର୍ଣ୍ଣରୂପେ ବଦଳି ଯାଇଥିଲା । ତା'ର ରୂପଥିଲା ହୃଦୟ ବିଦାରକ । କେଉଁଠି ଘର ଥିଲା କିନ୍ତୁ ଜଣା ପଡୁନଥିଲା । ବାଙ୍କୀର ଏକମାତ୍ର ବୃହଦ୍ କଲେଜ ବାଙ୍କୀ ମହାବିଦ୍ୟାଳୟର ପ୍ରକୋଷ୍ଠଗୁଡ଼ିକରେ ଆଣ୍ଠୁଏ ବହଳର କାଦୁଅ ଜମିଯାଇଥିଲା । ବାଙ୍କୀବଜାର ପୂରାପୂରି ମାଟିରେ ମିଶିଯାଇଥିଲା କହିଲେ ଭୁଲ୍ ହେବ ନାହିଁ । ବଜାର ଉପରେ ଆଠ ଫୁଟର ଗଭୀର ଖାଲ । କିଛି ଦିନ ପର୍ଯ୍ୟନ୍ତ ବାହ୍ୟ ଜଗତରୁ ବାଙ୍କୀ ସଂପୂର୍ଣ୍ଣରୂପରେ ବିଚ୍ଛିନ୍ନ ହୋଇ ପଡ଼ିଥିଲା, ଟେଲିଫୋନ୍ ସେବା, ଡାକସେବା, ୱେୟାର୍ ଲେସ ସେବା ବନ୍ଦ ହୋଇ ଯାଇଥିଲା, ପୂର୍ତ୍ତ ବିଭାଗର ସହଯୋଗରେ ରାସ୍ତାଘାଟଗୁଡ଼ିକର ମରାମତି କାର୍ଯ୍ୟ ଯୁଦ୍ଧକାଳୀନ ଭିତ୍ତିରେ ଚାଲିଲା । ଦି'ତିନି ଦିନ ମଧରେ ପ୍ରାୟ ସହର ଭିତରର କିଛି ବିରାଟ ଖାଲକୁ ପୋତି ଦିଆ ଯାଇ ପାରିଲା । ଧୀରେ ଧୀରେ ସରକାରୀ ଓ ବେସରକାରୀ ସାହାଯ୍ୟ ବାଙ୍କୀରେ ଆସି ପହଞ୍ଚିଲା, ସମଗ୍ର ବାଙ୍କୀ ଭୂଖଣ୍ଡ ଏହି ପ୍ରାକୃତିକ ବିପତ୍ତି କବଳରୁ ସଂପୂର୍ଣ୍ଣ ସୁସ୍ଥ ହେବାପାଇଁ ଦୀର୍ଘ ବର୍ଷ ବର୍ଷ ଲାଗିଯାଇଥିଲା । ବୟାଅଶୀ ବନ୍ୟାର ଭୁକ୍ତଭୋଗୀମାନେ ଏବେ ମଧ ମଧରାତ୍ରିରେ ଅଚାନକ ନିଦ ଭାଙ୍ଗିଗଲେ, ମହାନଦୀର ସେହି ପ୍ରଳୟଙ୍କରୀ ସ୍ୱରୂପକୁ ସ୍ମରଣ କରି ଭୟରେ ଶିହରି ଉଠନ୍ତି ।



## ହସ ହସାଅ

*ଚିତ୍ତରଂଜନ ସାହୁଆ,*
+୩ ବିଜ୍ଞାନ ପ୍ରଥମ ବର୍ଷ

୧. ଜଣେ ଜ୍ୟୋତିଷ ଜଣେ ଭଦ୍ରଲୋକଙ୍କର ହାତ ଦେଖୁଛନ୍ତି । ଜ୍ୟୋତିଷ ଜଣଙ୍କର ଭଦ୍ର ଲୋକଟିର ହାତ ଦେଖି ବହୁତ କଥା କହିଲେ, ଯାହା ଫଳରେ ଭଦ୍ରଲୋକଟି ବହୁତ ଖୁସି ହେଲେ । ତାପରେ ଜ୍ୟୋତିଷ ଭଦ୍ରଲୋକଟିକୁ ପଇସା ମାଗିଲେ । ଭଦ୍ରଲୋକ ଜଣଙ୍କ କହିଲେ ଯେ ଜ୍ୟୋତିଷ ମହାଶୟ, ମୋ ହାତ ଦେଖି ଆଗତ, ବର୍ତ୍ତମାନ କଥା ଜାଣି ପାରିଲେ । କିନ୍ତୁ ମୋ ପାଖରେ ପଇସା ନାହିଁ ବୋଲି କିପରି ଜାଣି ପାରିଲେ ନି ?

୨. ବବୁନୁ : (ବିଭୁତିକୁ) ଭାଇ, ଘଣ୍ଟା ମେ କିତନା ବଜା ହେ
ବିଭୁତି : ସାଢ଼େ ଦଶ
ବବୁନୁ : ଏ ଘଡ଼ି ରେଡ଼ିଓ ୟା ଟି.ଭି. ସେ ମିଲା ହେ
ବିଭୁତି : ଏ ଘନି ଟି.ଭି. ୟା ରେଡ଼ିଓ ସେ ମିଲା ନେହିଁ
ଏ ଘଡ଼ି ଶଶୁରାଲ ସେ ମିଲା ହେ ।

# ଅଂଶୁପାର ଅଶ୍ରୁ

*ପ୍ରଭାତ କୁମାର ବଳିଆର ସିଂହ*
ସହକାରୀ ଗ୍ରନ୍ଥଗାରିକ

ଅଂଶୁପା କାହାର ? ବାଙ୍କୀର ନା ଆଠଗଡ଼ର ? ଏ ପର୍ଯ୍ୟନ୍ତ ଅନେକେ ଏଇ ଦ୍ୱନ୍ଦ୍ୱରେ ପଡ଼ିଥା'ନ୍ତି । ରାଜ୍ୟର ମାନଚିତ୍ରରେ ଏହା ବାଙ୍କୀ ଉପଖଣ୍ଡର ଅନ୍ତର୍ଗତ । ବାଙ୍କୀର କବି ଗାଉଛି, ଅଂଶୁପା ହେଉଛି 'ବାଙ୍କୀର ହୃଦୟ' । ମାତ୍ର ଖବରକାଗଜରେ ଆଠଗଡ଼ ସମ୍ବାଦରେ ଏହାର ଭଲମନ୍ଦ ବାହାରେ । ଏହାର ମାଛ ବିକ୍ରିହୁଏ ଆଠଗଡ଼ ହାଟବଜାରରେ, ପଦ୍ମଫୁଲ ଓ ପତ୍ରର ଉପଭୋକ୍ତା ଅଧିକମାତ୍ରାରେ ସେଠାକାର ଲୋକ । ଏଇ ଦ୍ୱନ୍ଦ୍ୱ ମଧ୍ୟରେ ଅଂଶୁପାର ମନେହୁଏ, ସତେ ଯେପରି ସେ ଅନାଥ । ନା ଏ କୂଳର, ନା ସେ କୂଳର । ଆନ୍ତରିକତାର ସହିତ ତା'ର ଭଲ ମନ୍ଦ ବୁଝିବାକୁ କେହି ଆଗଭର ନୁହନ୍ତି ! ଚିରସୁନ୍ଦରୀ ଅଂଶୁପାର ଏହା ହେଉଛି ପ୍ରଥମ ଦୁଃଖ ।

ଯେଉଁ ଅଂଶୁପାର ପଦ୍ମବନରେ ସୂର୍ଯ୍ୟଦେବଙ୍କ କନ୍ୟା ଅଂଶୁମାଳୀ ପଦ ସ୍ଥାପନ ପୂର୍ବକ ଜଳକ୍ରୀଡ଼ା କରୁଥିଲେ, ତାହା ଆଜି ଜଳଜ ଗୁଳ୍ମ ଲତାରେ କଣ୍ଟକିତ, ଏହାର ପରିବେଶ ଉପରେ କବି ଚନ୍ଦ୍ରଶେଖର ମିଶ୍ର ''ସର ସୁନ୍ଦରୀ'' ଖଣ୍ଡ କାବ୍ୟରେ ଲେଖିଥିଲେ

''ଅଂଶୁପାର ଶିରୀ ବାରୁଣୀ ଗଗନ
ମହାପରବତ ବାରିଦ ବାହନ
ସୈକତ ମାଳିନୀ ଉତ୍କଳ କମଳା
ନଦୀ ମହାନଦୀ ସଦାପୂତ ଜଳା ।''

ଏଇ ସୁନ୍ଦର ପରିବେଶ ଆଜି ଉପଲବ୍ଧ ହୁଏନାହିଁ !

ଏକଦା କବିବର ରାଧାନାଥ ରାୟ ପୁଣି 'ଚିଲିକା'ରେ ଲେଖିଥିଲେ –

''ସ୍ୱରୂପା ଅଂଶୁପା ଲୋକେ ଆଗୋଚର
ପୂଜାସ୍ପଦ ହେଲା ଗୋ-ପଦ ପୁଷ୍କର ।''

ଅଂଶୁପାର ଦୁର୍ଭାଗ୍ୟ-ସେ ଏପରି ଏକ ରାଜ୍ୟର ସୁନ୍ଦରୀ ରମଣୀୟା କନ୍ୟା, ଯାହାର ରୂପବିନ୍ୟାସ ପାଇଁ ଦରିଦ୍ର ଶାସକ-ପିତାର ଅର୍ଥବଳର ଘୋର ଅଭାବ । ଚିରା ଲୁଗା ଆଉ ନୁଖୁରା ବାଳରେ ସେ କେତେ କାହାକୁ ବା ଆକୃଷ୍ଟ କରିପାରିବ ? ଶୁଣିବାକୁ ମିଳେ –ଅତୀତରେ ଅଂଶୁପାର ଆୟତନ ଥିଲା ସାତଶହ ପଚସ୍ତରୀ (୭୭୫) ଏକର, ସଂପ୍ରତି ମାତ୍ର ଚାରିଶହ (୪୦୦) ଏକରକୁ ହ୍ରାସ ପାଇଲାଣି । ଅତୀତର ୩୦/୪୦ ଫୁଟର ଗଭୀର ଜଳ ଏବେ ମାତ୍ର ୮/୧୦ ଫୁଟରେ ରହିଛି । ସହଜେ ତ ବର୍ଷାର ମାତ୍ରା ହ୍ରାସ ପାଇଲାଣି, ତେଣେ ଭୂତଳ ଜଳସ୍ତର ବି କମି ଗଲାଣି । ପୂର୍ବପରି ମହାନଦୀର ଜଳ ହୁଳହୁଳା ନାଳ, କାବଳା କଣ୍ଟିଆ ଜୋର ଦେଇ ଅଂଶୁପାରେ ପ୍ରବେଶ କରି ପାରୁନାହିଁ । ଅଂଶୁପା କୂଳର ସରଣ୍ଡା ଓ ଗୁଞ୍ଜର ପାହାଡ଼ର ଜଙ୍ଗଲରୁ ଅବାଧ ଗଛ କଟା ସହିତ ପଥର କଟା ଚାଲିଛି । ଫଳରେ ମୃତ୍ତିକା କ୍ଷୟ ହୋଇ ଅଂଶୁପା ପୋତି ହେବାରେ ଲାଗିଛି । ସଂକୁଚିତ ବକ୍ଷରେ ପୁଣି ପଙ୍କ, ଦଳ ଓ ଗୁଳ୍ମଲତାର ପ୍ରାଦୁର୍ଭାବ । ନିଃଶ୍ୱାସ ନେବାରେ କଷ୍ଟ ହେଉଛି ଅଂଶୁପାକୁ ! ବିଦେଶାଗତ ପକ୍ଷୀମାନେ କେବେଠାରୁ ଟା-ଟା କରି ଦେଲେଣି ଅଂଶୁପାକୁ । ପୂର୍ବପରି ସେମାନଙ୍କର ମଧୁର କଳରବରେ ଅଂଶୁପାର ଚଳଚଞ୍ଚଳ ଜଳସ୍ତର ସ୍ପନ୍ଦିତ ହେଉନାହିଁ । ବିଚରା ମୋ'ଦୁଃଖିନୀ ଅଂଶୁପା ! କିଏ ତା'ର ଲୁହ ପୋଛିଦେବ ?

କବି ଜୟକୃଷ୍ଣଙ୍କର –

ସୁନ୍ଦରେ ସୁନ୍ଦର, ସର୍ବଥା ମିଳନ
ମରତେ ତୋ'ସ୍ଥଳୀ ସିନା ଅନୁପମ
X X X
ଅଂଶୁପା ତୋ' ତୀରେ ଅଭିନବ ଛବି
ବର୍ଣ୍ଣିବି କିପରି ଖାଲି ଅନୁଭବି ?
ଅଂଶୁପା ଉତ୍କଳ ଶୋଭାର ପସରା
ତୋହ ପରସାଦେ ମୁଁ ଯେ'ପ୍ରାଣହରା ।''
X X X

ବିଗତ କିଛି ବର୍ଷ ମଧ୍ୟରେ କବି ଅମଳର ଏଇ ସୁନ୍ଦରୀ ଅଂଶୁପା ଏବଂ ତା'କୁ ଆଲିଙ୍ଗନ କରି ରହିଥିବା ସବୁଜ ଶ୍ୟାମଳ ପାର୍ବତ୍ୟ ପ୍ରକୃତି କ୍ଷତ ବିକ୍ଷତ ହୋଇ ଯାଇଛି । ନିଷ୍ଠୁର ମଣିଷର ଦୁଃଶାସନୀୟ ପ୍ରବୃତ୍ତି ହେତୁ ଅଂଶୁପାର ଅଙ୍ଗରୁ ପ୍ରାକୃତିକ ବସ୍ତ୍ରସବୁ ହରଣ ହେବାରେ ଲାଗିଛି ।

ଅଂଶୁପାର ପରିପାର୍ଶ୍ୱରେ ସରଣ୍ଡାଗଡ଼ର ଅବହେଳିତ ଇତିହାସ ଆଜି ବିଲୁପ୍ତ ପ୍ରାୟ । ତା'ର ପ୍ରାକୃତିକ ସୁଷମା ଯେପରି ଆଜି ବିଷର୍ଣ୍ଣ, ସେହିପରି କୂଳସ୍ଥ ଗୌରବମୟ ଇତିହାସ ଆଜି ବିଦୀର୍ଣ୍ଣ । କବି ଦିନେ ଗାଇଥିଲେ –

''ସେହି ତୋ' ସମୀପେ ସୁବର୍ଣ୍ଣ ପୁରଟି
ଇତିହାସେ ଯା'ର ସୁବର୍ଣ୍ଣ ପୂରଟି ।
ଅଂଶୁପା, ତୋ'ତୀରେ ସେ ପୁର ଦର୍ଶନେ
ଉତ୍କଳ ଗୌରବ ଗାଥା ପଡ଼େ ମନେ ।
ମନେପଡ଼େ ଆଜି ଜୈନ୍ଦ୍ରମଣି କଥା
ଦିଶଇ ନନ୍ଦିକା- ଲଜ୍ଜାନତ ମଥା ।''

(ଅଂଶୁପା'–ଜୟକୃଷ୍ଣ ମିଶ୍ର)

ଏହା କୂଳରେ ଥିବା ଏକ ଗୌରବମୟ ଶକ୍ତ ଇତିହାସରୁ ଆଜି ପ୍ରସ୍ଥ ପ୍ରସ୍ଥ ପ୍ରସ୍ତର ଖସିବାରେ ଲାଗିଛି । କେବଳ ରହିଛି କିଞ୍ଚିତ୍ ସଂକେତ । ଓଡ଼ିଆ ଜାତିର ଅବହେଳା ଏବଂ ଦୁର୍ଭାଗ୍ୟକୁ ଅନୁଭବ କରିହୁଏ ଅଂଶୁପାକୂଳରେ । ଅଂଶୁପା ହିଁ ଏ ଜାତିର ଦୁର୍ଦ୍ଧର୍ଷ ଇତିହାସର ମୂକସାକ୍ଷୀ । ଅଥଚ ଆଜି ତା'ର ନପୁଂସକତାକୁ ଲକ୍ଷ୍ୟକରି ଅଂଶୁପାର ବକ୍ଷରେ ତରଙ୍ଗାୟିତ ହେଉଛି ବିକ୍ଷୁବ୍ଧ ଭାବ, ଅନେକ ଅନୁଶୋଚନା ।

ଅଂଶୁପା ହ୍ରଦ କୂଳରେ ଓସ୍ତିଆ, କନ୍ତପହଁରା, କଦଳିବାରି, ସାମନ୍ତରାପୁର, ବନ୍ଧାଳୋ ଓ ବାଉଁଶପୁଟ ଗ୍ରାମ ପଞ୍ଚାୟତ ଗୁଡ଼ିକ ଅବସ୍ଥିତ । ଏହା ସବୁ ଗ୍ରାମ ପଞ୍ଚାୟତ ବହୁ ଗରିବ ଗ୍ରାମବାସୀ ଅଂଶୁପା ଉପରେ ଏକଦା ଅନେକାଂଶରେ ନିର୍ଭର କରୁଥିଲେ । ବିଶେଷକରି ମାଛ ମାରିବା, ଅଂଶୁପା ପରିଭ୍ରମଣ ପାଇଁ ଆସୁଥିବା ଦର୍ଶକମାନଙ୍କୁ ନୌକା ବିହାର କରାଇବା, ପଦ୍ମଫୁଲ ଓ ପଦ୍ମପତ୍ର ତୋଳି ବିକ୍ରି କରିବାଦ୍ୱାରା ସେମାନେ ପରିବାର ପ୍ରତିପୋଷଣ ପାଇଁ ଯତ୍‌ସାମାନ୍ୟ ଆୟ କରିପାରୁଥିଲେ । ମାତ୍ର ଅଂଶୁପାର ଆୟତନ ଓ ଜଳସ୍ତର ହ୍ରାସ ପାଇବାଦ୍ୱାରା ମତ୍ସ୍ୟସଂପଦ କ୍ରମଶଃ କ୍ଷତିଗ୍ରସ୍ତ ହେବାରେ ଲାଗିଛି । ଅନାବନା ଜଳଦ୍ୱାରା ପଦ୍ମବନ ମଧ୍ୟ ଦାରୁଣ ସ୍ଥିତିରେ ପହଞ୍ଚିଛି । ଏବେ ଆଉ ପୂର୍ବ ପରି ଦର୍ଶକ ଓ ପରିବ୍ରାଜକ କାହାନ୍ତି ? ପୁନଶ୍ଚ ମନେପଡ଼ନ୍ତି କବି ଅଧ୍ୟାପକ ସ୍ୱର୍ଗତ ଜୟକୃଷ୍ଣ ମିଶ୍ର –

''ତୋ'ତୀରେ ବିଚରି ଅଂଶୁପା ସୁନ୍ଦରୀ
ତୋ' ନୀରେ ସନ୍ତରି ଜଳହଂସ ସରି
ତୋ' କୂଳ କାନନେ କରି ସଞ୍ଚରଣ
ତୋ'ର ଅଙ୍ଗ ସଙ୍ଗ ମୃଦୁ ସମୀରଣ–
ସରସ ପରଶେ ମୁଁ ଯେ ଆତ୍ମହରା
ସରଗର ସବୁ ସମ୍ପଦ ମୋ'ପରା
XXX'' ଇତ୍ୟାଦି

ଏକଦା ପରିବ୍ରାଜକମାନେ ଅଂଶୁପା କୂଳରେ ଏହିସବୁ ଅଭ୍ୟାସରେ ଆତ୍ମହରା ହୋଇ ଉଠୁଥିଲେ । ମାତ୍ର ସେଦିନର ସେ ଅଂଶୁପା ଆଜି କାହିଁ ? ଆପଣାର କୃଶରୂପ ପ୍ରତି ଦୃଷ୍ଟି ନିକ୍ଷେପକରି ଅଂଶୁପା ତା'ର ସେଦିନର ପରିପୂର୍ଣ୍ଣ ଯୌବନକୁ ସ୍ମରଣ କରୁଛି –ଲଜ୍ଜାରେ ନଇଁ, ଯାଉଛି ତା'ର ଗର୍ବୋନ୍ନତ ମସ୍ତକ ।

ଓଡ଼ିଶାର ଦ୍ୱିତୀୟ ବୃହତ୍ ହ୍ରଦ ଏବଂ ସମଗ୍ର ଏସିଆ ମହାଦେଶର ଅନ୍ୟତମ ମଧୁର ହ୍ରଦ ''ଅଂଶୁପା''ର ଏଇ ଦୟନୀୟ ଦୃଶ୍ୟ ଏବଂ ଅବସ୍ଥା ପ୍ରତି ରାଜ୍ୟ ସରକାର ତଥା ସମଗ୍ର ଓଡ଼ିଆ ଜାତି ମଧ୍ୟ ସଚେତନ ଓ ଜାଗ୍ରତ ହେବା ଆବଶ୍ୟକ । ଆଜି ଆଉ ଭାବିବାକୁ ବେଳ ନାହିଁ ! ଯାହା ଯେତିକି ଜଳ ଅଛି, ତା' ଗର୍ଭରେ ବର୍ତ୍ତମାନ –ବର୍ଷ ବର୍ଷର ସଞ୍ଚିତ ଅଶ୍ରୁବୋଲି ତା'କୁ ମନେ କରାଯାଉ । ସମବେଦନାର ସହିତ ଅଂଶୁପାର ଦୁଃଖ ଯନ୍ତ୍ରଣା ଆଉ କାରୁଣ୍ୟକୁ ଅନ୍ତରଭରି ଅନୁଭବ କରାଯାଉ । ହୁଏତ, ଏହାଦ୍ୱାରା ଅଂଶୁପାର ପୁନରୁଦ୍ଧାର ନିମନ୍ତେ ସ୍ୱତଃ ଉତ୍ସାହ ସୃଷ୍ଟିହେବ ସରକାରୀ ସ୍ତରରେ ଏବଂ ଅନୁଭବୀ ଜନତା ମଧ୍ୟରେ ।



# ।। ବାଙ୍କୀ ରାଜ୍ୟର କରୁଣ ହାଲ୍ : ଖାସ୍ ମାହାଲ୍ ।।

*ଅଧ୍ୟାପକ ଶୈଳେନ୍ଦ୍ର ଚନ୍ଦ୍ର ଦେଓ*
ରାଜନୀତି ବିଜ୍ଞାନ ବିଭାଗ

ବାଙ୍କୀ ଏକ ଘନଘୋର ଜଙ୍ଗଲଭରା ରାଜ୍ୟ ଥିଲା । ପ୍ରାୟ ଦଶମ ଶତାବ୍ଦୀ ବେଳକୁ ମଧ୍ୟ ପ୍ରଦେଶରୁ ଡାହାଳିଆ ବଂଶଧର ମୂଳିଧଳ ନାମକ ଜନୈକ କ୍ଷତ୍ରିୟ ଆସି ରଚିକ ପାହାଡ଼ରେ ପର୍ଶୁରାମ ଆଶ୍ରମରେ ମା'ଙ୍କର ସନ୍ଧାନ ପାଇଥିଲେ । ମା' ଚର୍ଚ୍ଚିକା ତା'ଙ୍କ ସେବା ଓ ଭକ୍ତିରେ ସନ୍ତୁଷ୍ଟ ହୋଇ ସ୍ୱର୍ଣ୍ଣ ନିର୍ମିତ କର୍ଣ୍ଣଚାପ ଦୁଇଟି ଦେଇଥିଲେ । ସେଥିରୁ ସେ ଗୋଟିଏ ଚାପ ନେଇ ଓଡ଼ିଶାର ଗଜପତି ରାଜା ଅନଙ୍ଗଭୀମ ଦେବଙ୍କୁ ଭେଟି ଦେଇଥିଲେ । ଗଜପତି ସେ କାପଟିକୁ ନେଇ ମହାରାଣୀଙ୍କୁ ଦେବାରୁ ସେ ଆଉ ଗୋଟିଏ କାପ ପାଇଁ ଦାବି କରିଥିଲେ । ଗଜପତି ମହାରାଜା ମୂଳିଧଳଙ୍କୁ ଡକାଇ ଆଉ ଗୋଟିଏ କାପ ପାଇଁ କହିଥିଲେ । ଗଜପତିଙ୍କ ଅନୁରୋଧ ରକ୍ଷାକରି ନିଜ ପାଖରେ ଥିବା ଅନ୍ୟ ସ୍ୱର୍ଣ୍ଣ କାପଟି ଅକୁଣ୍ଠ ଭାବରେ ପ୍ରଦାନ କରିବାରୁ, ଗଜପତି ମହୋଦୟ ଅତ୍ୟନ୍ତ ଆନନ୍ଦିତ ହୋଇ ମା'ଚର୍ଚ୍ଚିକାଙ୍କ ଆସ୍ଥାନ ଭୂମି ବାଙ୍କୀ ନିକଟରେ ରାଜ୍ୟ ପ୍ରତିଷ୍ଠାକରି ବାକୁ ତା'ଙ୍କୁ ଅନୁମତି ଦେଇଥିଲେ ।

ଗଜପତିଙ୍କ ଆଦେଶ ପାଇଲା ପରେ, ମୂଳିଧଳ ବାଙ୍କୀରେ ରାଜ୍ୟ ପ୍ରତିଷ୍ଠା ସହିତ, ମଧ୍ୟପ୍ରଦେଶରୁ ନିଜର ଅନ୍ୟ ଦୁଇ ଭାଇଙ୍କୁ ଡକାଇ ଆଣି, ଜଣକୁ ଡମପଡ଼ାରେ ଏବଂ ଅନ୍ୟଜଣଙ୍କୁ ସରଣ୍ଡାରେ ଛଅଛଅ କୋଶ ଅଞ୍ଚଳ ଦେଇ ରାଜା ଭାବରେ ଅଧିଷ୍ଠିତ କରାଇଥିଲେ ।

ମୂଳିଧଳ ହିଁ ବାଙ୍କୀରାଜ୍ୟର ମୂଳ ରାଜା । ସେଇ ଦଶମ ଶତାବ୍ଦୀରୁ ପୁରୁଷାନୁକ୍ରମେ ବାଙ୍କୀରେ ତାଙ୍କର ବଂଶଧର ରାଜ୍ୟଶାସନ କରି ଆସୁଛନ୍ତି । ପୁରୀର ଗଜପତି ରାଜାଙ୍କର ସେବାନିଯୋଗ ନିମିତ୍ତ ଓଡ଼ିଶାର ଗଡ଼ଜାତ ଜମିଦାରମାନେ ବିଭିନ୍ନ ଦାୟିତ୍ୱସଂପନ୍ନ କରୁଥିଲେ । ଏଥିନିମିତ୍ତ ବାଙ୍କୀର ରାଜା ଗଜପତିଙ୍କୁ ଚନ୍ଦନଟୋପା ଦେବାର ଅଧିକାର ପାଇଁ ତା'ଙ୍କଠାରୁ ସୂର୍ଯ୍ୟବଂଶୀ ଓ ଶ୍ରୀଚନ୍ଦନ ଉପାଧି ପାଇଥି'ଲେ ।

ପୂର୍ବୋକ୍ତ ମୂଳିଧଳ (ବାଙ୍କୀର ରାଜା ହେଲା ପରେ ସେ ବଳଭଦ୍ର ଧଳ ଭାବରେ ପରିଚିତ ହେଲେ)ଙ୍କ ବଂଶ ପରମ୍ପରାରେ ବିଗତ ଏକହଜାର ବର୍ଷର ଶାସନ କାଳରେ ତା'ଙ୍କର ଉତ୍ତର ଦାୟାଦମାନେ ବାଙ୍କୀର ସିଂହାସନ ଆରୋହଣ କରିଯାଇଛନ୍ତି ।

ପାର୍ଥ ଶ୍ରୀଚନ୍ଦନ, ଧନଞ୍ଜୟ ଶ୍ରୀଚନ୍ଦନ, ଦୟାନିଧି ଶ୍ରୀଚନ୍ଦନ, ପଦ୍ମନାଭ ଶ୍ରୀଚନ୍ଦନ, ଫକୀର ଶ୍ରୀଚନ୍ଦନ, ବ୍ରଜ ବିହାରୀ ଶ୍ରୀଚନ୍ଦନ, ପୀତାମ୍ବର ଶ୍ରୀଚନ୍ଦନ, ଜଗନ୍ନାଥ ଶ୍ରୀଚନ୍ଦନ ମହାପାତ୍ରଙ୍କ ଶାସନ ପରେ ବାଙ୍କୀ ରାଜ୍ୟ ୧୮୩୯ ସାଲ୍‌ରେ ଖାସ୍‌ମାହାଲ୍ ହୋଇଯାଇଥିଲା । ଏହାପରେ ଦୀନବଂଧୁ ଶ୍ରୀଚନ୍ଦନ, ବିଶ୍ୱନାଥ ଶ୍ରୀଚନ୍ଦନ ଗାଦିରେ ଅଧିଷ୍ଠିତ ହୋଇଥିଲେ । ସଂପ୍ରତି ଶ୍ରୀ ନାରାୟଣ ଶ୍ରୀଚନ୍ଦନ ମାହାପାତ୍ର ହେଉଛନ୍ତି ବାଙ୍କୀରାଜ୍ୟର ସମ୍ମାନାସ୍ପଦ ରାଜା ସାହେବ ।

ବାଙ୍କୀର ଏହି ରାଜବଂଶର କେତେକ କୃତିର ବିଭୂତି ଓଡ଼ିଶାର ଇତିହାସରେ ଲିପିବଦ୍ଧ ହୋଇଛି । ଏମାନେ ମା' ଚର୍ଚ୍ଚିକାଙ୍କ ମନ୍ଦିର, ପାଟପୁରସ୍ଥ ସିଂହନାଥଙ୍କ ମନ୍ଦିର, ରଗଡ଼ିର ମହିମାମଣିଙ୍କ ମନ୍ଦିର, ସୁବର୍ଣ୍ଣପୁରରେ ତୃତୀୟା ଦେବଙ୍କ ଦେଉଳ ଆଦି ନିର୍ମାଣ କରିଯାଇଛନ୍ତି । ବାଙ୍କୀରାଜା କବିପ୍ରାଣ ପଦ୍ମନାଭ ଶ୍ରୀଚନ୍ଦନ ମହାପାତ୍ର (ଖ୍ରୀ ୧୭୩୫ – ଖ୍ରୀ ୧୭୫୭)ଙ୍କ 'ଶଶିରେଖା' କାବ୍ୟଟି ଉତ୍କଳର ସାରସ୍ୱତ ଜଗତରେ ଏକ ଅନବଦ୍ୟ କୃତି । ଧନଞ୍ଜୟ ଶ୍ରୀଚନ୍ଦନଙ୍କ ପତ୍ନୀ ଏବଂ ଦୟାନିଧି ଶ୍ରୀଚନ୍ଦନ (ଖ୍ରୀ ୧୭୧୬ – ଖ୍ରୀ ୧୭୩୫)

ଙ୍କ ମାତା ରାଣୀ ଶୁକଦେଈଙ୍କ ବୀରତ୍ୱର ଇତିହାସ ସମଗ୍ର ବିଶ୍ୱର ଇତିହାସରେ ମଧ୍ୟ ବିରଳ । ପୀତାମ୍ବର ଶ୍ରୀଚନ୍ଦନ ମହାପାତ୍ର (ଖ୍ରୀ ୧୮୧୩ – ୧୮୨୮)ଙ୍କ ଶାସନ ସମୟରେ ମା'ଚର୍ଚ୍ଚିକା ଦେବୀଙ୍କର ଚୀନ ଓ ବ୍ରହ୍ମଦେଶରେ ଥିବା କାଠ ପାଗୋଡ଼ା ଶୈଳୀରେ କାଠରେ କାରୁକାର୍ଯ୍ୟ ମଣ୍ଡିତ ଶୂନ୍ୟବାହିନୀ ମଣ୍ଡପ ନିର୍ମିତ ହୋଇଥିଲା । ଏହା ଉତ୍କଳର କଳାତ୍ମକ ଏକ ବିରଳ କୃତି ।

ବାଙ୍କୀ ରାଜବଂଶର ଏହି ସ୍ୱନାମଧନ୍ୟ ପ୍ରଜାନୁରଞ୍ଜକ ରାଜା ପୀତାମ୍ବର ଶ୍ରୀଚନ୍ଦନ ମହାପାତ୍ର ଅପୁତ୍ରକ ଥିବାରୁ ଡମପଡ଼ାରୁ ପୋଷ୍ୟପୁତ୍ର ହୋଇ ଆସିଲେ ଦାଶରଥି ଧଳସିଂହସାମନ୍ତ, ଯେକି ପରେ ବାଙ୍କୀର ରାଜା ଜଗନ୍ନାଥ ଶ୍ରୀଚନ୍ଦନ ମହାପାତ୍ର ଭାବରେ ପରିଚିତ ହେଲେ । ଏହାଙ୍କ ଶାସନ କାଳ (ଖ୍ରୀ ୧୮୨୮ – ଖ୍ରୀ ୧୮୪୦) ର ଅନ୍ତିମ ପରିଣତି ସ୍ୱରୂପ ବାଙ୍କୀ ରାଜ୍ୟ ଇଂରେଜ ସରକାରଙ୍କ ଦ୍ୱାରା ଖାସ୍ ମାହାଲ୍ ହୋଇଯାଇଥିଲା ।

ଜଗନ୍ନାଥ ଶ୍ରୀଚନ୍ଦନ ମହାପାତ୍ର କପାକୋଡ଼ିବା କର୍ମରୁ ଆସି ଅକସ୍ମାତ୍ ରାଜଗାଦିରେ ଆସୀନ ହୋଇଥିଲେ । ସେ ପ୍ରଜାମାନଙ୍କର ମଙ୍ଗଳ ନିମନ୍ତେ କୌଣସି କାର୍ଯ୍ୟ କରିବା ତ ଦୂରେ ଥାଉ, ସେମାନଙ୍କ କଥା ମଧ୍ୟ ଶୁଣୁନଥିଲେ । ସଦାବେଳେ ନିଶାମୋଦକ ସେବନ କରୁଥିଲେ । ଅତ୍ୟନ୍ତ କ୍ରୋଧୀ ମଧ୍ୟ ଥିଲେ । ଅନ୍ୟଦିଗରେ ବିଳାସ ବ୍ୟସନ ନିମନ୍ତେ ବି ବହୁ ଅର୍ଥ ବ୍ୟୟ କରୁଥିଲେ । ତାଙ୍କର ନଅଜଣ ରାଣୀ, ନଅଗୋଟି ହାତୀ ଓ ନଅଗୋଟି ଘୋଡ଼ାଥିଲେ । ଏହାକୁ ରାଜାଙ୍କର ନବଗୁଞ୍ଜର ବିଳାସ ବୋଲି କୁହାଯାଉଥିଲା । ସେ କ୍ରମଶଃ ଲୋକପ୍ରିୟତା ହରାଇବସିଲେ । ସାମାନ୍ୟ ଦୋଷତ୍ରୁଟି ଦେଖିଲେ ସେ କଠୋର ଦଣ୍ଡ ଦେଉଥିଲେ । ବ୍ରହ୍ମପୁରା ନିକଟସ୍ଥ କିଆପଲ୍ଲୀର ସିନ୍ଧୁଆ ବେହେରା ରାଜ ସେବକ ଭାବେ ପାଣିଆ ଗଉଡ଼ ପଦରେ ନିଯୁକ୍ତ ଥିଲା । ରାଜାଙ୍କର ସ୍ନାନନିମନ୍ତେ ପାଣି ଆଣି ଦେବା ଥିଲା ତା'ର ଦୈନିକ କର୍ତ୍ତବ୍ୟ । ଦିନେ ଗରାଟି ହାତରୁ ପଡ଼ି ଚେପା ହୋଇଗଲା – ରାଜାଙ୍କ ସ୍ନାନରେ ବାଧା ପହଞ୍ଚିବାରୁ ତା'ର ମୁଣ୍ଡ କାଟିବାକୁ ସେ ଆଦେଶ ଦେଲେ । ଅବଶ୍ୟ ବଳଭଦ୍ର ଦକ୍ଷିଣରାୟ ତା'ର କାଣି ଆଙ୍ଗୁଠି କାଟି ଆଣି ରକ୍ତ ଦେଖାଇବାରୁ ରାଜାଙ୍କର କ୍ରୋଧ ପ୍ରଶମିତ ହୋଇଥିଲା ।

ଏ ଭଳି ଜଣେ ଭୟଙ୍କର ଶାସକ ବିରୁଦ୍ଧରେ ପ୍ରଜାମାନେ ଅସନ୍ତୋଷ ପ୍ରକାଶ କଲେ । କଟକରେ ଅବସ୍ଥାନ କରୁଥିବା ଗଡ଼ଜାତଗୁଡ଼ିକର ସୁପରିନ୍ଟେଣ୍ଡେଣ୍ଟ ରିକେଟ୍ ସାହେବ ଙ୍କ କାନରେ ବାଙ୍କୀର ଜନ ଅସନ୍ତୋଷ ଖବର ପହଞ୍ଚିଲା । ସେତେବେଳେ କଟକ ଥିଲା ବାଙ୍କୀ ଲୋକମାନଙ୍କର ବାଣିଜ୍ୟ ବ୍ୟବସାୟର ମୁଖ୍ୟ ସ୍ଥଳ । ରିକେଟ୍ ସାହେବ କେଉଁଠାରୁ ବାଙ୍କୀର ଏଇସବୁ ସମସ୍ୟା ସଂପର୍କରେ ଅବଗତ ହେଲେ, ତାହା ଭିନ୍ନ କଥା, ମାତ୍ର ସେ ସଂଗେ ସଂଗେ ଏହାର ତନଘନା ଅନୁସନ୍ଧାନ ଆରମ୍ଭ କଲେ । ରାଜାଙ୍କ କାନରେ ଏ ଖବର ପହଞ୍ଚିଲା । ସେ ସନ୍ଦେହ କଲେ ବାଙ୍କୀ ରାଜ୍ୟର ରାଜଗୁରୁ ରଘୁନାଥ ପରମଗୁରୁ ହିଁ ପ୍ରଜାମାନଙ୍କୁ ତାଙ୍କ ବିରୁଦ୍ଧରେ ଉସୁକାଉଛନ୍ତି । କ୍ରୋଧୀ ରାଜା ସଂଗେ ସଂଗେ ରଘୁନାଥ ପରମଗୁରୁ, ତାଙ୍କ ପୁତ୍ର ଗଂଗାଧର ଏବଂ ଅନ୍ୟଜଣେ ଆନନ୍ଦ ମହାପାତ୍ରଙ୍କୁ ବନ୍ଦୀ କରି ଘୋର ଜଂଗଲ ମଧ୍ୟରେ ବୃକ୍ଷରେ ବାଂଧିଦେଇ ଚାଲିଆସିବାକୁ ହୁକୁମ କଲେ । ତା'ଙ୍କର ଉଦ୍ଦେଶ୍ୟ ଥିଲା, ଜଙ୍ଗଲୀ ପଶୁମାନେ ସେମାନଙ୍କୁ ଭକ୍ଷଣ କରିଦେବେ । ମାତ୍ର ପରେ ତା'ଙ୍କୁ ଭୟଗ୍ରାସ କଲା ଯେ, କାଳେ ସେମାନେ କୌଣସି ଉପାୟରେ ସେଠାରୁ ଖସି ଆସି ବାହାରେ ଶାସ୍ତିକଥା ପ୍ରକାଶ କରିଦେବେ, ସେଥିପାଇଁ ସେମାନଙ୍କୁ ଚନ୍ଦ୍ରପା ନାଳର ଜଳସ୍ରୋତରେ ଠିଆ କରାଇ ହତ୍ୟାକରି ଥିଲେ । (ରାଜାଙ୍କର ଆଶଙ୍କା ଥିଲା ଯେ ବ୍ରାହ୍ମଣର ରକ୍ତ ଭୂମି ଉପରେ ପଡ଼ିଲେ ସେ ଭୟଙ୍କର ଭାବେ କ୍ଷତିଗ୍ରସ୍ତ ହେବେ ।) ଆନନ୍ଦ ମହାପାତ୍ରଙ୍କ ଭାଇ ଜୟଦେବ ମହାପାତ୍ର ଓ ଦାସୀପୁତ୍ର ବଳଭଦ୍ର ଭ୍ରମରବର କଟକ ଯାଇ ବାଙ୍କୀ ରାଜା ଜଗନ୍ନାଥ ଶ୍ରୀ ଚନ୍ଦନଙ୍କ ଏହି ନାରକୀୟକାଣ୍ଡ ବିଷୟରେ ରିକେଟ୍ ସାହେବଙ୍କୁ ଅବଗତ କରାଇଲେ । ରାଜାଙ୍କୁ ସମନ ଜାରି କରାଗଲା । ସେ କଟକ ଡକାହୋଇ ଆସିଲେ । ତା'ଙ୍କର ବିଚାର

ଚାଲିଲା । ଐତିହାସିକ ପ୍ରଭାତ ମୁଖାର୍ଜିଙ୍କ ଗ୍ରନ୍ଥରେ ଏ ବିଷୟରେ ଉଲ୍ଲେଖ ଅଛି :—

"One the 29th October 1839, the Government of Bengal authorised the Superintendent to institute an enquiry with regard the conduct of the Raja. The trial commenced on the 2nd January 1840. In January 1840, Ricketts was succeeded as the Commissioner by Mills, collector of Cuttack. Mills who proceeded with the enquiry held that the Raja of Banki was guilty of murder. He was a 'reckless cruel character'. The Superintendent was informed that the Raja had also previously sacrificed lives "to gratify his wild passions".

୧୮୪୦ ସାଲ୍ ଜାନୁଆରୀ ୨ ତାରିଖରେ ଅନୁଷ୍ଠିତ ଜନ୍‌ମିଲ୍ ସାହେବଙ୍କ ଅନୁସନ୍ଧାନମୂଳକ ବିଚାର ପର୍ବରେ ଅତ୍ୟାଚାରୀ ରାଜା ଜଗନ୍ନାଥ ଶ୍ରୀଚନ୍ଦନଙ୍କୁ ସମୁଚିତ ଶାସ୍ତି ଦେବା ଉଦ୍ଦେଶ୍ୟରେ ରାମ ଶୁଭଗ ସିଂହଙ୍କ ସହିତ ପ୍ରାୟ ଚାଳିଶ ଜଣ ପ୍ରଜା ସାକ୍ଷ୍ୟ ପ୍ରମାଣ ଉପସ୍ଥାପିତ କରିଥିଲେ । ପରିଣାମ ସ୍ୱରୁପ ବାଙ୍କୀର ଏହି ଅତ୍ୟାଚାରୀ ଶାସକଙ୍କୁ ଆଜୀବନ ନଜର୍‌ବନ୍ଦୀ ଭାବରେ ରଖାଗଲା । ଅନ୍ୟଦିଗରେ ବାଙ୍କୀ ରାଜ୍ୟକୁ ଇଂରେଜ ସରକାର ୧୮୩୯ ସାଲ୍‌ଠାରୁ ୧୮୮୫ ସାଲ୍ ପର୍ଯ୍ୟନ୍ତ ନିଜ ଅଧୀନରେ କଟକ ଜିଲ୍ଲାର ଏକ ଅଂଶ ଭାବେ ଖାସ୍ ମାହାଲ୍ କରି ରଖିଲେ । ଏହା ହେଉଛି ଆମ ବାଙ୍କୀ ରାଜବଂଶର ଏକ ଦୁର୍ଭାଗ୍ୟଜନକ ପରିଣତି ।

ରାଜା ଜଗନ୍ନାଥ ଶ୍ରୀଚନ୍ଦନଙ୍କର କେହି ଉତ୍ତରାଧିକାରୀ ନଥିବାରୁ ଡମପଡ଼ା ରାଜବଂଶରୁ ସାମନ୍ତ ଦୀନବଂଧୁ ଶ୍ରୀଚନ୍ଦନ ସିଂହ (ଖ୍ରୀ ୧୮୬୫ – ୧୯୧୪) ଆସି ବାଙ୍କୀର ରାଜଗାଦି ଆରୋହଣ କଲେ । ସେତବେଳେକୁ ୧୮୪୦ରୁ ୧୮୬୫ ସାଲ୍ ମଧ୍ୟରେ ବାଙ୍କୀର କମଳାବାଗର ଗଡ଼ଟି ଲୋପ ପାଇଯାଇଥିଲା । ଦୀନବନ୍ଧୁ ଶ୍ରୀଚନ୍ଦନଙ୍କ ପରେ ତାଙ୍କ ପୁତ୍ର ବିଶ୍ୱନାଥ ଶ୍ରୀଚନ୍ଦନ ମହାପାତ୍ର (ଖ୍ରୀ ୧୯୧୪ – ୧୯୩୯) ଗାଦିନାସୀନ ହେଲେ । ସେ ଥିଲେ ବାଙ୍କୀର ସର୍ବପ୍ରଥମ ଗ୍ରାଜୁଏଟ୍ । ତା'ଙ୍କର ଉତ୍ତରାଧିକାରୀ କେହି ନଥିବାରୁ ୧୯୪୦ ସାଲ୍ ଜୁନ୍ ୨୪ ତାରିଖ ଦିନ କଳକଳା ରାଜବଂଶରୁ ପୋଷ୍ୟପୁତ୍ର ଭାବରେ ଆସି ଶ୍ରୀ ଶ୍ରୀ ନାରାୟଣ ଶ୍ରୀଚନ୍ଦନ ମାହାପାତ୍ର ସଂପ୍ରତି ବାଂଙ୍କୀର ରାଜା ସାହେବ ଭାବେ ଅଧିଷ୍ଠିତ ହୋଇଛନ୍ତି ।

କର୍ପୂର ଉଡ଼ିଯାଇ କେବଳ କନା ପଡ଼ିଛି । ରାଜ-ଐତିହ୍ୟ ରହିଛି ମାତ୍ର ରାଜାମାନଙ୍କ ହାତରୁ ଶାସନ ଦଣ୍ଡ ଖସି ପଡ଼ିଛି । ତଥାପି ଅନେକ ରାଜ ପରିବାରରେ ସ୍ୱାଚ୍ଛନ୍ଦ୍ୟ ରହିଥିଲା ବେଳେ, ବାଙ୍କୀକୁ ଦୟନୀୟ କରିଦେଇଛି ପୂର୍ବୋକ୍ତ ଖାସ୍‌ମାହାଲର ନିର୍ମମ ପରିସ୍ଥିତି ।।



## ହସର ଲହରୀ

*ବିକାଶ ରଂଜନ ପ୍ରଧାନ*
+୩ କଳା ୧ମ ବର୍ଷ (ସମ୍ମାନ)

କୁନା : ଏ ମୁନା କାଲି Engligh ପରୀକ୍ଷା ଅଛି । ମୋତେ ଟ୍ରାନ୍‌ସଲେସନ ବତେଇବୁ ।
ମୁନା : ହଁ ନିଶ୍ଚୟ ।
କୁନା : (Exam. Hall) ସାର୍ ଯିବା ଆସିବା କରୁଛନ୍ତି । ହରି, ଏ ହରି 'ସ୍ୱାର୍ଥପର' ଇଂରାଜୀ କ'ଣ ଶୀଘ୍ର କହ ।
ମୁନା : କେମିତି କହିବି, ସାର୍ ଅଛନ୍ତି ।
କୁନା : (ବାହାରକୁ ଆସି) ହରି ତୁ ଏତେ Selfish ଟା ମୋତେ ସ୍ୱାର୍ଥପରର ଇଂରାଜୀ କହିଲୁ ନାହିଁ ।

# ଆଉ ଜଣେ ବାଙ୍କୀର ଶହିଦ୍

*ହୃଷିକେଶ ରାଉତରାୟ*
*+୩ କଳା ଦ୍ୱିତୀୟ ବର୍ଷ* (ସଂସ୍କୃତ ସମ୍ମାନ)
ସହ-ସମ୍ପାଦକ ଛାତ୍ର ସଂସଦ

ଏଇ ବାଙ୍କୀ ମାଟି ମାଆ ଅନେକ ବୀର ସନ୍ତାନଙ୍କୁ ଜନ୍ମ ଦେଇଛି । ଏହାର ଇତିହାସକୁ ଦେଖିଲେ ଆମ୍ଭେମାନେ ଜାଣିବା ବାଙ୍କୀର ବୀରା ରାଣୀ ଶୁକଦେଈଙ୍କ ବୀରତ୍ୱକୁ । ୧୯୯୯ ସାଲ୍‌ରେ କାରଗିଲ୍ ଯୁଦ୍ଧରେ ଶହୀଦ୍ ହୋଇଥିବା ବାଙ୍କୀର ସୁରେନ୍ଦ୍ର କୁମାର ରାଉତ ଓ ମନୋଜ କୁମାର ଭଂଜ ସେହି ବୀରତ୍ୱ ପୂର୍ଣ୍ଣ ପରମ୍ପରାର ପ୍ରତିନିଧି । ଏ ମାଟିର ଅନେକ ବୀର ଶହୀଦମାନଙ୍କ ମଧ୍ୟରେ ଶହୀଦ୍ ଶ୍ରୀକୃଷ୍ଣ ସାମନ୍ତରାୟ ଅନ୍ୟତମ । ତାଙ୍କର ବୀରତ୍ୱ ଓ ଦେଶ ସେବା ଉପରେ ଏଇ କ୍ଷୁଦ୍ର ପ୍ରବନ୍ଧରେ ସାମାନ୍ୟ ଆଲୋକପାତ କରାଯାଇଛି ।

ଶହୀଦ୍ ଶ୍ରୀକୃଷ୍ଣଙ୍କର ଘର ବର୍ତ୍ତମାନ ବାଙ୍କୀ ଥାନା ଅଧୀନସ୍ଥ ଅନୁଆରୀ ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଗୋପଗ୍ରାମ । ଶ୍ରୀକୃଷ୍ଣଙ୍କର ବାପାଙ୍କର ନାମ ଶଙ୍କର ସାମନ୍ତରାୟ ଓ ମାତାଙ୍କର ନାମ ସୁକାନ୍ତି ସାମନ୍ତରାୟ । ବାପା ପୋଲିସ୍ କନେଷ୍ଟବଲ୍ । ତାଙ୍କର ସୁଖ ଆନନ୍ଦମୟ ସ୍ୱର୍ଗର ମନ୍ଦିରଟି ଚାରିଭାଇ ତିନିଭଉଣୀ ଓ ବାପାମାଆଙ୍କୁ ନେଇ ଗଠିତ । ସେହି ସ୍ୱର୍ଗର ମନ୍ଦିର ଉପରେ ଦିନେ ଧୂମକେତୁ ମାଡ଼ିହେବ ବୋଲି କେହି ଭାବିନଥିଲେ ।

ଶ୍ରୀ କୃଷ୍ଣଙ୍କର ଡାକନାମ ଟୁଟୁଲି । ଚାରି ପୁଅଙ୍କ ମଧ୍ୟରୁ ସେ ଥିଲେ ତୃତୀୟ ପୁତ୍ର । ତାଙ୍କର ଜନ୍ମ ୧୯୭୬ ମସିହାରେ । ଗାଁ ସ୍କୁଲରୁ ପାଠ ପଢ଼ା ଆରମ୍ଭ କରି ୧୯୯୧ ମସିହାରେ ସେ ଦଶମଶ୍ରେଣୀ ପାଶ୍ କରିଥିଲେ । ପିଲା ଦିନରୁ ସେ କୌଣସି ଅଭାବ ଅସୁବିଧାର ସମ୍ମୁଖୀନ ହୋଇନଥିଲେ କାରଣ ବାପାଙ୍କର ଚାକିରି ସହିତ ବଡ଼ଭାଇ ବାବୁଲି ସାମନ୍ତରାୟ ଏକ ଘରୋଇ କମ୍ପାନୀରେ କାର୍ଯ୍ୟ କରନ୍ତି । ଭାଇ ତ୍ରିନାଥ ସାମନ୍ତରାୟ ସମସ୍ତ ଜମିର ଦେଖାଶୁଣା ମଧ୍ୟ କରୁଥିଲେ । ଶ୍ରୀକୃଷ୍ଣ ମଧ୍ୟ ଭଲ କ୍ରିକେଟ୍ ଖେଳାଳି ଥିଲେ । ସବୁ ସମୟରେ ଖେଳିଲେ ଭବିଷ୍ୟତ ଗଢ଼ିହେବ ନାହିଁ ବୋଲି ଜାଣିଲାପରେ ସେ ଇଣ୍ଟରଭ୍ୟୁ ପରେ ଇଣ୍ଟରଭ୍ୟୁ ଦେଇ ଚାଲିଲେ । ପରିଶେଷରେ ୨୦ ବର୍ଷ ବୟସରେ ୧୯୯୬ ମସିହାରେ ଭାରତ ସୈନ୍ୟ ବାହିନୀରେ ଚାକିରି ପାଇଲେ । ମନ ବହୁତ ଖୁସି । ୧୯୯୬ ମସିହା ଏପ୍ରିଲ୍ ୨୬ ତାରିଖରେ ସେ ସୈନ୍ୟ ବାହିନୀରେ ଯୋଗ ଦେଇଥିଲେ । ସେ "୩୩ ଆର୍ମଡ୍ ଡିଭିଜନାଲ୍ ସିଗ୍‌ନାଲ ରେଜିମେଣ୍ଟ" ରେ ସିଗ୍‌ନାଲ୍ ମ୍ୟାନ୍ ଭାବରେ କାର୍ଯ୍ୟ କଲେ । ଚାକିରିର ଛଅବର୍ଷ ଖୁବ୍ ଖୁସିରେ ବିତିଗଲା । ସେ ଜାଣି ନଥିଲେ ଯେ ଏତେ ଶୀଘ୍ର ତାଙ୍କର ହସଖୁସିର ସମୟ ଶେଷ ହୋଇଯିବ ।

୨୦୦୨ ଏପ୍ରିଲ୍ ମାସ ୭, ୮ରେ ସାନ ଭଉଣୀ ଡଲିର ବିଭାଘର; କିନ୍ତୁ ସେ ଘରେ ୧୦ ତାରିଖ ଦିନ ପହଞ୍ଚିଥିଲେ । ସେତେବେଳକୁ ବାହାଘର ସରିଯାଉଥାଏ । ମନରେ ବହୁତ ଦୁଃଖ, କାରଣ ଗେହ୍ଲାଭଉଣୀର ବାହାଘରରେ ନିଜେ ଉପସ୍ଥିତ ହୋଇ ପାରିଲେ ନାହିଁ । ନିଜେ ନିଜ ଉପରେ ରାଗିଲେ, କିନ୍ତୁ ପରେ ଭାବିନେଲେ ଚାକିରି କଲେ ଓ ବିଶେଷ କରି ସୈନ୍ୟ ବାହିନୀରେ ଯୋଗ ଦେଲେ ବାପାମାଆ

ଭାଇଭଉଣୀ, ଘରଦ୍ୱାର ଶେଷରେ ନିଜକୁ ମଧ୍ୟ ଭୁଲି ଯିବାକୁ ହେବ । ଦୁଃଖ ମନକୁ ହାଲ୍‌କା କରିବା ପାଇଁ ସେ ଟିକେ ବାହାରକୁ ବୁଲି ଆସିଲେ ।

ସମୟ - ୫ଟାରୁ ୫.୩୦ ମଧ୍ୟରେ

ସ୍ଥାନ : ଗାଁ ମୁଣ୍ଡ ପୋଖରୀ ବନ୍ଧ

ସମୟଟା ଖରାଦିନ । ଗାଁ ମୁଣ୍ଡର ଦକ୍ଷିଣ ଦିଗରେ ପୋଖରୀ, ଉତ୍ତର ଦିଗରେ ମହାନଦୀ । ସ୍ଥାନଟା ଖୁବ୍ ମନୋମୁଗ୍ଧକର ଓ ସୁଲୁସୁଲିଆ ପବନ ସହିତ ତାଳଦେଇ ବଂଧୁମାନଙ୍କ ସହ ଗପ ଆରମ୍ଭ ହୋଇଗଲା । ରାତି ବଢ଼ିବା ସହିତ ଆମର କଥା ବଢ଼ି ଚାଲିଲା । ଶେଷରେ କଥା ପଡ଼ିଲା ତାଙ୍କର ଚାକିରି ବିଷୟରେ । ସନ୍ତ୍ରାସବାଦ ଓ କ୍ୟାମ୍ପର ଛଳଶି ବିଷୟରେ । ତା'ର ଉତ୍ତରରେ ସେ ଯାହା କହିଲେ ତାହା ଶୁଣିଲେ ଲୋମ ଟାଙ୍ଗୁର ଉଠିବ । ଶୀତରାତିରେ ଦେହରୁ ଗମ୍‌ଗମ୍ ଝାଳ ବାହାରି ଆସିବ ଓ ଗ୍ରୀଷ୍ମ ହେଲେ ମଧ୍ୟ ଦେହ ଶୀତେଇ ଉଠିବ । ସେମାନେ କିପରି ଦୁଇଦୁଇ ଥର ଶତ୍ରୁମାନଙ୍କ କବଳରୁ ଗୁଳି ଆଗରୁ ଖସିଛନ୍ତି ଏବଂ ସାହସିକତାର ସହିତ ପଛଘୁଞ୍ଚା ନଦେଇ ଶୁତ୍ରମାନଙ୍କ କବଳରୁ ଗୁଳି ଆଗରୁ ଖସିଛନ୍ତି ଏବଂ ସାହସିକତାର ସହିତ ପଛଘୁଞ୍ଚା ନଦେଇ ଶତ୍ରୁମାନଙ୍କୁ ମାରିଛନ୍ତି । କିନ୍ତୁ ସେଦିନ ତାଙ୍କର ଶେଷ କଥାଟି ସମସ୍ତଙ୍କୁ ଦୁଃଖ ଦେଇଥିଲା । ସେଦିନ ସେ କହିଥିଲେ, ଏଥର ଗଲେ ଆଉ ଆସି ତୁମ ସହିତ ମିଶି କଥାହେବା, ମୋ ଭାଗ୍ୟରେ ଅଛି କି ନାହିଁ ମୁଁ ଜାଣିନାହିଁ । ପ୍ରକୃତରେ ତାଙ୍କ କଥାଟା ହିଁ ଶେଷରେ ସତ ହୋଇଗଲା ।

ଏପ୍ରିଲ ୧୮ ତାରିଖରେ ସେ ଘରୁ ବାହାରିଗଲେ, ମାଆ ବଡ଼ଭାଇ ଏବଂ ଅନ୍ୟ ଗୁରୁଜନମାନଙ୍କଠାରୁ ଶେଷ ଆଶୀର୍ବାଦ ନେଇ ।

୨୦୦୨ ଏପ୍ରିଲ୍ ୨୨ ତାରିଖ ସମୟ ପୂର୍ବାହ୍ଣ । ସେମାନେ ଗୋଟିଏ ଗାଡ଼ିରେ ଜବାନ ସାତଜଣ ଯାଉଥିଲେ କର୍ମକ୍ଷେତ୍ର ଉପରକୁ । ହଠାତ୍ ତାଙ୍କ ଜୀବନ ରୂପକ ଆକାଶରେ କଳା ବାଦଲ ଢ଼ାଙ୍କିଗଲା । ପଛପଟୁ ତାଙ୍କୁ ଆକ୍ରମଣ କରଯାଇଥିଲା । ବିଚରା ସେହିଠାରେ ହିଁ ଭାରତ ମାଆ ତା'ର ପାଞ୍ଚଜଣ ସୁଯୋଗ୍ୟ ପୁତ୍ରଙ୍କୁ ହରାଇ ବସିଲା ଆଉ ଜଣେ ମାତ୍ର ବଞ୍ଚିଗଲେ । କିନ୍ତୁ ଭଗବାନ ଶ୍ରୀକୃଷ୍ଣ, ଶ୍ରୀକୃଷ୍ଣଙ୍କୁ ଦୟାକରିଥିଲେ । ତାଙ୍କୁ (ଶ୍ରୀକୃଷ୍ଣ) ସେହିଠାରୁ ନିଆଗଲା ମେଡ଼ିକାଲକୁ । ସେଠାରେ ଡାକ୍ତରମାନେ ଖୁବ୍ ଚେଷ୍ଟାକଲେ ବଞ୍ଚାଇବା ପାଇଁ, ମରଣ ସହିତ ଶ୍ରୀକୃଷ୍ଣ ପାଞ୍ଚ ଦିନ କାଳ ସଂଘର୍ଷ କରିଥିଲେ ।

ଏପ୍ରିଲ ୨୭ ତାରିଖ ସକାଳ ହେଲା, ଏହି ସକାଳ ଥିଲା ତାଙ୍କ ଜୀବନର ଶେଷ ସକାଳ । ସେଦିନ ସେ ଭାରତବାସୀଙ୍କୁ ଋଣୀ କରି ଚାଲିଗଲେ ସ୍ୱର୍ଗ ଲୋକକୁ । ୨୮ ତାରିଖରେ ଟେଲିଗ୍ରାମ୍ ଆସିଲା ଘରକୁ । ତୁଣ୍ଡ ବାଇଦ ସହସ୍ର କୋଶ । ଆମ ପଞ୍ଚାୟତ ମାତ୍ର ଏକ କୋଶ । ଦଶ ମିନିଟ୍‌ରେ ହାହାକାର ପଡ଼ିଗଲା ପଞ୍ଚାୟତ ସାରା । ପଞ୍ଚାୟତରୁ ପ୍ରାୟ ଦୁଇ ହଜାରରୁ ଅଧିକ ଲୋକଙ୍କର ଯାତ୍ରା ହେଲା । ଆମ ଗାଁଟି ସତେ ଯେପରି ଲୋତକର ବନ୍ୟାରେ ଭାସିଯିବା ପରି ମନେ ହେଲା ଯେ କୌଣସି ଲୋକ ଗାଆଁ ପଟଦେଇ ଗଲା ସେ ଶୁଣିବା କ୍ଷଣି କାନ୍ଦି ପକାଇଲା । ୨୮ ତାରିଖ ଦିନ ତାଙ୍କର ମରଶରୀର ଆସି ପହଞ୍ଚି ପାରି ନଥିଲା । ୨୯ ତାରିଖ ଦିନ ତାଙ୍କ ମରଶରୀର ଆସି ପହଞ୍ଚିଲା ଭୁବନେଶ୍ୱର ବିମାନ ବନ୍ଦରରେ । ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କର ଉପସ୍ଥିତିରେ ଶହୀଦ୍ ଶ୍ରୀକୃଷ୍ଣଙ୍କୁ ରାଷ୍ଟ୍ରୀୟ ମର୍ଯ୍ୟାଦା ଦିଆଯାଇଥିଲା । ତା'ପରେ ସେଠାରୁ ଅଣାଯାଇଥିଲା ଜନ୍ମମାଟିକୁ । ସେ ଏଠାରେ ପ୍ରାୟ ଦିନ ୧ଟାରେ ପହଞ୍ଚିଥିଲେ । ସେତେବେଳକୁ ଗାଁରେ ନାହିଁ ନଥିବା ଭିଡ଼ । ତାଙ୍କୁ ଦେଖିବା ପାଇଁ ପୁରୁଷ ଯେତେଥିଲେ ସ୍ତ୍ରୀ ଲୋକମାନେ ପ୍ରାୟ ସେତିକି ଥିଲେ । ଖରାଦିନ ଦିପହର ସମୟକୁ ଲୋକମାନେ ଖାତିର କରି ନଥିଲେ । ସମସ୍ତଙ୍କ ଆଖିରେ ଲୁହ । ମନେ ହେଉଥିଲା ସତେ ଯେପରି ସୂର୍ଯ୍ୟ

ଦେବତାଙ୍କ ତେଜଠାରୁ ଶହୀଦ୍ ଶ୍ରୀକୃଷ୍ଣଙ୍କ ତେଜ ଅଧିକ । ସୂର୍ଯ୍ୟଙ୍କ ତେଜ କମିଯାଇଥିଲା, ପବନ ବହିବା ମଧ କମିଯାଇଥିଲା । ସେଠାରେ ଉପଜିଲ୍ଲାପାଳ, ବାଙ୍କୀ ଥାନା ଭାରପ୍ରାପ୍ତ ଅଫିସର, ବୈଦ୍ୟେଶ୍ୱର ଥାନା ଭାର ପ୍ରାପ୍ତ ଅଧିକାରୀ ଓ ଅନ୍ୟାନ୍ୟ ମାନ୍ୟଗଣ୍ୟ ବ୍ୟକ୍ତି ଓ ଗାଁର ସମସ୍ତ ବ୍ୟକ୍ତି ତାଙ୍କୁ ସେଠାରେ ଶେଷ ଦର୍ଶନ କରି । ତାଙ୍କର ଅମର ଆତ୍ମାର ସଦ୍‌ଗତି ନିମନ୍ତେ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିଥିଲେ । ତା'ପରେ ତାଙ୍କୁ ନିଆଗଲା ଓଡ଼ିଶାର ଗଙ୍ଗା ମହାନଦୀ ବାଲିରେ ସଜାଯାଇଥିବା ଦୁନିଆଁର ଶେଷ ନିଆଁର କୁଇ ଉପରକୁ । ସେଠାରେ ଓଡ଼ିଶା ପୋଲିସବାହିନୀ ତାଙ୍କୁ ଶେଷ ସଲାମ ଦେଇଥିଲେ । ସେ ଆମଠାରୁ ବିଦାୟ ନେଇ ଭାରତ ମାଆ କୋଳକୁ ଚାଲିଗଲେ । ସେ ଆଜି ନାହାନ୍ତି ସତ, କିନ୍ତୁ ତାଙ୍କର ତ୍ୟାଗ ଓ ଦେଶପ୍ରେମ ତାଙ୍କୁ ଅମର କରି ଦେଇଛି ।

ଦିବଂଗତ ଶ୍ରୀକୃଷ୍ଣଙ୍କୁ ପଦେ ପୁଷ୍ପାଞ୍ଜଳି ହେଲା :-

''ବାଙ୍କୀ ମାଟିର ସେ ମହାନ୍ ବୀର
ଶ୍ରୀକୃଷ୍ଣ ନାମଟି ଥିଲା ତାଙ୍କର
ଦ୍ୱାପର ଶ୍ରୀକୃଷ୍ଣ ଗୋପପୁରରେ
ଜାତହୋଇ ଲୀଳାଖେଳା କରିଲେ ।
ଆମ ଶ୍ରୀକୃଷ୍ଣ ଯେ ଗୋପ ଗ୍ରାମରେ
ଜନ୍ମି ଦେଶ ପାଇଁ ଶହୀଦ ହେଲେ ।''



## ବନଜ୍ୟୋତ୍ସ୍ନା ପ୍ରତି

ଗୋଟିଏ ଶିକ୍ଷାନୁଷ୍ଠାନର ମୁଖପତ୍ରରେ ଯେ ଏପରି ଅମୂଲ୍ୟ ରତ୍ନ ସନ୍ନିବିଷ୍ଟ ହୋଇପାରେ, 'ବନଜ୍ୟୋତ୍ସ୍ନା ତା'ର ପ୍ରମାଣ କରିସାରିଛି ।

*ଡଃ . ନିମାର୍ଇ ଚରଣ ପଣ୍ଡା*
ସମ୍ବଲପୁର ବିଶ୍ୱବିଦ୍ୟାଳୟ

ନୀଳମଣିଙ୍କ କୃତି ଓ କୀର୍ତ୍ତିର ବହୁ ଦୁର୍ଲଭ ତଥ୍ୟ ଉପସ୍ଥାପନ କରିଛନ୍ତି । ସେଥିପାଇଁ ଓଡ଼ିଶାବାସୀଙ୍କ ପକ୍ଷରୁ ମୁଁ ବନଜ୍ୟୋତ୍ସ୍ନାକୁ କୃତଜ୍ଞତା ଜଣାଉଛି ।

*ଡଃ. ପ୍ରସନ୍ନ କୁମାର ସ୍ୱାଇଁ*
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

ମାତ୍ର କେତେଜଣ ବା ଆମ ମହାବିଦ୍ୟାଳୟର ମୁଖପତ୍ରକୁ ଏପରି ବରପୁତ୍ରଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରନ୍ତି ?

*ଶ୍ରୀଯୁକ୍ତ ଅପୂର୍ବ ରଂଜନ ରାୟ*
ଭଦ୍ରକ ବାଲେଶ୍ୱର

# ଓଡ଼ିଶାର ଧର୍ମ ଓ ପୁରାଣକୁ ବାଙ୍କୀର ଦାନ

*ଶ୍ରୁତିକୀର୍ତ୍ତି ନାୟକ*
+୩ ବିଜ୍ଞାନ ଦ୍ୱିତୀୟ ବର୍ଷ (ପଦାର୍ଥ ବିଜ୍ଞାନ ସମ୍ମାନ )

ଓଡ଼ିଶାର ଜନ୍ମଜାତକ ଆକଳନ କଲେ ଜଣାଯାଏ ଓଡ଼ିଶା ପ୍ରାଚୀନ ଉଡ୍ର, ଉତ୍କଳ, କଳିଙ୍ଗ ଯାହା ହେଉନା କାହିଁକି ଏହା ଯେ ଦେବଭୂମି, ପବିତ୍ର ଧର୍ମଭୂମିରୂପେ ସମଗ୍ର ଭାରତ ବର୍ଷରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ ଏହା ଅନସ୍ୱୀକାର୍ଯ୍ୟ । ବେଦ, ବେଦାନ୍ତ, ଉପନିଷଦ୍‌ଠାରୁ ପୁରାଣ ପର୍ଯ୍ୟନ୍ତ ଯେତେଯେତେ କାବ୍ୟକବିତା ତଥା ଧର୍ମୀୟଭାବଧାରାସମ୍ପନ୍ନ ଲେଖାମାନ ପ୍ରକାଶ ପାଇଛି ତନ୍ମଧ୍ୟରେ ଉତ୍କଳୀୟ ବ୍ୟାସଦେବ ସାରଳାଦାସ୍‌ଙ୍କ ଠାରୁ ଆରମ୍ଭ କରି ଭକ୍ତି ଯୁଗର କବି ପଞ୍ଚସଖା ଯଥା, ଜଗନ୍ନାଥ, ବଳରାମ, ଅନନ୍ତ, ଯଶୋବନ୍ତ, ଅଚ୍ୟୁତାନନ୍ଦ ଆଦି କବିମାନେ ଓଡ଼ିଶାକୁ ଭକ୍ତିରେ ପ୍ଳାବିତ କରାଇଥିଲେ । ଧର୍ମପୁରାଣ ସମନ୍ୱିତ ମହାସଙ୍ଗମସ୍ଥଳୀ ଏ ଦେଶର ଧର୍ମଧାରଣା, ସାମାଜିକ ରୀତିନୀତି ଓ ସଂସ୍କୃତି ଉପରେ ବିଭିନ୍ନ ଧର୍ମଧାରାର ପ୍ରଚଳନ ହୋଇଥିବା ଲକ୍ଷ୍ୟ କରାଯାଏ । ଓଡ଼ିଶାରେ ବିଭିନ୍ନ ସମୟରେ ବିଭିନ୍ନ ଧର୍ମର ଯେତେବେଳେ ଆବାହନୀ ଶୁଣାଯାଇଛି, ସେତେବେଳେ ବାଙ୍କୀରେ ତା'ର ସ୍ୱର ପ୍ରତିଧ୍ୱନିତ ହୋଇଛି । ଏଠାରେ ଶିବ, ଶକ୍ତି, ବିଷ୍ଣୁ, ଗଣେଶ ତଥା ସୂର୍ଯ୍ୟଙ୍କର ପୂଜା ଅର୍ଚ୍ଚନା କରାଯାଇଥିବା ଦେଖାଯାଏ । ପୁରାଣପୃଷ୍ଠାରେ ସାହିତ୍ୟରସର ନିର୍ଯ୍ୟାସ ଅନ୍ୱେଷଣ କରିବା ସର୍ବଦା ଏକ ଶୁଦ୍ଧପୂତ ଶାସ୍ତ୍ରୀୟ ପରମ୍ପରା ଏବଂ ଗୋଟିଏ ଦେଶ, ଜାତି ତଥା ମାନବ ସମାଜକୁ ଏହା ଅନେକ ସୁଶିକ୍ଷା ଦେଇଥାଏ । ଭାରତୀୟ ସଂସ୍କୃତିର ମହାନ ପୃଷ୍ଠଭୂମି ହେଲା ବେଦ, ବେଦାନ୍ତ, ଉପନିଷଦ୍ ଆଦି ପ୍ରାଚୀନ ପୁରାଣ ଭିତରେ ସାହିତ୍ୟର ସ୍ୱଚ୍ଛ, ସ୍ନିଗ୍ଧ, ଶାଶ୍ୱତ ଓ ସାବଲୀଳ ଫଲ୍‌ଗୁଧାରା ପ୍ରବହମାନ । ଏହି ପ୍ରାଚୀନତାର ଫଲ୍‌ଗୁଧାରାରେ ବାଙ୍କୀମାଟି ମଧ୍ୟ ପ୍ରଭାବିତ । ଏହାର ଧର୍ମପୁରାଣ ବହୁ ପ୍ରାଚୀନ ।

ପୁରାଣପୃଷ୍ଠା ଉନ୍ମୋଚନ କଲେ ବାଙ୍କୀର ମହାନ୍ ପୌରାଣିକ ପ୍ରସିଦ୍ଧି ଦୃଷ୍ଟିଗୋଚର ହୋଇଥାଏ । ବାଙ୍କୀର ଅଧିଷ୍ଠାତ୍ରୀ ଦେବୀ ରଚିକ ଗିରିବାସିନୀ ମା' ଚର୍ଚ୍ଚିକା ଆଦ୍ୟବନ୍ଦିତା । ଓଡ଼ିଶାର ଅଷ୍ଟଶକ୍ତିପୀଠ ମଧ୍ୟରେ ଏହା ଅନ୍ୟତମ ପୀଠ ଅଟେ । ଏହି ଚର୍ଚ୍ଚିକାପୀଠ ରଚିକ ଗିରିର ଉପରିଭାଗରେ ଅବସ୍ଥିତ । ପାଦଦେଶରେ ମା' ଚର୍ଚ୍ଚିକାଙ୍କର ପଦଧୌତ କରୁଛି ରେଣୁକା ନଦୀ ତଥା ଅନତିଦୂରରେ ମହାନଦୀ । କିମ୍ବଦନ୍ତୀ କହେ ଏହି ରଚିକ ଗିରି ଉପରେ ରଚିକ ମହର୍ଷି ତପସିଦ୍ଧ ହୋଇଥିଲେ । ଏଣୁ ଏହି ପାହାଡ଼ର ନାମ ରଚିକ ହୋଇଥିବା ବିଶ୍ୱସନୀୟ । ଭାଗବତର ନବମ ସ୍କନ୍ଧରେ ଉଲ୍ଲେଖ ଅଛି । ବ୍ରହ୍ମାଙ୍କ ପୁତ୍ର ଭୃଗୁ, ଭୃଗୁଙ୍କ ପୁତ୍ର ଚ୍ୟବନ, ଚ୍ୟବନଙ୍କ ପୁତ୍ର ଔର୍ବ ମହର୍ଷି ଏବଂ ଏହି ଔର୍ବଙ୍କ ପୁତ୍ର ହେଉଛନ୍ତି ରଚିକ । ରଚିକଙ୍କ ପୁତ୍ର ହେଉଛନ୍ତି ଜମଦଗ୍ନି । ଜମଦଗ୍ନିଙ୍କର ପତ୍ନୀ ହେଉଛନ୍ତି ରେଣୁକା । ଯେଉଁ ରେଣୁକା ନଦୀ କାଳଗର୍ଭରେ ଲୀନ ହୋଇଯାଇଥିଲା, ତାହା ୧୯୮୨ ମସିହାର ବନ୍ୟା ଫଳରେ ପୁନଶ୍ଚ ସେ ଆତ୍ମପ୍ରକାଶ କଲା, ମା' ଚର୍ଚ୍ଚିକାଙ୍କ ଅଧିଷ୍ଠାନ ରଚିକ ଗିରିର ପାଦଦେଶରେ ।

ଅନ୍ୟ ଏକ ପୌରାଣିକ କିମ୍ବଦନ୍ତୀ କହେ, ମହିଷାସୁରର ଦୁଇ ସେନା ରକ୍ତବୀର୍ଯ୍ୟ ଓ ରଣାସୁର ର ହତ୍ୟାକଲେ ଦୁର୍ଗା ତାଙ୍କ କପାଳାଗ୍ନିକୁ ପ୍ରଜ୍ୱଳିତ

କରିବାମାତ୍ରେ ଚର୍ଚ୍ଚିକାଦେବୀଙ୍କର ଆବିର୍ଭାବ ହୋଇଥିଲା । ଶଙ୍କର ନିଜପତ୍ନୀ ସତୀ-ପାର୍ବତୀଙ୍କ ସହ ବିନା ନିମନ୍ତ୍ରଣରେ ଦକ୍ଷଯଜ୍ଞରେ ଯୋଗଦାନ କରିଥିଲେ । ସେଠାରେ ନିଜ ସ୍ୱାମୀଙ୍କ ପ୍ରତି ଅପମାନ ତଥା ଅବିଚାର ସହ୍ୟ କରିନପାରି ଅଗ୍ନିକୁଣ୍ଡରେ ଝାସ ଦେବାପରେ ଶିବ ନିଜ ମୃତା ପତ୍ନୀଙ୍କର ଅର୍ଦ୍ଧଦଗ୍ଧ ଶରୀର ଧାରଣ କରି ତାଣ୍ଡବ ନୃତ୍ୟରେ ମଗ୍ନ ହେଲେ । ବିଷ୍ଣୁ ଚକ୍ର ସାହାଯ୍ୟରେ ଉକ୍ତ ମୃତ ଶରୀରକୁ ଚୌରାଅଶି ଖଣ୍ଡକରି କାଟିବାରୁ ସେ ଖଣ୍ଡଗୁଡ଼ିକ ଭାରତର ବିଭିନ୍ନ ସ୍ଥାନରେ ପତିତ ହୁଅନ୍ତେ, ସେ ସ୍ଥାନଗୁଡ଼ିକ ଶକ୍ତିପୀଠ ନାମରେ ନାମିତ ହେଲା । ସତୀଙ୍କର ଦକ୍ଷିଣବାହୁ ଯେଉଁଠାରେ ପଡ଼ିଥିଲା । ସେ ସ୍ଥାନଟି ବର୍ତ୍ତମାନ ବାଙ୍କୀ ନାମରେ ଖ୍ୟାତ । ପୁନଶ୍ଚ ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦ ମହର୍ଷିଙ୍କର ଆଜ୍ଞା ପାଇ ଦେବୀ ଚର୍ଚ୍ଚିକାଙ୍କୁ ପୂଜାର୍ଚ୍ଚନା କରିବାରେ ଦେବୀ ପ୍ରସନ୍ନ ହୋଇ ନୀଳମାଧବଙ୍କର ସହାୟ ନିମନ୍ତେ ସଦୟ ହୋଇଥିଲେ । ଉତ୍କଳର ତନ୍ତ୍ରପୀଠମାନଙ୍କ ମଧ୍ୟରେ ଏହି ଚର୍ଚ୍ଚିକାପୀଠ ଏକ ତନ୍ତ୍ରପୀଠ ଭାବେ ପ୍ରସିଦ୍ଧଲାଭ କରିଥିବା ପୁରାଣ ପୃଷ୍ଠାରୁ ଜଣାଯାଏ । ଅଘୋର ନାରାୟଣଙ୍କ ''କବିକଳ୍ପ'' ଗ୍ରନ୍ଥରୁ –

ପୁରୁବେ ରହିବେ ଚଣ୍ଡି ପଶ୍ଚିମରେ ଶିବ
ଦକ୍ଷିଣେ ବୃଦ୍ଧ ଲିଙ୍ଗଟି ଚିତ୍ରୋତ୍ପଳା ଥିବ ।
ତା'ପରେ ଦେବୀ ନାମ ଚର୍ଚ୍ଚିକାୟୀ
ପର୍ଶୁରାମ ଥାପିଯିବେ ରଚିକରେ ରହି ।
ମାତା ନାଶେ ଶର ମୂଳେ ନଦୀଧାର ଆଙ୍କି
''ଚର୍ଚ୍ଚିକା'' ରଖିବେ ଥାପି ନାମ ହେବ ବାଙ୍କୀ ।....

ବାଙ୍କୀର ପୂର୍ବଦିଗର ଅନତିଦୂରରେ ଅବସ୍ଥିତ କୁଶୁପଙ୍ଗୀ ଏବଂ ପାଥପୁର ନିକଟସ୍ଥ ଏକ ପର୍ବତମାଳାର ମଧ୍ୟଭାଗରେ ଅବସ୍ଥିତ ''ପାଣ୍ଡବଖରା'' ଗୁମ୍ଫା । ଏହି ଗୁମ୍ଫାରେ ପାଣ୍ଡବମାନେ ସେମାନଙ୍କର ଅଜ୍ଞାତବାସ ସମୟରେ ବସବାସ କରୁଥିବାର ନିଦର୍ଶନ ମିଳେ । ଏହି ଗୁମ୍ଫାଟି ମଧ୍ୟ ବର୍ତ୍ତମାନ ଅବହେଳିତ ଅବସ୍ଥାରେ ରହିଛି ।

ବାଙ୍କୀର ପଶ୍ଚିମ ଉପକଣ୍ଠରେ ଅବସ୍ଥିତ ପୁରାଣ ପ୍ରସିଦ୍ଧ ଶୈବପୀଠ ''ତ୍ରିକୂଟ'' ଧାମ ବୈଦ୍ୟନାଥ, ରାମନାଥ ଓ ସିଂହନାଥ ଦେବଙ୍କ ମନ୍ଦିର । ପୁରାଣରୁ ଜଣାଯାଏ ପ୍ରଭୁ ରାମଚନ୍ଦ୍ର, ସୀତାଦେବୀ ଏବଂ ଅନୁଜ ଲକ୍ଷ୍ମଣଙ୍କ ସହ ବସବାସ ସମୟରେ ଉତ୍କଳ ପ୍ରଦେଶରେ ପରିଭ୍ରମଣ କରିଥିଲେ ଏବଂ ଏହି ସମୟରେ ସତୀ ବୈଦେହୀ ପୂଜାର୍ଚ୍ଚନା କରିଥିବା ଶିବଙ୍କର ନାମ ବୈଦ୍ୟନାଥ । ପ୍ରଭୁ ରାମଚନ୍ଦ୍ରଙ୍କ ଦ୍ୱାରା ପୂଜିତ ଶିବଙ୍କ ନାମ ରାମନାଥ ଏବଂ ଅନୁଜ ଲକ୍ଷ୍ମଣଙ୍କ ଦ୍ୱାରା ମହାନଦୀ ଗର୍ଭରେ ପୂଜିତ ଶିବଙ୍କ ନାମ ସିଂହନାଥ ରଖିଥିଲେ । ଏହି ବର୍ଣ୍ଣନା ରାମଲୀଳା ପୁରାଣ ପ୍ରଣେତା ''ଅନଙ୍ଗ ନରେନ୍ଦ୍ର'' ତାଙ୍କ ପୁସ୍ତକରେ ବର୍ଣ୍ଣନା କରିଛନ୍ତି ଏବଂ କବି ସଦାଶିବଙ୍କ ରଚିତ ରାମଲୀଳା ରୁ ମଧ୍ୟ ଜଣାଯାଏ । ଏହି ପୁରାଣ ପ୍ରସିଦ୍ଧ ବାଙ୍କୀର ବୈଦ୍ୟେଶ୍ୱର ଠାରେ ସ୍ୱର୍ଣ୍ଣତ୍ରିଭୂଜ ନାମରେ ଖ୍ୟାତ ରାମନାଥ, ବୈଦ୍ୟନାଥ ଓ ସିଂହନାଥ ମନ୍ଦିର ଏବେ ମଧ୍ୟ ଓଡ଼ିଶାର ପ୍ରସିଦ୍ଧ ଶୈବପୀଠ ଭାବରେଖ୍ୟାତ । ଏହିପରି ପୁରାଣ ପ୍ରମାଣିତ କରେ ଯେ ତ୍ରେତୟା ଯୁଗରେ ପ୍ରଭୁ ରାମଚନ୍ଦ୍ର, ସତୀ ସୀତା ଏବଂ ଅନୁଜ ଲକ୍ଷ୍ମଣ ବନବାସ ସମୟରେ ବାଙ୍କୀର ବୈଦ୍ୟେଶ୍ୱର ଅଞ୍ଚଳକୁ ପରିଭ୍ରମଣ କରିଥିଲେ । ଯାହାଙ୍କର ପବିତ୍ର ପାଦସ୍ପର୍ଶରେ ଏ ମାଟି ଧନ୍ୟ ହୋଇଛି । କବି ସାରଙ୍ଗଧର ରାୟଗୁରୁ ତାଙ୍କର ''ରାମତୀର୍ଥ ତ୍ରିକୂଟେ'' କାବ୍ୟରେ ଏହି ପବିତ୍ର ତ୍ରିକୂଟଧାମର ବର୍ଣ୍ଣନା ଖୁବ୍ ଚମତ୍କାର ଭାବେ ପ୍ରକାଶ କରିଛନ୍ତି । ତାଙ୍କର ଉକ୍ତ କାବ୍ୟର ପ୍ରଥମ ସର୍ଗ, ପ୍ରଥମ ପଂକ୍ତି ।

*'ହେ ତ୍ରିକୂଟ ! ନୀର ନୀରାଜିତ*
*ଚିତ୍ରୋତ୍ପଳା ତଟେ ବିରାଜିତ*
*ଜଗତର କବିଭକ୍ତ ରସପାୟୀ ଭାବୁକ ପରାଣ*
*ବାସନା ପୋଷିଲେ ମନେ ଛୁଇଁବାକୁ ତୁମର ଚରଣ*
*ଶୋଭା ଦରଶନ ଲୋଭ ନରବଧୂ ଇଚ୍ଛିଲେ ବିଶେଷ*

*ଭକତି ପୂରିତ ମନେ ଭେଟିଦେଇ ପ୍ରଣତି ଅଶେଷ*
*ସୁବାଞ୍ଛିତ ଶିବ-ଶୁଭାଶିଷ ।*

ପୁରାଣର ପ୍ରସିଦ୍ଧି ପରି ଧର୍ମଧାରର ଅମୀୟସ୍ରୋତରେ ଚିର ପ୍ଲାବିତ ହୋଇଛି ଏହି ବାଙ୍କୀ ମାଟି । ଏଠାରେ ଶୈବ, ଶାକ୍ତ, ବୌଦ୍ଧ, ଜୈନ ତଥା ସର୍ବୋପରି ମହିମାଧର୍ମର ମହା ସମନ୍ୱୟ ଘଟିଛି ଏହି ବାଙ୍କୀ ମାଟିର ପ୍ରତ୍ୟେକ ଘରେ ଘରେ । ବ୍ରାହ୍ମଣ୍ୟଧର୍ମ ଠାରୁ ଆରମ୍ଭ କରି ଶୈବ, ଶାକ୍ତ, ବୈଷ୍ଣବ, ଜଗନ୍ନାଥ ସଂସ୍କୃତି ମଧ୍ୟଦେଇ ମହିମାଧର୍ମ ର ଅମୀୟ ଧର୍ମବାଣୀରେ ଏ ମାଟି ସର୍ବଦା ନିନାଦିତ । ମହାଭାରତ, ରାମାୟଣ ଯୁଗର ଧର୍ମଧାରଣାର ଉତ୍ସ ବାଙ୍କୀ ପ୍ରଥମେ ବୈଦିକ ବା ବ୍ରାହ୍ମଣ୍ୟ ଧର୍ମର ଆଦ୍ୟଭୂମି ରୂପେ ଖ୍ୟାତ ଥିଲା । ପରେ ଏହି ଧର୍ମ ବିଭିନ୍ନ ଧର୍ମ ଯଥା ଉପରବର୍ଣ୍ଣିତ ଶୈବ, ଶାକ୍ତ, ବୈଷ୍ଣବ ଆଦିଧର୍ମରେ ପ୍ରତିଫଳିତ ହୋଇଥିଲା ।

ଜଗନ୍ନାଥ ସଂସ୍କୃତି ଓଡ଼ିଶାର ଏକ ପ୍ରମୁଖ ଓ ପୁରାତନ ସଂସ୍କୃତି । ପ୍ରତ୍ୟେକ ଓଡ଼ିଆ ଜଗନ୍ନାଥ ଙ୍କୁ ନିଜର ଆରାଧ୍ୟ ଦେବତା ରୂପେ ପୂଜା କରେ । ସେହିପରି ମା'ଲକ୍ଷ୍ମୀଙ୍କୁ ମଧ୍ୟ ଧନସମ୍ପଦର ଆରାଧ୍ୟା ଦେବୀ ରୂପେ ପୂଜା କରେ । ବାଙ୍କୀରେ ଏହି ଧର୍ମର ପ୍ରଭାବ ଅନାଦିକାଳରୁ ଅନୁମେୟ । ବାଙ୍କୀର ଆରାଧ୍ୟା ଦେବୀ ଚର୍ଚ୍ଚିକାଙ୍କର ମନ୍ଦିର ପ୍ରାଙ୍ଗଣ ରେ ଥିବା ଜଗନ୍ନାଥ ମନ୍ଦିର ଖୁବ୍ ପୁରାତନ । ପୁନଶ୍ଚ ରଗଡ଼ି ଗ୍ରାମର ମହିମାମଣି ଦେବଙ୍କର ମନ୍ଦିର ପ୍ରାୟ ୧୬୦୦ ଶତାବ୍ଦୀ ରେ ନିର୍ମିତ ହୋଇଥିବା ଐତିହାସିକମାନେ ମତ ଦିଅନ୍ତି । ଡମପଡ଼ାର ଜଗନ୍ନାଥ ମନ୍ଦିର ଡମପଡ଼ା ରାଜାଙ୍କ ଦ୍ୱାରା ଏବଂ ସୁବର୍ଣ୍ଣପୁରସ୍ଥ ତୃତୀୟାଦେବ ମନ୍ଦିର କେଶରୀ ବଂଶୀୟ ରାଜାଙ୍କ ଦ୍ୱାରା ନିର୍ମିତ ହୋଇଥିବା ଜଣାଯାଏ । ହିନ୍ଦୁ ମତାନୁସାରେ ଜଗନ୍ନାଥ ବିଷ୍ଣୁଙ୍କର ଅବତାର ଅଟନ୍ତି । ବିଷ୍ଣୁଙ୍କର ଅନୁଗାମୀମାନେ ବୈଷ୍ଣବ ନାମରେ ଖ୍ୟାତ । ନବଦ୍ୱୀପର ଚୈତନ୍ୟଙ୍କର ଓଡ଼ିଶା ଆଗମନ ପରେ ଓଡ଼ିଶାରେ ବୈଷ୍ଣବଧର୍ମର ପ୍ରଭାବ ସହଜରେ ଅନୁମେୟ । ଶ୍ରୀ ଚୈତନ୍ୟଙ୍କର ପ୍ରଦର୍ଶିତ ମାର୍ଗ ଏବଂ ସଂକୀର୍ତ୍ତନ ମାଧ୍ୟମରେ ଭଜନ କୀର୍ତ୍ତନ କ୍ରମେ ସାରା ଓଡ଼ିଶାରେ ବ୍ୟାପିଥିଲା ଏବଂ ବାଙ୍କୀରେ ମଧ୍ୟ ତା'ର ପ୍ରତିଧ୍ୱନି ଶୁଣାଯାଇଥିଲା । ବାଙ୍କୀ ଗଡ଼ସ୍ଥ ଶ୍ରୀଚୈତନ୍ୟଙ୍କ ମନ୍ଦିର ସମେତ ବର୍ତ୍ତମାନ ମଧ୍ୟ ବାଙ୍କୀର ପ୍ରାୟ ଅଧିକାଂଶ ଗ୍ରାମଗୁଡ଼ିକରେ ଚୈତନ୍ୟଙ୍କର ଫଟୋଚିତ୍ର ସମ୍ମୁଖରେ ନାମ ସଂକୀର୍ତ୍ତନ ଅନୁଷ୍ଠିତ ହୁଏ । ସେହି ସମୟରେ ଅନେକ ରାଜା ମହାରାଜାମାନେ ବିଷ୍ଣୁଙ୍କର ମନ୍ଦିର ପ୍ରତିଷ୍ଠା କରିଥିଲେ । ତନ୍ମଧ୍ୟରୁ ଡମପଡ଼ାର ଗିରିଧାରୀଙ୍କ ମନ୍ଦିର ଡମପଡ଼ା ରାଜାଙ୍କ ଦ୍ୱାରା ବୃନ୍ଦାବନ ଶୈଳୀରେ ନିର୍ମିତ ହୋଇଥିବା ଜଣାଯାଏ । ସେଠାରେ ଗିରିଗୋବର୍ଦ୍ଧନଙ୍କର ପୂଜା ହୁଏ ଏବଂ ମନ୍ଦିର ସଂଲଗ୍ନ ଏକ ଅଷ୍ଟସଖାକୁଞ୍ଜ ଯମୁନା ନାମରେ ଗୋଟିଏ ପୁଷ୍କରିଣୀ ଅଛି । ଏତଦ୍‌ବ୍ୟତୀତ ପଥୁରୀପଡ଼ାସ୍ଥ ରାଧାମୋହନ ଦେବ ମନ୍ଦିର, ତୁଳସୀପୁରର ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ମନ୍ଦିର, ଓସ୍ତିଆର ରାଧାକାନ୍ତ ଦେବ ମନ୍ଦିର, ବିଲିପଡ଼ା ର ଭାଗବତ ଗୋସେଇଁ ମନ୍ଦିର ମଧ୍ୟ ଉଲ୍ଲେଖଯୋଗ୍ୟ । ଏବେ ମଧ୍ୟ ଲୋକମୁଖରେ ପ୍ରଚଳିତ ଯେ ଧରାଭାରକୁ କମ୍ କରିବାପାଇଁ ଭଗବାନ ବିଷ୍ଣୁ ଦଶଟି ଅବତାର ଗ୍ରହଣ କରନ୍ତି । ସେହି ଦଶଟି ଅବତାର ମଧ୍ୟରୁ ମର୍ଯ୍ୟାଦାପୁରୁଷୋତ୍ତମ ରାମଙ୍କର ଅବତାର ଏକ ପ୍ରମୁଖ ଅବତାର । ସେହି ପୁରୁଷୋତ୍ତମ ରାମଙ୍କର ସ୍ମୃତି ତଥା ଜନମାନସରେ ଶାନ୍ତି ନିମନ୍ତେ ଅଦ୍ୟାବଧି ମଧ୍ୟ ପ୍ରଚଳିତ "ଶ୍ରୀରାମ ନବମୀ" ବା "ରାମଲୀଳା" । ବାଙ୍କୀର ବିଭିନ୍ନ ସ୍ଥାନରେ ଯଥା ସାହାଡ଼ାପଦା, ହରିରାଜପୁର, କୁଶୁପଙ୍ଗୀ, ପାଥପୁର ଇତ୍ୟାଦି ଗ୍ରାମରେ ଏହି ଲୀଳା ନଅଦିନ କିମ୍ବା ଚଉଦ ଦିନଧରି ମହାଆଡ଼ମ୍ବରରେ ଅଥଚ ନିଷ୍ଠା ସହକାରେ ପାଳନ କରାଯାଏ ।

ପୂର୍ବକାଳରେ ବାଙ୍କୀ ମଧ୍ୟ ମହିମା ଧର୍ମ ଓ ଦର୍ଶନର ଏକ ମୁଖ୍ୟ ପୀଠ ଥିଲା । ଯାହାର ଫଳସ୍ୱରୂପ ବାଙ୍କୀର ମାଳବିହାରପୁରଠାରେ ୧୮୬୪ ଖ୍ରୀଷ୍ଟାବ୍ଦରେ

ଏକ ଧ୍ୱନିମନ୍ଦିର ପ୍ରତିଷ୍ଠା ହୋଇଥିଲା । ଏହି ଧ୍ୱନିମନ୍ଦିରକୁ ସନ୍ଥ କବି ଭୀମଭୋଇ ଏବଂ ତାଙ୍କ ଅନୁଗାମୀମାନେ ଦର୍ଶନ ପାଇଁ ଆସୁଥିଲେ । ବର୍ତ୍ତମାନ ମଧ୍ୟ ବାଙ୍କୀର ଅନେକ ଗ୍ରାମରେ ମହିମାଧର୍ମାବଲମ୍ବୀମାନେ ଦୃଷ୍ଟିଗୋଚର ହୁଅନ୍ତି ।

ବିଷ୍ଣୁଙ୍କୁ ପାଳନକର୍ତ୍ତା କୁହାଗଲେ, ଶିବଙ୍କୁ ସଂହାରକର୍ତ୍ତା କୁହାଯାଏ । ଓଡ଼ିଶାରେ ଶୈବଧର୍ମ ଯେତେ ପ୍ରାଚୀନ, ବାଙ୍କୀରେ ମଧ୍ୟ ସେତେ ପ୍ରାଚୀନ ଓ ପ୍ରସିଦ୍ଧ । ଏକଦା ଶିବଙ୍କର ତାଣ୍ଡବ ନୃତ୍ୟ ଦ୍ୱାରା ହିଁ ବାଙ୍କୀରେ ସୃଷ୍ଟି ହୋଇଥିଲା ଅନନ୍ୟ ଶକ୍ତିପୀଠ ମା' ଚର୍ଚ୍ଚିକା ଙ୍କ ପୀଠ । ତେଣୁ ବର୍ତ୍ତମାନ ମଧ୍ୟ ସେହି ପୀଠରେ ପୂଜାପାଉଛନ୍ତି ପ୍ରଭୁ ଶଙ୍କର । ଏଣୁ ଜଣାଯାଏ ଯେ ବାଙ୍କୀର ଶୈବଧର୍ମ ପୁରାଣ ପ୍ରସିଦ୍ଧ । ୨୦୦ ରୁ ୫୦୦ ବର୍ଷ ପୂର୍ବେ ନିର୍ମିତ ଶିବମନ୍ଦିରଗୁଡ଼ିକ ମଧ୍ୟରେ ତାଳବସ୍ତର କପିଳେଶ୍ୱର ମହାଦେବ, ବିଲିପଡ଼ାର ପର୍ବତେଶ୍ୱର ମହାଦେବ, ବୈଦେଶ୍ୱରର ବୈଦ୍ୟନାଥ ଦେବ, ସିଂହନାଥପୁରର ସିଂହନାଥଦେବ, କୁଶୁପଙ୍ଗୀର ନୀଳକଣ୍ଠେଶ୍ୱର ମହାଦେବ, ରଣପୁରର ଜଳେଶ୍ୱର ମହାଦେବ, ଗୋବିନ୍ଦପୁର ଓ ରତାଗଡ଼ର ସ୍ୱପ୍ନେଶ୍ୱର, ମୁକୁନ୍ଦପୁରର ଉଗ୍ରେସର ମହାଦେବ ଆଦି ପୀଠଗୁଡ଼ିକର ନାମ ଉଲ୍ଲେଖଯୋଗ୍ୟ । ରାଜାମହାରାଜାମାନେ ଶୈବଧର୍ମର ଅନୁଗାମୀ ଥିଲେ ମଧ୍ୟ ସୋମବଂଶ ବା କେଶରୀବଂଶର ରାଜତ୍ୱ କାଳରେ ଏହି ଧର୍ମର ଅଭ୍ୟୁନ୍ନତି ଘଟିଥିଲା । ତେଣୁ ସେହି ସମୟରେ ବାଙ୍କୀରେ ଅନେକ ମନ୍ଦିର ପ୍ରତିଷ୍ଠା ହୋଇଥିଲା । କେଶରୀ ବଂଶୀୟ ରାଜା ବିରାଟ କେଶରୀ ଙ୍କ ସମୟରେ ବାଙ୍କୀରେ ବୈଦ୍ୟନାଥ ମନ୍ଦିର, ରାମନାଥ ମନ୍ଦିର ଓ ସିଂହନାଥ ମନ୍ଦିର ନିର୍ମାଣ ହୋଇଥିଲା । ଉପରୋକ୍ତ ଶୈବପୀଠମାନଙ୍କରେ ମହାଶିବରାତ୍ରୀ, ଶୀତଳଷଷ୍ଠୀ ଆଦି ଉତ୍ସବମାନ ମହାସମାରୋହରେ ପାଳିତ ହୁଏ । ହରି ଓ ହର ଉଭୟେ ଉଭୟଙ୍କ ସ୍ଥାନରେ ଗରିଷ୍ଠ । ଜଣେ ପାଳନକର୍ତ୍ତା ହିସାବରେ ସୃଷ୍ଟିକୁ ପାଳନ କଲେ, ଅନ୍ୟଜଣେ ସଂହାରକର୍ତ୍ତାଭାବେ ପୃଥିବୀରେ ଅନ୍ୟାୟକୁ ଦୃଢ଼ ହସ୍ତରେ ଦମନ କରନ୍ତି । ସେହି ହରି ଓ ହରଙ୍କର ଯେଉଁଠାରେ ଭେଟ ହୁଏ ସେହି ସ୍ଥାନ ବାଙ୍କୀର ହରିହରଭେଟ ନାମରେ ଖ୍ୟାତ । ଉପରୋକ୍ତ ହର ହେଉଛନ୍ତି ସିଂହନାଥପୁରର ସିଂହନାଥଦେବ ଏବଂ ହରି ହେଉଛନ୍ତି ରଗଡ଼ିର ମହିମାମଣି ଦେବ । ତେଣୁ ଉପରୋକ୍ତ ସ୍ଥାନ ଓ ଘଟଣାଗୁଡ଼ିକ ଅନୁଧ୍ୟାନ କଲେ ଜଣାଯାଏ ଯେ, ବାଙ୍କୀର ଶୈବଧର୍ମ ଖୁବ ପ୍ରାଚୀନ ।

ଶିବ ଏବଂ ଶକ୍ତି ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଗୋଟିକର ଅଭାବରେ ଅନ୍ୟଟି ଅପୂର୍ଣ୍ଣ । ଠିକ୍ ସେହିପରି ଓଡ଼ିଶାରେ ଶୈବଧର୍ମ ପରି ଶାକ୍ତଧର୍ମ ମଧ୍ୟ ଖୁବ୍ ପ୍ରାଚୀନ । ଶକ୍ତି ଉପାସକମାନେ ଶାକ୍ତ ଭାବରେ ପରିଚିତ ଏବଂ ଶକ୍ତିଙ୍କର ବିଭିନ୍ନ ରୂପ ଅଛି ଯଥା ଦୁର୍ଗା, କାଳୀ, ଚଣ୍ଡୀ ଇତ୍ୟାଦି । ପୁରାତନ ଯୁଗରେ ବାଙ୍କୀର ଚର୍ଚ୍ଚିକା ଦେବୀଙ୍କଠାରୁ ତପସିଦ୍ଧଃ ହୋଇଥିବାର ପ୍ରମାଣ ଥିଲେ । ଚର୍ଚ୍ଚିକା ବାଙ୍କୀ ରାଜାଙ୍କର ଆରାଧ୍ୟା ଦେବୀ । ପୁନଶ୍ଚ ବାଙ୍କୀ ରାଣୀ ଶୁକଦେଇ ନିଜର ଖୋର୍ଦ୍ଧା ଅଭିଯାନ ସମୟରେ ଦେବୀଚର୍ଚ୍ଚିକାଙ୍କର ଆଶୀର୍ବାଦ ନେଇ ଜୟଯୁକ୍ତ ହୋଇଥିବାର ଜଣାଯାଏ । ବାଙ୍କୀର ଅନ୍ୟାନ୍ୟ ଶକ୍ତିପୀଠମାନଙ୍କ ମଧ୍ୟରେ ଓସ୍ତିଆର ବାଗୁଲିଦେଇ ଦୁର୍ଗାମନ୍ଦିର, ଘାସିପୁଟର ପୋଟେଳେଇ, ଅରାଚଣ୍ଡୀ, ସାମନ୍ତରାପୁରର ଖପରଚଣ୍ଡୀ ଇତ୍ୟାଦିର ନାମ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ବାଙ୍କୀର ଗ୍ରାମ ଦେବତୀ ପରମ୍ପରା ମଧ୍ୟ ଖୁବ୍ ପ୍ରାଚୀନ । ପ୍ରତ୍ୟେକ ଗ୍ରାମରେ ପ୍ରତିଷ୍ଠିତ ଗ୍ରାମଦେବୀମାନେ ସଙ୍କଟ ସମୟରେ ଗ୍ରାମବାସୀଙ୍କୁ ସୁରକ୍ଷା ଓ ସହାୟତା କରିବାର ଦୃଷ୍ଟାନ୍ତ ଓ ବିଶ୍ୱାସ ରହିଛି ।

ଓଡ଼ିଶାର ଧର୍ମ ପୁରାଣ ଓ ପ୍ରାଚୀନତା ପରି ବାଙ୍କୀରେ ମଧ୍ୟ ସର୍ବଧର୍ମର ସମନ୍ୱୟ ଘଟିଥିବା ଦୃଷ୍ଟିଗୋଚର ହୁଏ । ଏଠାରେ ଶୈବଧର୍ମ ଓ ଶାକ୍ତଧର୍ମର ପ୍ରଭାବ ଅଧିକ ପରିଲକ୍ଷିତ ହୋଇଥିବା ବେଳେ ବୈଷ୍ଣବଧର୍ମ ମହିମାଧର୍ମର ପଦଚିହ୍ନ ବାଙ୍କୀମାଟିରେ

ଢାକ୍କଲ୍ୟମାନ ଅଟେ । ଏଠାରେ ଓଡ଼ିଶୀ ଏବଂ ନଦୀୟା କିର୍ତ୍ତନର ସ୍ୱର ଶୁଭୁଥିବା ବେଳେ ରାସ, ପାଲା, ଗାଁ, ଗାଁରେ ରାମଲୀଳା ନୃତ୍ୟ, ପୋଥି, ପୁରାଣ ପାରାୟଣ ଆଦିର ଅନୁଷ୍ଠାନ ଜାଗ୍ରତହୋଇ ଜନମାନସରେ ଧର୍ମୀୟ ଚିନ୍ତା ଚେତନାର ପ୍ରଭାବ ଖୁବ୍ ଗଭୀର ଭାବେ ରେଖାପାତ କରିଥିବା ଅନୁମେୟ । ସର୍ବୋପରି ମା'ଚର୍ଚ୍ଚିକା ବାଙ୍କୀର ଅଧିଷ୍ଠାତ୍ରୀ ଦେବୀ । ମା' ଚର୍ଚ୍ଚିକାଙ୍କର ବାର ମାସରେ ତେର ପର୍ବ ପାଳିତ ହୁଏ । ଓଡ଼ିଶାରେ ଯେତେ ପର୍ବପର୍ବାଣୀ ପାଳିତ ହୁଏ, ସେ ସବୁ ଜଗନ୍ନାଥଙ୍କ ଠାରୁ ଉଭବପରି ବାଙ୍କୀର ଯେତେ ପର୍ବପର୍ବାଣୀ ପାଳିତ ହୁଏ, ସେ ସବୁ ମା'ଚର୍ଚ୍ଚିକାଙ୍କ ନିକଟରେ ପାଳିତ ହୁଏ । ଯଥା - ମା'ଚର୍ଚ୍ଚିକାଙ୍କର ବାର ମାସରେ ତେର ପର୍ବ ପାଳିତ ହୁଏ । ଓଡ଼ିଶାରେ ଯେତେ ପର୍ବପର୍ବାଣୀ ପାଳିତ ହୁଏ, ସେ ସବୁ ଜଗନ୍ନାଥଙ୍କ ଠାରୁ ଉଭବପରି ବାଙ୍କୀରେ ଯେତେ ପର୍ବପର୍ବାଣୀ ପାଳିତ ହୁଏ, ସେ ସବୁ ମା'ଚର୍ଚ୍ଚିକାଙ୍କ ନିକଟରେ ପାଳିତ ହୁଏ । ଯଥା - ମା'ଚର୍ଚ୍ଚିକାଙ୍କର ପଣାସଂକ୍ରାନ୍ତି, ଝାମୁଯାତ୍ରା, ଦଶହରା, କୁମାର ପୂର୍ଣ୍ଣିମା ଯାତ୍ରା ଇତ୍ୟାଦି । ସେହିପରି ରାମନାଥ, ବୈଦ୍ୟନାଥ ଏବଂ ସିଂହନାଥଙ୍କ ପୀଠରେ ମକର ସଂକ୍ରାନ୍ତି ଦିନ ମକର ଯାତ୍ରା ଖୁବ୍ ପ୍ରସିଦ୍ଧି ଲାଭ କରିଛି । ଓଡ଼ିଶାର ଧର୍ମପୁରାଣରେ ବାଙ୍କୀ ପ୍ରମୁଖ ସ୍ଥାନ ଅଧିକାର କରିଥିବା ବେଶ୍ ଲକ୍ଷଣୀୟ ।



***ସହାୟକ ଗ୍ରନ୍ଥ :***


୧ । ରାମତୀର୍ଥ ତ୍ରିକୂଟେ - କବି ସାରଙ୍ଗଧର ରାୟଗୁରୁ ।

୨ । ଓଡ଼ିଶାର ଧାର୍ମିକ ଚେତନାରେ ବାଙ୍କୀ - ବାଙ୍କୀ ମହୋତ୍ସବ 'ସ୍ମରଣିକା' କବି କୌଶିକ ନାୟକ ।

୩ । ବାଙ୍କୀର ଧାର୍ମିକ ଚେତନାରେ ଶ୍ରୀରାମ ନବମୀ ........ଏ ଜନ

୪ । ଏଇ ମୋର ବାଙ୍କୀ ପ୍ରଣାମ .....ପ୍ରଣାମ... । ଜ୍ଞାନେନ୍ଦ୍ର ମୋହନ ମିଶ୍ର - ବାଙ୍କୀ ମହୋତ୍ସବ 'ସ୍ମରଣିକା' ।


---

## ହସ ପସରା

*ବିଷ୍ଣୁ ପ୍ରସାଦ କର*

ଦୁଇ ମଦୁଆଙ୍କ ମଧ୍ୟରେ କଥାବାର୍ତ୍ତା ।

୧ମ ମଦୁଆ : ଭାଇ ମୋ ଦେହରୁ ଯେପରି ଝାଳ ବାହାରୁଛି ସେପରି ସମସ୍ତଙ୍କର ବାହାରୁଥିବ ତ ।

୨ୟ ମଦୁଆ : ହଁ ।

୧ମ ମଦୁଆ : ତେବେ ମାଛମାନଙ୍କର ମଧ୍ୟ ଝାଳ ବାହାରୁଥିବ ।

୨ୟ ମଦୁଆ : ହଁ ନିଶ୍ଚୟ ।

୧ମ ମଦୁଆ : ତୁମେ କିପରି ଏହା ଜାଣିଲ ?

୨ୟ ମଦୁଆ : ଆରେ ! ଏଥିପାଇଁ ପରା ସମୁଦ୍ର ପାଣି ଲୁଣିଆ ହୋଇଛି ।

# ମା'ଚର୍ଚ୍ଚିକାୟୀଙ୍କ ବଳି ପରମ୍ପରା

ଅଧ୍ୟାପକ ଯୋଗୀନାଥ ମଲ୍ଲିକ
ଇତିହାସ ବିଭାଗ

''ଯା ଦେବୀ ବନ୍ଧୁ କାଭାଂ ଉଚିକ
ଗିରିବନ - ବାସିନୀ ଚଞ୍ଚଳାୟାଃ
ଯା ଦେବୀ ମୂଳଶକ୍ତିଃ ତ୍ରିଭୁବନ ଜନନୀ
ରେଣୁକାୟାଃ ତଟସ୍ଥା
କୈବର୍ତ୍ତାନାଂ ପ୍ରପୂଜ୍ୟା ପରଶୁଧରନୁତା
ଯା ହିମାଦେଶ୍ଚ କନ୍ୟା
ସା ଦେବୀ ଭଦ୍ରଦାତ୍ରୀ ଦଳୟତୁ ଦୁରିତଂ
ମା'ଚର୍ଚ୍ଚିକାୟୀ ବିଘ୍ନହନ୍ତୀ ।''

ଓଡ଼ିଶାର କଟକ ଜିଲ୍ଲାସ୍ଥ 'ବାଙ୍କୀ' ସବଡ଼ିଭିଜନ ଅନ୍ତର୍ଗତ ଏବଂ ଚିର ପ୍ରବହମାନ ମହାନଦୀର ଉତ୍ତର ପାର୍ଶ୍ୱରେ ଶ୍ରୀ ଶ୍ରୀ ମା'ଚର୍ଚ୍ଚିକା ଦେବୀଙ୍କ ମନ୍ଦିର ବିଦ୍ୟମାନ । ଅନେକ ପୁରାଣ, କିମ୍ବଦନ୍ତୀ, ଇତିହାସ ଏବଂ ଲୋକକଥାରେ ଉପାଣିତ-ଉତ୍କଳ ବନ୍ଦିତା ମା' ଚର୍ଚ୍ଚିକା ବାଙ୍କୀବାସୀଙ୍କର କଲ୍ୟାଣଦାୟିନୀ ଏବଂ ଇଷ୍ଟ ଠାକୁରାଣୀ । ଓଡ଼ିଶାରେ ଭୌମ ବଂଶରେ ରାଜତ୍ୱ କାଳରେ ଶକ୍ତି ପୂଜାର ବହୁଳ ପ୍ରସାର ଘଟିଥିବା ଇତିହାସ ସାକ୍ଷ୍ୟ ପ୍ରଦାନ କରେ; କିନ୍ତୁ ପ୍ରାୟତଃ ଏହି ଶକ୍ତି ପୂଜାର ଆୟମାରମ୍ଭ ଷଷ୍ଠ, ସପ୍ତମ ଶତାବ୍ଦୀରୁ ସୃଷ୍ଟି ହୋଇଛି ବୋଲି ବିବେଚନା କରାଯାଏ । ଏହି ସମୟରେ ଓଡ଼ିଶାରେ ଅନେକ ଶାକ୍ତ ଯୋଗିନୀ ପୀଠଗୁଡ଼ିକର ପ୍ରତିଷ୍ଠା ସମ୍ଭବ ହୋଇ ପାରିଥିଲା । ଶାକ୍ତମାନଙ୍କ ମତରେ 'ଶକ୍ତି' ହେଉଛନ୍ତି ବ୍ରହ୍ମ ସ୍ୱରୂପିଣୀ । ବ୍ରହ୍ମ ଠାରୁ ଜଗତର ସୃଷ୍ଟି, ବ୍ରହ୍ମରେ ଜଗତର ସ୍ଥିତି ଏବଂ ବ୍ରହ୍ମରେ ଜଗତର ଲୟ । ଏହି ଶକ୍ତିସ୍ୱରୂପିଣୀ ଦୁର୍ଗା/ମଙ୍ଗଳା /ବିମଳା/ ଶାରଳା ହେଉଛନ୍ତି ଦୁର୍ଗତି ଧ୍ୱଂସର ପ୍ରତୀକ । ଅନ୍ୟ ପକ୍ଷରେ ଦୁର୍ଗାଙ୍କର 'ଦୁ' ଅକ୍ଷର ଦାରିଦ୍ର୍ୟ, ଦୁଃଖକୁ ନାଶ କରିବାର ପ୍ରତୀକ ଏବଂ ରେଫ୍- ରୋଗ, ପାପ ଏବଂ ଅନ୍ୟାୟ, ଅତ୍ୟାଚାର, ଅନୀତି, ଆଳସ୍ୟ ପ୍ରଭୃତିର ନାଶବାଚକ କେବଳ ଦୁର୍ଗାଙ୍କ ପାଇଁ ଉର୍ଦ୍ଦିଷ୍ଟ ।

ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀରୁ ବଳିପ୍ରଥାର ପ୍ରଚଳନ ଥିଲା ବୋଲି ପ୍ରାଚୀନ ଇତିହାସ ସାକ୍ଷ୍ୟ ପ୍ରଦାନ କରେ । ଓଡ଼ିଶାର କେତେକ ଶକ୍ତି ପୀଠଗୁଡ଼ିକରେ ବଳି ପରମ୍ପରା ପ୍ରଚଳନ ଥିଲାବୋଲି ଅନେକ କିମ୍ବଦନ୍ତୀ ତଥା ପୋଥି, ଶାସ୍ତ୍ରରେ ଉଲ୍ଲିଖିତ ରହିଛି । ତନ୍ମମଧ୍ୟରୁ ବାଙ୍କୀସ୍ଥିତ ମା' ଚର୍ଚ୍ଚିକାଙ୍କ ବଳି ପରମ୍ପରା ଅତ୍ୟନ୍ତ ଲୋମହର୍ଷଣକାରୀ ଏବଂ ହୃଦୟ ବିଦାରକ । ପ୍ରକୃତ ପକ୍ଷେ ଏହା କେବେ ଏଠାରେ ପ୍ରଚଳନ ହୋଇଥିଲା ତାହାର ପ୍ରକୃତ ସତ୍ୟତା ଏଯାବତ୍ ସ୍ଥିର ହୋଇପାରିନାହିଁ । ଲୋକ ସାହିତ୍ୟରେ ବର୍ଣ୍ଣିତ ବାଙ୍କୀର ତତ୍କାଳୀନ (୧୮୯୫ ଖ୍ରୀଷ୍ଟାବ୍ଦ) ସମ୍ରାଟ ବ୍ରଜବିହାରୀ ଶ୍ରୀଚନ୍ଦନ ଅପୁତ୍ରକ ଥିବାରୁ ଇଷ୍ଟଦେବୀ ମା'ଚର୍ଚ୍ଚିକାଙ୍କର ଶରଣାପନ୍ନ ହେଲେ । ମା'ଚର୍ଚ୍ଚିକାୟୀଙ୍କ ପାଖରେ ଦୀର୍ଘ ଅନାହାରରେ ଜଳସ୍ପର୍ଶ ନକରି ସେ ଗୁହାରିଆ (ଦଣ୍ଡପ୍ରଣାମ ବା ଅଧିଆ) ପଡ଼ିଲେ ଏବଂ ୧୦ ମେଷ ବଳିଦେଲେ । ଦୀର୍ଘ ୭ ଦିନ ଅନ୍ତେ ମା' ତାଙ୍କୁ ସ୍ୱପ୍ନାବିଷ୍ଟ ହୋଇ ବରପ୍ରଦାନ କଲେ ଯାହାକି ଜନୈକ କବିତା ଗ୍ରନ୍ଥର କେତେକ ପଂକ୍ତିରୁ ଅନୁମେୟ କରାଯାଏ ।

''ଚତୁର୍ଦ୍ଦିଗେ ନିଶାର୍ଦ୍ଧରେ ହେଲା ଆଲୋକିତ
କମ୍ପିଲା ମନ୍ଦିର ସ୍ଥାନ ଅଳିନ୍ଦ କବାଟ ।
ବିଜୁଳିର ତେଜ ଉଠେ ଘନଘନ ହୋଇ
କଳାମୂର୍ତ୍ତୀ ଉଭା ହୋଇ କହିଲେ ବୁଝାଇ
''ଭୋ ରାଜନ ! ଯେବେ ପାଶେ ପଶିଲୁ ଶରଣ
ଅପୁତ୍ରକ କଷ୍ଟ ଦଣ୍ଡ କରିବି ମୋଚନ

ସାତ ଦିନ ସାତରାତ୍ର ହୋଇ ଉଜାଗର
ନିଶାର୍ଦ୍ଧେ ପୂଜିବୁ ବାବୁ ମୋହରି ପୟର
ପୂଜା ଶେଷେ ଦେବୁ ମୋତେ ରକତ ଆହୁତି
ପଶୁବଧେ ମୋ 'ଚାମୁଣ୍ଡା, ଯୋଗ୍ମୀ ହେବେ ତୃପ୍ତି
ମଥାପାତି ନରପତି ମାଗି ନେବୁ ବର
ମୋ' ପ୍ରସାଦେ ନିଶ୍ଚେ ତୁହି ଲଭିବୁ କୁମର ।
(ରକ୍ତ ଆହୁତି – କବି ଯମେଶ୍ୱର)

ଏତଦ୍‌ଭିନ୍ନ ଚୈତନ୍ୟ ଦାସଙ୍କ ''ହେତୁ ଉଦୟ ଭାଗବତ''ରେ ବର୍ଣ୍ଣିତ ଅଛି ଯେ ୧୩୧୮ ଖ୍ରୀଷ୍ଟାବ୍ଦରେ ମହାରାଣୀ ମୁକ୍ତାଦେଇ ମେରୁଯାତ୍ରା, କର୍ଣ୍ଣା ଫୋଡ଼ାପାଟ ଝାମୁ ସହିତ ବଳିଯାତ୍ରା ପ୍ରଚଳନ କରିଥିଲେ ।

ଅନ୍ୟଏକ ସଂକ୍ଷିପ୍ତ ପ୍ରାଚୀନ ପୁସ୍ତିକାରୁ ଜଣାପଡ଼େ ଯେ ମା'ଚର୍ଚ୍ଚିକାଙ୍କ ନିକଟରେ ମେଷ, ମହିଷ, କୁକ୍କୁଟ, ଛାଗଳ ଇତ୍ୟାଦି ବଳି ପ୍ରଚଳନ ଥିଲା । ଯାହାକି ନିମ୍ନୋକ୍ତ ସାକ୍ଷ୍ୟ-ପଂକ୍ତିଗୁଡ଼ିକରୁ ଆଭାସ ମିଳେ ।

''ମହିଷ ଆଣିବେ ବାନ୍ଧି । ଗୋଡ଼ ଚାରି ଦେବେ ଛନ୍ଦି
ଝୁଲାଇବେ ପୁଷ୍ପମାଳା । ଯୁପକାଷ୍ଠେ ଦେବେଗଳା
ମିଞ୍ଜି ମିଞ୍ଜି ଦୀପ ଜାଳି । ମସ୍ତକେ ସିନ୍ଦୂର ବୋଳି
ଆସିବ କାଳେସୀ ଧାଇଁ । ଘଣ୍ଟ ବାଦ୍ୟକୁ ଏଡ଼ାଇ
କାଢ଼ି ଧରିଣ ଜାକୋଡ଼ି । ଲହ ଲହ ଜିହ୍ୱା କାଢ଼ି
ବେକରେ ଚୋଟ ବସାଇ । ଗଣ୍ଡିରୁ ମୁଣ୍ଡ ଖସାଇ
ରକତକୁ ଯିବ ପିଇ । ନାଚିବ ଉନ୍ମତ୍ତେ ଡେଇଁ
ସରାରେ ନେବ ରୁଧିର । ଯିବ ଠାକୁରାଣୀ ଘର
କବାଟକୁ ଦେଲେ କିଳି । ରକତ ପିଇବ କାଳୀ
(ବଳି ବିଧାନ - କବି ଯମେଶ୍ୱର)

ଏହି ପ୍ରଥା ସପକ୍ଷରେ ଏକ ବଳିଷ୍ଠ ଯୁକ୍ତି ଇଂରେଜ ସାହେବ କକବର୍ଣ୍ଣ (୧୭୮୫-୯୦) ବ୍ରିଟିଶ କମିଶନର ରୂପେ ଓଡ଼ିଶାରେ କଟକ ଠାରେ ଅବସ୍ଥାପିତ ଥିବା ସମୟରେ ଚର୍ଚ୍ଚିକାଙ୍କ ବଳି ଦୃଶ୍ୟ ନିଜ ସ୍ୱଚକ୍ଷୁରେ ଦେଖି ତାଙ୍କ ଡାଏରୀରେ ନିମ୍ନମତେ ବର୍ଣ୍ଣନା କରିଛନ୍ତି ।

"I had seen a heart-breaking incident in the place of 'Charchika' the local deity of "Bunkey" region, the districts of 'Katak' and the capital of Uddissa, a royal-butcher at a glance beheaded a large numbers of innocent animals and I felt how cruel, bloody and brutal he was ! O God ! Truely I feared

*(P.V.D Page - 129, Date - 17.10.1786*

ଆଜିକାଲିର ଲୋକାରଣ୍ୟ ମଧ୍ୟରେ ସର୍ବ ସମ୍ମୁଖରେ ଜୀବ ବଳି, ପୂର୍ବରୁ ପ୍ରାୟତଃ ଦିଆ ଯାଉନଥିଲା । ଯାହାକି ନିଶାର୍ଦ୍ଧ ସମୟରେ ହିଁ ଅନୁଷ୍ଠିତ ହେଉଥିଲା ବୋଲି କେତେକ ସରକାରୀ କାଗଜ ପତ୍ରରୁ ସୂଚୀତ ହୁଏ ! ଭାରତରେ ଅବସ୍ଥାପିତ ବଡ଼ଲାଟ୍ ଇଂରେଜ ସାହେବ ଲର୍ଡ଼ ଉଇଲିୟମ ବେଣ୍ଟିକ (୧୮୨୮-୧୮୩୫) ଯେତେବେଳେ ସମଗ୍ର ଭାରତ ବର୍ଷରେ ୪ ଡିସେମ୍ବର ୧୮୨୯ ମସିହାରେ ବେଙ୍ଗଲ ପ୍ରେସିଡ଼େନସି ଆଇନ୍ ୧୭ତମ ଧାରାରେ ବଳି ପ୍ରଥା ଏବଂ ସତୀଦାହ ପ୍ରଥାକୁ ରାଜା ରାମମୋହନ ରାୟଙ୍କ ସହାୟତାରେ ବନ୍ଦ କରିଦେଲେ ସେତେବେଳେ କେତେକ ନ୍ୟସ୍ତସ୍ୱାର୍ଥନ୍ୱେଷୀ ବ୍ରାହ୍ମଣ ପୂଜକ ଏବଂ ବିଧର୍ମୀ ଲୋକଙ୍କ ଦ୍ୱାରା ଲୁକ୍‌କାୟିତ ଭାବେ ଜୀବ ବଳି ତଥା ନରବଳି ପ୍ରଥା ସ୍ଥାନେ ସ୍ଥାନେ ପ୍ରଚଳିତ ହେଲା । ବାଙ୍କୀ ରାଜା ପୀତାମ୍ବର ଶ୍ରୀଚନ୍ଦନଙ୍କର ରାଜୁତି ସମୟରେ ଚର୍ଚ୍ଚିକାଙ୍କ ନୃଶଂସ ବଳି ପ୍ରଥାଦେଖି ଜନୈକ କେଉଟୁଣୀ ସାମାନ୍ୟ ଝଗଡ଼ାରେ ତା'ର ସ୍ୱାମୀକୁ ଶୋଇଥିବା ଅବସ୍ଥାରେ ବଡ଼ କଟୁରୀରେ ୨ ଗଡ଼ କରିଦେଲା । ରାଜାଙ୍କ ନିକଟରେ ତାହାର ବିଚାର ହେଲାରୁ କେଉଟୁଣୀ କହିଲା ।'' ମାଡ଼ଖାଇ ମୁଁ ଶୋଇଥିଲି, ରାତି ଅଧରେ ଠାକୁରାଣୀଙ୍କ ପୂଜାରୀ ବଳି ଦେବାଦୃଶ୍ୟ ଆଖିରେ ନାଚିଲା ତେଣୁ ମୁଁ ମୋ'ସ୍ୱାମୀକୁ ସେଇ ଡ଼ାଆଁରେ ଦୁଇ ଗଡ଼ କରିଦେଲି । ସେଇ ଦିନଠାରୁ ରାଜା ପଶୁ ବଳିକୁ କଡ଼ା କଡ଼ି କରିଦେଲେ । ନିୟମାନୁସାରେ ରାତ୍ରର ନିଶାର୍ଦ୍ଧରେ ପଶୁ ବଳି ପଡ଼ିବ । ବଳି ସ୍ଥଳରେ କେବଳ ୫ ଜଣ ବ୍ୟକ୍ତି ଏବଂ ୭ ଜଣ ବାହୁକ (ସାହାର୍ଯ୍ୟକାରୀ) ରହିବେ ସେମାନେ ହେଲେ ଯଥାକ୍ରମେ (୧) ରାଜ ପୁରୋହିତ (୨) ଘାତକ

(୩) ବାଦକ (୪) ଚଣ୍ଡ (ଯୁପକାଷ୍ଠ ରେ ମଣିଷ ବାନ୍ଧିବା ଲୋକ) ଏବଂ ମଶାଲ୍‌ଧାରୀ । ଅନ୍ୟ ସାତଜଣ ବଳି ପଡ଼ିସାରିଲା ପରେ ଗଣ୍ଡି ମୁଣ୍ଡ ଏକାଠି କରି ପରେ ମାଂସ ବାଣ୍ଟି ନେବେ ବା ପ୍ରସାଦ ରୂପେ ବଣ୍ଟନ କରିବେ ।

(ବଳିନିୟମ ପୃଷ୍ଠା - ୮ – ଲେଖକ - ବୈଷ୍ଣବ ରଣା)

ଏତଦ୍‌ଭିନ୍ନ କବି ଯଯେଶ୍ୱରଙ୍କର "ଚର୍ଚ୍ଚିକାୟୀ ବଳିବିଧାନ" ପୃଷ୍ଠା ୯ରେ ବର୍ଣ୍ଣିତ ଅଛିଯେ ମା'ଚର୍ଚ୍ଚିକାଙ୍କ ବଳି ନିମନ୍ତେ ଉଦ୍ଦିଷ୍ଟ ଯୁପକଷ୍ଟରେ ନାମ - ଚାମୁଣ୍ଡାଛାଟ ଖୁମ୍ବ

ଘାତକ ନାମ - ରକ୍ତବାହୁ / ବଜ୍ରବାହୁ / ରକ୍ତନେତ୍ର

କୁଠାର (କଟୁରୀ) ନାମ - କାଳନେମୀ

ଦଉଡ଼ି (ଫାଶ) ନାମ - ତକ୍ଷକ / ଦଣ୍ଡଫାଶ/କାଳଫାଶ

ଫୁଲମାଳର ନାମ - ଯୋଗ୍ନୀ ଅକ୍ଷମାଳା

ମଶାଲର ନାମ - ଜ୍ୱାଳାମୁଖୀ

ପଶୁବଳୀ ଖାଦିକା ଦେବୀଙ୍କ ନାମ - କାଳୀ, କାମାକ୍ଷୀ, ଯୋଗିନୀ, ରକ୍ତମୁଖୀ, ବଗଳା, ଛିନ୍ନମସ୍ତା, ଧୂମାବତୀ, ତ୍ରିପୁରା, କାପାଳୀ, ବାରାହୀ ଏବଂ ରକ୍ତବୀର୍ଯ୍ୟା ।

ମା'ଚର୍ଚ୍ଚିକାଙ୍କ ପୂଜା ଏବଂ ବଳି ପରମ୍ପରା ସମ୍ବନ୍ଧରେ କିଛି ଆଲୋକପାତ କରାଯାଉଛି । ମା'ଙ୍କ ନିକଟରେ ପ୍ରତି ବର୍ଷ ଆଶ୍ୱିନ ମାସରେ ୧୬ଦିନ ବ୍ୟାପି (ମୂଳାଷ୍ଟମୀଠାରୁ ମହାନବମୀ ପର୍ଯ୍ୟନ୍ତ) ଷୋଳପୂଜା ଅନୁଷ୍ଠିତ ହୁଏ । ଏହା ମଧ୍ୟରେ ମହାଷ୍ଟମୀ ପୂଜା ଅତ୍ୟନ୍ତ ରୋମାଞ୍ଚକର ଏବଂ ହୃଦୟ ବିଦାରକ ପର୍ବ ! ମହାଷ୍ଟମୀ ପର୍ବକୁ ମଧ୍ୟ କାହାରି ମତରେ "ବଳିପର୍ବ" କୁହାଯାଏ । ମୂଳାଷ୍ଟମୀଠାରୁ କେତେଜଣ ମାଳି (ପୂଜକ ସମ୍ପ୍ରଦାୟ) ଠାକୁରାଣୀଙ୍କର ବଳିଯୋଗ୍ୟ ମହିଷ ବା ପଣ୍ଡା ୨ରୁ ସାଢ଼େ ୩ ଫୁଟ ଉଚ୍ଚତାର କଳା ବା ଧୂସର ବର୍ଣ୍ଣ ପଶୁଟିର ଅନୁସନ୍ଧାନରେ ବାହାରନ୍ତି । ପୂଜକ ନିର୍ଦ୍ଦେଶ ମତେ କ୍ରୟ ପ୍ରଥାକୁ ତଥା ବଳି ଉଦ୍ଦିଷ୍ଟ କଥାଟିକୁ ଗୋପନ ରଖାଯାଇ ମହିଷ ଅଣାଗଲା ପରେ ବାଦ୍ୟ ବଜାଇ ଘଣ୍ଟଘଣ୍ଟା ମଧ୍ୟରେ ଶୁଭ ମନାସି ମହିଷକୁ ବନ୍ଧାଯାଏ । ପ୍ରତ୍ୟେହ ଠାକୁରାଣୀ ପୂଜା ପରେ ତା'କୁ ମଧ୍ୟ ମନ୍ତ୍ରମତେ ପୂଜାର୍ଚ୍ଚନା କରାଯାଏ ଏବଂ ପେଟଭରି ଘାସ, ପାଳ, ନଡ଼ା ଇତ୍ୟାଦି ଦିଆଯାଏ । ନିଖୁଣ ଏବଂ ଅକ୍ଷତ ଥିବା ଏହି ମହିଷ ନିଧନ ପାଇଁ ଠାକୁରାଣୀଙ୍କ ଆସ୍ଥାନ ସମ୍ମୁଖରେ ପ୍ରାୟ ୧୦୦ ମିଟର ଦୂରରେ ୧୫ ଫୁଟ ଓସାର ଏବଂ ୨୦ ଫୁଟ ଚଉଡାଛିତ ଏକ ପ୍ରାନ୍ତର (ବଳିପ୍ରାଙ୍ଗଣ) ମଧ୍ୟଭାଗରେ ଛାଟଖୁମ୍ବ (ବଳି ପାଇଁ ଉଦ୍ଦିଷ୍ଟ ଖୁଣ୍ଟ) ପୂଜାର୍ଚ୍ଚନା କରି ପୋତାଯାଏ । ମହାଷ୍ଟମୀ ରାତ୍ରରେ ପୋଥି, ଶାସ୍ତ୍ରାନୁବିଧିରେ ବଳିପାଇଁ ନିର୍ଦ୍ଦିଷ୍ଟ ସମୟ ସୂଚିତ ଥାଏ ! ଦିନବେଳୁ ବଳିର ସ୍ନାନ ଏବଂ ମାଜଣା ସରେ ଏବଂ ସାୟଂକାଳରେ ମଧ୍ୟ ପୁନଃ ମହିଷକୁ ସ୍ନାନ କରାଯାଏ । ବଳିପାଇଁ ଉଦ୍ଦିଷ୍ଟ କଟୁରୀ ଯାହାକି ରାଜଗୁରୁଙ୍କ ତତ୍ତ୍ୱାବଧାନରେ ଥାଏ, ତାହାକୁ ମହାଷ୍ଟମୀ ପୂର୍ବରୁ ଗୁପ୍ତଭାବେ କମାର ଦ୍ୱାରା ନିଆଁ ଭାତିରେ ଶାଣିତ କରା ଯାଇଥାଏ ଏବଂ ଉକ୍ତ କୁଠାରକୁ ଆଣି ଠାକୁରାଣୀଙ୍କ ନିକଟରେ ପୂଜାର୍ଚ୍ଚନା କରାଯାଏ । ବଳି ପ୍ରାଙ୍ଗଣ ଘଣ୍ଟଘଣ୍ଟା, ବାଦ୍ୟ, କାହାଳି, ହରିବୋଲ ଏବଂ ହୁଳହୁଳିରେ ପ୍ରକମ୍ପିତ ହୁଏ । ଘାତକ ଠାକୁରାଣୀଙ୍କ ନିକଟରେ ସାଷ୍ଟାଙ୍ଗ ପ୍ରଣାମ (ଅଧିଆ) କରେ । ପୁରୋହିତଙ୍କର ମନ୍ତ୍ରନ୍ୟାସ ପରେ ଘାତକ ବେକରେ ଠାକୁରାଣୀଙ୍କର ଆଜ୍ଞାମାଳା ପିନ୍ଧାଇ ଦିଆଯାଇ ତା'ର ମଥାରେ ସିନ୍ଦୂର ତିଳକ ପିନ୍ଧେଇ ଦିଆଯାଏ । ବଳି ଆଲୋକ ବର୍ତ୍ତିକା ପ୍ରଜ୍ୱଳନ କରାଯାଇ ଘାତକକୁ ଯୂପକାଷ୍ଠ ନିକଟକୁ ନଚେଇ ନଚେଇ ଅଣାଯାଏ । ୨ରୁ ୩ ଫୁଟ ଲମ୍ବର ଶାଣିତ କୁଠାର ଘାତକ ହାତରେ ଚକ୍‌ଚକ୍ କରିଉଠେ । ମହିଷକୁ ଛାଟଖୁଣ୍ଟ ନିକଟରେ ବନ୍ଧାପନା କରାଯାଏ । ଏଥିପୂର୍ବରୁ ଠାକୁରାଣୀଙ୍କର ମାଜଣା ପରେ ପୁନର୍ବାର ନେତ ବନ୍ଧା ଉତ୍ସବ ହୁଏ ଏବଂ ରାତ୍ରିଧୂପ ପୂଜା ଅଧା କରାଯାଇ ଉପର ମଣ୍ଡପରେ ଶାସ୍ତ୍ରାନୁଯାୟୀ ଯଜ୍ଞ କରାଯାଇଥାଏ । ପ୍ରଥମ ପୂର୍ଣ୍ଣାହୁତି ପରେ ବାଙ୍କୀ ରାଜାଙ୍କ ପ୍ରଦତ୍ତ (ଖଞ୍ଜା) ୨ ଟି, ବୋଦା (Ram) ବଳି ଦିଆଯାଏ । ତା'ପରେ ମହିଷ ବଳି ପଡ଼ିବା ପାଇଁ ଆଜ୍ଞା ଆସେ । ମହିଷିର ବେକ ଏବଂ ଶିଙ୍ଘ ମିଶାଇ ତଥା ଚାରି ଗୋଡ଼କୁ ଦଉଡ଼ିରେ ଛନ୍ଦି କେତେଜଣ ବଳିଷ୍ଠ ବ୍ୟକ୍ତି ଛାଟଖୁଣ୍ଟରେ ନେଇ ବାନ୍ଧନ୍ତି । ଅପର ପଟୁ ଆଉ କେତେଜଣ ମହିଷର ବେକରେ ବାନ୍ଧିଥିବା ଦଉଡ଼ିକୁ ଭିଡ଼ି ଧରନ୍ତି, ବାଦ୍ୟ, ଘଣ୍ଟା, କାହାଳୀ, ହରିବୋଲ,

ହୁଳହୁଳିରେ ବନ୍ଦିସ୍ଥାନ ପ୍ରକମ୍ପିତ ହୋଇଉଠେ । ଘାତକ ଶାଣିତ କୁଠାର ଧରି ବେଗରେ ୨/୩ ଚୋଟ କୁଠାର ଘାତକରେ । କିଛି ସମୟପରେ ମହିଷର ରୁଦ୍ଧ କଣ୍ଠର ବିଳାପ ସହିତ ଗଣ୍ଡିରୁ ମୁଣ୍ଡ ଅଲଗା ହୋଇଯାଏ ଏବଂ ରକ୍ତର ସ୍ରୋତ ବହି ନିର୍ଦ୍ଦିଷ୍ଟ ସ୍ଥାନଟି ରୁଧିରାକ୍ତ ହୋଇଯାଏ । ଘାତକ ରକ୍ତପାନ କଲାପରି ସ୍ୱଚ୍ଛ ପ୍ରତୀୟମାନ ହୁଏ ଏବଂ ନୂତନ ସରାରେ ଠାକୁରାଣୀଙ୍କ ନିକଟକୁ ରକ୍ତ ଯାଏ ।

ଏହାର ମହାଷ୍ଟମୀ ବ୍ରତ ପାଳନ କରିଥିବା ଭକ୍ତ ଭକ୍ତାମାନେ ଠାକୁରାଣୀଙ୍କ ନିକଟରେ ଭୋଗ ଲଗାଇ ପୂଜାବ୍ରତ ପରିଧାନ କରନ୍ତି । ବାସ୍ତବ ପକ୍ଷେ ବଳିପ୍ରଥା ଯେ କେତେ ନିର୍ମମ ଏବଂ ନିନ୍ଦନୀୟ ତାହା ସଭ୍ୟଶିକ୍ଷିତ ସମାଜ ଜାଣେନା । ନିରୀହ ପଶୁବଳି ଦେଇ ପଶୁତ୍ୱକୁ ଆହରଣ କରିବା ବ୍ୟତୀତ ଏଥିରେ କିଛି ପୂଣ୍ୟାର୍ଜ୍ଜନ ହୁଏନାହିଁ । ଏ ସଂକ୍ରାନ୍ତ ରେ ମତ୍-ପ୍ରଣୀତ ଏକ ବ ହୁଚର୍ଚ୍ଚିତ ଲେଖା ୧୯୯୭ ସେପ୍ଟେମ୍ବର ସଂଖ୍ୟା (ପ୍ରଜାତନ୍ତ୍ର - ପ୍ରତିଭା) ରେ ପ୍ରକାଶିତ ହୋଇଥିଲା । ସେଥିରେ ବଳିସଂକ୍ରାନ୍ତରେ ମୁଁ କେତେକ ଜ୍ଞାତବ୍ୟ ତଥ୍ୟ ବେଦଶାସ୍ତ୍ର ଅଧ୍ୟୟନ କରି ଉପସ୍ଥାପନା କରିଥିଲି । ଆବଶ୍ୟକତା ଦୃଷ୍ଟିରୁ ଅଳ୍ପ କେତୋଟି ପଂକ୍ତି ଉଦ୍ଧାର କରୁଛି –

''ଦେବୀ ଯଜ୍ଞେ ପିତୃଶ୍ରାଦ୍ଧେ ତଥା ମାଙ୍ଗଲ୍ୟ କର୍ମାଣି<br>ତସୈବ ନରକେ ବାସୋଯଃ କୁର୍ଯ୍ୟାଦ୍ ଜୀବେଘାତନମ୍ ।''

ଅର୍ଥାତ୍ ଦେବୀ ଯଜ୍ଞରେ ପିତୃଶ୍ରାଦ୍ଧରେ ଏବଂ ଯେକୌଣସି ମାଙ୍ଗଳିକ କାର୍ଯ୍ୟରେ ଯେଉଁ ଲୋକ ଜୀବହତ୍ୟାକରେ ତାହାର ନରକରେ ବାସ ହୁଏ ।''

ଦ୍ୱିତୀୟତଃ

*ଯୂପମ୍ କୃତ୍ୱା ପଶୂନହତ୍ୱା କୃତ୍ୱା ରୁଧିର କର୍ଦ୍ଦମଂ<br>ଯଦ୍ଦେବଂ ଗମ୍ୟତେ ସ୍ୱର୍ଗମ୍ ନରକଂ କେନ ଗମ୍ୟତେ ।''*

ଅର୍ଥାତ୍ ଯୂପକାଷ୍ଠରେ ବାନ୍ଧି ନିରୀହ, ନିରପରାଧ ପଶୁଙ୍କୁ ହତ୍ୟା କରି ପବିତ୍ର ଦେବଭୂମିକୁ ଯଦି କର୍ଦ୍ଦମାକ୍ତ କରି ସ୍ୱର୍ଗସୁଖ ଲାଭ କରି ହୁଏ, ତେବେ କାହାଦ୍ୱାରା ନର୍କ ଗମନ ସହଜ ହୁଏ ?

ତୃତୀୟତଃ ''ଦେବୀ ସୂକ୍ତମ୍‌ରେ ନିଜେ ଦେବୀ ଭଗବାନ ମଙ୍ଗଳମୟ ଶିବଙ୍କୁ ବଳିସମ୍ବନ୍ଧୀୟ ପ୍ରଶ୍ନର ଉତ୍ତରରେ କହିଛନ୍ତି -

''ପ୍ରକୃତିର୍ବାପି ପ୍ରବୃତ୍ତି ନରସ୍ୟ ଯାଃ ପ୍ରକୀର୍ତ୍ତିତା<br>ତଦ୍ଧି ଛାଗୋ ବିଜାନିୟାଦ୍ ବଳି ସ୍ତ ସ୍ୟାଶ୍ଚ ମେ ପ୍ରିୟାଃ<br>(୨/୩ମ.ହ)

ଅର୍ଥାତ୍ ମନୁଷ୍ୟର ଯେଉଁ ପ୍ରକୃତି ଏବଂ ପ୍ରବୃତ୍ତି ରହିଛି ତାହାର ନାମ 'ଛାଗ' । ସେହି ପ୍ରକୃତି ସଂହାର ହିଁ ଛାଗ ବଳି, ଏହି ବଳି ମୋ'ର ପ୍ରିୟ ଅଟେ । (୨/୩ ମ.ହ)

''ଅଜ୍ଞାନାମର୍ଷୌ ନରସ୍ୟ ମେଷରିତ୍ୟ ଭିଧିୟତେ<br>ତସ୍ୟ ମେଷସ୍ୟ ବଳିଂ ମେ ବିଦ୍ୟାନ୍ ବଧା ଚ ସର୍ବଦା<br>-(୮/୯ ମ.ହ)

ଅର୍ଥାତ୍ ଅଜ୍ଞାନ ଏବଂ କ୍ରୋଧ ଇତ୍ୟାଦି ମନୁଷ୍ୟର ଏହି ପ୍ରବୃତ୍ତିର ନାମ ''ଶେଷ'' । ଏହି ବଳିପ୍ରଦାନ କରି ମତେ ସନ୍ତୁଷ୍ଟ କରିବା ଉଚିତ ।

ପଞ୍ଚମତଃ

''ମନୋହିଯନ୍ନ ମନୁଷ୍ୟାଣାଂ ଭବତି ମହିଷାସୁରଃ<br>ମଦର୍ଥଂ ତସ୍ୟ ବଧୋହିଁ, ବଳି ମହିଷ ଉଚ୍ୟତେ ।<br>(୧୪/୧୫ ମ.ହ)

ଅର୍ଥାତ୍ ମନୁଷ୍ୟର ଯେଉଁ ବିକାରଗ୍ରସ୍ତ ଅମାନିଆଁ ମନ ତାହାର ନାମ ''ମହିଷ'' । ସେହି କୁଟିଳ ମନରୂପକ ମହିଷକୁ ମତେ ବଳି ବା ସମର୍ପଣ କରିବା ଉଚିତ । ବାସ୍ତବ ପକ୍ଷେ ଜୀବବଧ ଦେବୀପୀଠରେ ଏକ ନିନ୍ଦନୀୟ ପରମ୍ପରା, ଏହାର ଉଚ୍ଛେଦ ସର୍ବାଗ୍ରେ ବିଧେୟ । ପ୍ରଶ୍ନ ଉଠେ ନିରୀହ ପଶୁମାନଙ୍କୁ ଯୁପକାଷ୍ଠରେ ନେଇ ଉନ୍ମତ୍ତ ମନୁଷ୍ୟ ବଧକରେ କାରଣ ସେମାନେ ଦୁର୍ବଳ; କିନ୍ତୁ ସିଂହ ବ୍ୟାଘ୍ର ଗଣ୍ଡାରକୁ ମଣିଷ କ'ଣ ବରଂ ସେହିସବୁ ହିଂସ୍ର ଜାନୁଆର୍‌ମାନଙ୍କ ନିକଟରେ ମଣିଷ ହିଁ ବେଳେ ବେଳେ ବଳି ପଡ଼ିଥାଏ । ଅମୃତ ପୁତ୍ର ମଣିଷ ତେଣୁ ସର୍ବତ୍ର ନୃଶଂସ ବଳିପ୍ରଥାର ବିରୋଧ କରିବା ଉଚିତ । ଏ ଦିଗରେ ମା'ଚର୍ଚ୍ଚିକା ସମସ୍ତଙ୍କର ସହାୟ ହୁଅନ୍ତୁ, ସମସ୍ତଙ୍କୁ ସାହସ ଏବଂ ସଦ୍‌ବୁଦ୍ଧି ପ୍ରଦାନ କରନ୍ତୁ ।

। ଜୟ ମା' ଚର୍ଚ୍ଚିକେ ।



# ବାଙ୍କୀର ସାଂସ୍କୃତିକ ପରମ୍ପରା

*ଏଲିନା ସାମଲ*
+୩ ବିଜ୍ଞାନ ପ୍ରଥମ ବର୍ଷ (ଗଣିତ ସମ୍ମାନ)

ଆର୍ଯ୍ୟସଂସ୍କୃତିର ପୃଷ୍ଠଭୂମି ଏଇ ଆମ ଭାରତବର୍ଷ । ଭାରତ ବର୍ଷର ପ୍ରତି କୋଣ ଅନୁକୋଣରେ ବିବିଧ ସଂସ୍କୃତିର ଚିତ୍ର ପରିଲକ୍ଷିତ ହୁଏ । ଏଇ ଆର୍ଯ୍ୟଭୂମି ଭାରତର ଧାର୍ମିକ ଆଦର୍ଶରେ ବିମୁଗ୍ଧ ହୋଇ ବୋଧହୁଏ ଭଗବାନ ବିଷ୍ଣୁ ଅନେକବାର ମାନବ ଦେହ ଧରି ଏହି ପବିତ୍ରଭୂମିରେ ଜନ୍ମଗ୍ରହଣ କରିଥାନ୍ତି । ସେଥିପାଇଁ ଏ ମାଟି ଯୁଗେଯୁଗେ ପବିତ୍ର । ଏଇ ପବିତ୍ର ଭୂମିର କିୟଦ୍‌ଅଂଶ ଆମର ଏଇ ଓଡ଼ିଶା । ଯାହାର କୀର୍ତ୍ତିଗାଥା, ଅତୀତର ଇତିହାସ ପୃଷ୍ଠାର କଳିଙ୍ଗ, ଉଡ୍ର, ଉତ୍କଳର ନାମଧରି ଅନେକ କୀର୍ତ୍ତିସ୍ତମ୍ଭ ସ୍ଥାପନ କରିଅଛି । ଉତ୍କୃଷ୍ଟ କଳାର ରାଜ୍ୟ ଏଇ ଉତ୍କଳ । ଉତ୍କଳୀୟ ସଂସ୍କୃତିର ଓ ସାହିତ୍ୟ; ପରମ୍ପରାର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ରହିଛି ଯାହା ଅନ୍ୟମାନଙ୍କଠାରୁ ଏହାକୁ ପୃଥକ୍ କରି ଚିହ୍ନିତ କରାଇଥାଏ । ଏଇ ଉତ୍କଳ ବା ଅଧୁନା ଓଡ଼ିଶାର ଏକ ଛୋଟ ଇଲାକା ବାଙ୍କୀ ଆୟତନରେ ଛୋଟ ହେଲେବି ଅନ୍ୟ କୌଣସି ଗୁଣରେ ଓଡ଼ିଶାର ଅନ୍ୟ ଅଞ୍ଚଳରେ ନ୍ୟୂନ ନୁହେଁ । ଏହାର ଯୁଗାବ୍ଦି ଉଦାହରଣ ରହିଆସିଛି, ବୀରାରାଣୀ ଶୁକଦେଇଙ୍କ ଠାରୁ ଆଧୁନିକ ଯୁଗର କବି ଚନ୍ଦ୍ରଙ୍କ ପର୍ଯ୍ୟନ୍ତ ।

ଏଇ ବାଙ୍କୀ ମାଟିର ସଂସ୍କୃତି ଅତ୍ୟନ୍ତ ମହାନ୍ । ଏହି ସଂସ୍କୃତିର ମହନୀୟତା ଅନ୍ୟାନ୍ୟ ଆର୍ଯ୍ୟୋତ୍ତରମାନଙ୍କଠାରୁ କୌଣସି ଗୁଣରେ ନିକୃଷ୍ଟ ନୁହେଁ । ଏହି ସାଂସ୍କୃତିକ ପଟ୍ଟଭୂମିର ବାଙ୍କୀ ସମଗ୍ର ଉତ୍କଳ ଭୂ-ଖଣ୍ଡରେ ଏକ ସ୍ୱତନ୍ତ୍ର ଆସନ ଦାବିକରେ । ବାଙ୍କୀର ସୌନ୍ଦର୍ଯ୍ୟକୁ ବହୁଗୁଣରେ ଶ୍ରୀମଣ୍ଡିତ କରିଥିବା ଏହାର କାରୁକାର୍ଯ୍ୟମୟ ମନ୍ଦିର ମାଳିନୀ, ସବୁଜଘଞ୍ଚ ବନାନୀ, କଳାପ୍ରାଣ ବ୍ୟକ୍ତିତ୍ୱ, ମନମୁଗ୍ଧକାରୀ ଲୋକନୃତ୍ୟ ଲୋକମୁଖରେ ବହୁଧା ସମ୍ମାନୀତ ।

ବାଙ୍କୀରେ ସର୍ବଧର୍ମର ସମନ୍ୱୟ ହୋଇଛି । ଶୈବ, ଶାକ୍ତ, ବୈଷ୍ଣବ ବ୍ୟତୀତ ବୌଦ୍ଧ, ଚୈତନ୍ୟ ଓ ମହିମା ଧର୍ମର ପ୍ରଚାର ଓ ପ୍ରସାର ମଧ ଘଟିଅଛି । ଏହାର ଫଳ ସ୍ୱରୂପ ବିଭିନ୍ନ ସ୍ଥାନରେ ବିଭିନ୍ନ ମନ୍ଦିର ଓ ଉପାସନାସ୍ଥଳୀମାନ ଗଢ଼ିଉଠିଛି । ବାଙ୍କୀରେ ଶୈବ ସଂସ୍କୃତିର ଚିହ୍ନ ସ୍ୱରୂପ ଅନେକ ପ୍ରାଚୀନ ଶିବ ମନ୍ଦିର ପରିଲକ୍ଷିତ ହୁଏ । ଏହି ମନ୍ଦିରଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ନାମରେ ସ୍ଥାପିତ ହୋଇଅଛି । ତନ୍ମଧ୍ୟରୁ ଅନେକ ମନ୍ଦିର ରାଜବଂଶ ଦ୍ୱାରା ପ୍ରତିଷ୍ଠିତ । ଏହିମନ୍ଦିରଗୁଡ଼ିକ ମଧ୍ୟରୁ-କପିଳେଶ୍ୱର ମହାଦେବ-ତାଳବସ୍ତ, ମହେଶ୍ୱର ମହାଦେବ ମନ୍ଦିର - ନରଣପୁର, ବାଲୁଙ୍କେଶ୍ୱର ମହାଦେବ ମନ୍ଦିର - ପଥୁରୀପଡ଼ା, କିଆପଲ୍ଲୀ, ଦୁଲଣାପୁର , ଚାରିଘରିଆ, ଖମାରଙ୍ଗ, କୁରୁମପଡ଼ା ଆଦି ଗ୍ରାମମାନଙ୍କରେ ଅବସ୍ଥିତ । ଏତଦ୍ ବ୍ୟତୀତ ପର୍ବତେଶ୍ୱର ମହାଦେବ-ବିଲିପଡ଼ା, ସିଦ୍ଧେଶ୍ୱର ମହାଦେବ- ସାମନ୍ତରାପୁର, ଲୋକନାଥ ମହାଦେବ ମନ୍ଦିର - ପାଥପୁର, ନୀଳ କଣ୍ଠେଶ୍ୱର ମହାଦେବ ମନ୍ଦିର - କୁଶୁପଙ୍ଗୀ । ଜଳେଶ୍ୱର ମହାଦେବ - ରଣପୁର, ସୁବୁଦ୍ଧେଶ୍ୱର, ମହାଦେବ - ବାଆଁରା, ସ୍ୱପ୍ନେଶ୍ୱର ମହାଦେବ - ତାରପୁର, ସିଂହନାଥ ମହାଦେବ - ସିଂହନାଥପୁର, ଅଷ୍ଟଶମ୍ଭୁ - ଘୋଳପୁର, ରାମେଶ୍ୱରଦେବ, ମନ୍ଦିର - ରାମେଶ୍ୱର, ବୈଦ୍ୟନାଥ ଦେବ - ବୈଦେଶ୍ୱର, ଉଗ୍ରେସର ମହାଦେବ ମନ୍ଦିର- ମୁକୁନ୍ଦପୁର ଆଦି ପ୍ରଧାନ ଶିବମନ୍ଦିର । ରାଜା

ମହାରାଜାମାନଙ୍କ ଦ୍ୱାରା ପ୍ରତିଷ୍ଠିତ ମନ୍ଦିରରୁ ଏହା ପ୍ରମାଣିତ ହୁଏ ଯେ, ବାଙ୍କୀର ଶୈବ ଧର୍ମପ୍ରତି ଅନୁରାଗ ପ୍ରାୟତଃ ପାଞ୍ଚଶହ ବର୍ଷ ପୂର୍ବରୁ ହୋଇ ଆସିଛି । ସବୁଠାରୁ ଉଲ୍ଲେଖନୀୟ ବିଷୟ ଏହି ଯେ, ବାଙ୍କୀର ମହାନଦୀର କୂଳ ଓ ନଦୀଶଯ୍ୟା ତଥା ବାଲୁକାରାଶି ଶୈବ ତ୍ରିଭୂଜାକାର କ୍ଷେତ୍ର ସୃଷ୍ଟି କରିଛନ୍ତି । ଏହି ମନ୍ଦିରଗୁଡ଼ିକ ହେଲା - ସିଂହନାଥ, ବୈଦ୍ୟନାଥ ଓ ରାମନାଥ ମନ୍ଦିର । ବୈଦ୍ୟେଶ୍ୱରର ଅନତି ଦୂରରେ ଏହି ମନ୍ଦିରତ୍ରୟ ଅବସ୍ଥିତ । କେଶରୀ ବଂଶୀୟରାଜା ଉଦ୍ୟତ କେଶରୀଙ୍କ ସମୟରୁ ଏହା ପ୍ରତିଷ୍ଠିତ । ମହାନଦୀ ଗର୍ଭରେ ଥିବା ପାହାଡ଼ ଉପରେ ସିଂହନାଥ ମନ୍ଦିର ଦର୍ଶକ ପ୍ରାଣରେ କୌତୁହଳ ଓ ଆନନ୍ଦ ସୃଷ୍ଟିକରେ । ଏହିଭଳି ଆଉ ଏକ ମନ୍ଦିର ପାଥପୁର ନିକଟସ୍ଥ ମହାନଦୀ ଗର୍ଭରେ । ଅମଙ୍ଗେଇକୁଦରେ ଦୃଶ୍ୟମାନ ହୁଏ । ଶୈବ ସଂସ୍କୃତିର ଚିହ୍ନସ୍ୱରୂପ ବାଙ୍କୀରେ ମହାଶିବ ରାତ୍ରୀ, ଶୀତଳଷଷ୍ଠୀ, ବଡ଼ଓଷା, ଚତୁର୍ଦ୍ଦଶୀ ଓ ସଂକ୍ରାନ୍ତିମାନଙ୍କରେ ଶିବ ଉପାସନା ସହ ବ୍ରତ ଓଷାଦି ପାଳନ କରାଯାଏ । ଏହି ପର୍ବଗୁଡ଼ିକ ଏଯାବଦ୍ ଧର୍ମୀୟ ଚେତନାର ଚିହ୍ନସ୍ୱରୂପ ଜନମାସକୁ ଉଜ୍ଜୀବିତ କରି ଆସିଛି ।

ଶୈବ ସଂସ୍କୃତି ବାଙ୍କୀରେ ଶାକ୍ତଧର୍ମର ଅଭ୍ୟୁଦୟ ପୌରାଣିକ ଯୁଗରୁ ହୋଇ ଆସିଛି ବୋଲି କିମ୍ବଦନ୍ତୀ କହେ । ବାଙ୍କୀର ଆରାଧ୍ୟ ଦେବୀ 'ମା' ଚର୍ଚ୍ଚିକା'ଙ୍କ ପୀଠକୁ ପର୍ଶୁରାମ ପୀଠ କହିବାର ଏହାହିଁ ପ୍ରମାଣ । ଯମଦଗ୍ନି ପୁତ୍ର ପର୍ଶୁରାମ ପିତୃଆଜ୍ଞାରେ ମାତା ରେଣୁକାଙ୍କର ଶିରଚ୍ଛେଦ ପରେ ଏହି ପାପର ପ୍ରକ୍ଷାଳନ ପାଇଁ ଏହି ପୀଠରେ ତପସ୍ୟା କରିଥିବାର ଲୋକଶ୍ରୁତି କହେ । ତେଣୁ ଚର୍ଚ୍ଚିକାଙ୍କ ଉତ୍ପତ୍ତି ସମୟରୁ ହିଁ ବାଙ୍କୀରେ ଶକ୍ତି ଉପାସନା ଚଳିଆସୁଛି । ବୈଦିକଯୁଗରେ ହିଁ ଶାକ୍ତଧର୍ମ ବାଙ୍କୀରେ ପ୍ରତିଷ୍ଠିତ, ଏହା ହିଁ ପ୍ରମାଣ୍ୟ, ବାଙ୍କୀ ରାଜାଙ୍କ ଆରାଧ୍ୟା ଦେବୀ ମା'ଚର୍ଚ୍ଚିକା ଉତ୍କଳର ସର୍ବମାନ୍ୟ ପ୍ରାପ୍ତ ସପ୍ତଚଣ୍ଡିକା ଙ୍କ ମଧ୍ୟରେ ଅନ୍ୟତମ । ତନ୍ତ୍ର ସାଧନରେ ''ବଳି'' ଏକ ମୁଖ୍ୟ ଅଂଗ । ଏହି ବଳିପ୍ରଥା ଚର୍ଚ୍ଚିକାଙ୍କ ପୀଠରେ ଅତୀତରୁ ଏଯାବତ ରହି ଆସିଅଛି । ମା'ଚର୍ଚ୍ଚିକାଙ୍କ ମନ୍ଦିର ବାଙ୍କୀର ମୁଖ୍ୟ ଶକ୍ତିପୀଠ । ଏହି ମନ୍ଦିରଟି ରଚିକ ପର୍ବତର ଶିଖର ଦେଶରେ ଅବସ୍ଥିତି । ପାର୍ଶ୍ୱରେ କୁଳୁକୁଳୁ ନିନାଦିନୀ ମହାନଦୀ ପ୍ରବାହିତ ଏବଂ ମନ୍ଦିର ପାର୍ଶ୍ୱରେ ପୁରାଣ ବର୍ଣ୍ଣିତ ରେଣୁକା ନଦୀ ପ୍ରବାହମାନ । ଏହି ମନ୍ଦିରରେ କାଷ୍ଠ ନିର୍ମିତ ସୂକ୍ଷ୍ମ କାରୁକାର୍ଯ୍ୟ ଓ ମୁଖ୍ୟତଃ ମୁଖଶାଳାର କାଷ୍ଠ ଖୋଦିତ ଚିତ୍ରପଟ୍ଟ ସମଗ୍ର ଉତ୍କଳରେ ବିରଳ ।

ଚର୍ଚ୍ଚିକା ମନ୍ଦିର ବ୍ୟତୀତ ବାଙ୍କୀରେ ଅନ୍ୟାନ୍ୟ ଦେବୀ ମନ୍ଦିର ମଧ୍ୟ ପରିଲକ୍ଷିତ ହୁଏ । ତନ୍ମଧ୍ୟରୁ ଦେବୀଦ୍ୱାରସ୍ଥ ରାମଚଣ୍ଡି, ଘାସିପୁଟସ୍ଥ ଅରାଚଣ୍ଡି, ଓସ୍ତିଆର ଦୁର୍ଗାମନ୍ଦିର୍, ସାମନ୍ତରାପୁରର ଖପରଚଣ୍ଡି ମନ୍ଦିର, ଆଦି କେତେକ ମନ୍ଦିର ପ୍ରଧାନ । ଏହା ବ୍ୟତୀତ ଅନେକ ଛୋଟ ଛୋଟ ମନ୍ଦିର ମଧ୍ୟ ଦେଖାଯାଏ । ଏହି ଦେବୀମନ୍ଦିରମାନଙ୍କରେ ଦେବୀପୂଜା ମୁଖ୍ୟତଃ ଚର୍ଚ୍ଚିକାଙ୍କର ଷୋଡ଼ଶଉପଚାର ଶାରଦୀୟ ଦୁର୍ଗାପୂଜା, ଫାଲ୍‌ଗୁନର ଦୋଳଯାତ୍ରା, ବୈଶାଖର ଝାମୁଯାତ୍ରା ଆଦି ବଡ଼ ବଡ଼ ପର୍ବପର୍ବାଣୀରେ ପୂଜା ପାର୍ବଣମାନ ଅନୁଷ୍ଠିତ ହୋଇ ବାଙ୍କୀ ବାସୀଙ୍କର ଧର୍ମଭାବନାର ପରିଚୟ ଦେବାସହ ସ୍ନେହ ସୌହାର୍ଦ୍ଦ ସୃଷ୍ଟି କରାଯାଏ ।

ଭଗବାନ ବିଷ୍ଣୁଙ୍କର ଭକ୍ତମାନଙ୍କୁ ବୈଷ୍ଣବ କୁହାଯାଏ । ବିଷ୍ଣୁଉପାସନା ସୃଷ୍ଟିର ଆରମ୍ଭରୁ ରହି ଆସିଅଛି । ଜଗନ୍ନାଥ ସ୍ୱୟଂ ବିଷ୍ଣୁ ଅବତାର, ସମଗ୍ର ଉତ୍କଳର ଆରାଧ୍ୟ ଦେବତା ନିଳାଦ୍ରୀବିହାରୀ ପ୍ରଭୁ ଜଗନ୍ନାଥ, ପୁରୁଷୋତ୍ତମ କ୍ଷେତ୍ରରେ ବିଦ୍ୟମାନ । କୃଷ୍ଣ ସ୍ୱୟଂ ଜଗନ୍ନାଥ ବୋଲି କୁହାଯାଏ । ସେଥିପାଇଁ ଜଗନ୍ନାଥଷ୍ଟକମ୍‌ରେ ଆଦ୍ୟରେ କୁହାଯାଇଛି :-

''କଦାଚିତ୍ କାଳନ୍ଦୀ ତଟ ବିପିନ ସଙ୍ଗୀତକ-ରବୋ
ମୁଦାଭୀରୀ ନାରୀ ବଦନ କମଳା ସ୍ୱାଦ-ମଧୁପଃ
ରମାଶମ୍ଭୁ ବ୍ରହ୍ମା ମରପତି ଗଣେଶାର୍ଚ୍ଚିତ ପଦୋ
ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁମେ ।''

ତେଣୁ କୃଷ୍ଣଙ୍କୁ ପୂଜା କରିବା ଆମ ପରମ୍ପରାର ବିଧି । କୃଷ୍ଣଙ୍କ ସହ ରାଧା, ଲକ୍ଷ୍ମୀ, ରୁକ୍ମଣୀ ଆଦିଙ୍କ ପୂଜା ସମୟକ୍ରମେ ପ୍ରଚଳିତ । ବୈଷ୍ଣବମାନଙ୍କର ଆରାଧ୍ୟ ଦେବତା କୃଷ୍ଣ ଓ ଜଗନ୍ନାଥ ଏକ । ଉତ୍କଳକୁ ବଙ୍ଗର ନଦୀୟାନବଦ୍ୱୀପରୁ ଶ୍ରୀଚୈତନ୍ୟ ଦେବଙ୍କ ଆଗମନ ପରେ ଓଡ଼ିଶାରେ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର ଆହୁରି ନିବିଡ଼ତର ହୋଇ ଉଠିଥିଲା । ଏହାର ଫଳସ୍ୱରୁପ ସମଗ୍ର ଓଡ଼ିଶାର ବିଷ୍ଣୁଉପାସକଙ୍କ ସଂଖ୍ୟା ବଢ଼ି ଚାଲିଥିଲା ଓ ନୂତନ ବିଷ୍ଣୁ ମନ୍ଦିରମାନ ଗଢ଼ିଉଠିବା ସଂଗେ ସଂଗେ ପୁରାତନ ମନ୍ଦିରମାନଙ୍କର ପୁନରୁଦ୍ଧାର କରାଯାଇଥିଲା । ବାଙ୍କୀରେ ବିଭିନ୍ନ ପ୍ରାନ୍ତରରେ ରାଧାକୃଷ୍ଣ ଓ ଜଗନ୍ନାଥଙ୍କ ମନ୍ଦିର ମଧ୍ୟରେ କେତେକ ପ୍ରଧାନ ମନ୍ଦିର ହେଲା -

ବାଙ୍କୀ ପଥୁରୀପଡ଼ାର ରାଧାମୋହନ ଦେବ ମନ୍ଦିର । ଡମପଡ଼ାର ମଦନ ମୋହନ ମନ୍ଦିର, ଗିରିଧାରୀ ମନ୍ଦିର, ରାଧାକାନ୍ତ ଦେବ ମନ୍ଦିର, ଓସ୍ତିଆର ରାଧାକାନ୍ତ ଦେବ ମନ୍ଦିର, ପାଣିକୋଇଲିର ନୃସିଂହ ମନ୍ଦିର, ବିଲିପଡ଼ାର ଭାଗବତ ଗୋସାଇଁ ମନ୍ଦିର ଆଦି ପ୍ରଧାନ । ଏତଦ୍ ବ୍ୟତୀତ ତାଳଦଣ୍ଡ, ତୁଳସୀପୁର, ବାଙ୍କୀଗଡ଼ର ଶ୍ରୀଚୈନ୍ୟ ଦେବ ମନ୍ଦିର ମଧ୍ୟ ବୈଷ୍ଣବମାନଙ୍କର ଉପାସନାର ସ୍ଥଳ । ଏହି ମନ୍ଦିରମାନଙ୍କରେ ବିଭିନ୍ନ ଶୈଳୀରେ ଓ ବିଭିନ୍ନ କାରୁକାର୍ଯ୍ୟ ଭଂଗୀରେ ମୂର୍ତ୍ତିମାନ ଶୋଭାପାଉଅଛି । ଡମପଡ଼ାର ଗିରିଧାରୀ ମନ୍ଦିର ଏହାର ଏକ ଉଦାହରଣ । ଏହି ମନ୍ଦିରର ଗିରିଧାରୀ ମୂର୍ତ୍ତିଟି ଏକ ଅଭିନବ ମୂର୍ତ୍ତି । ବୃନ୍ଦାବନର ଶୈଳୀରେ କଳାମଚମଚ ମୁଗୁନି ପଥରେ ପ୍ରଭୁଗିରିଧାରୀ ବାମହସ୍ତର କନିଷ୍ଠ ଅଙ୍ଗୁଠିରେ ଗୋବର୍ଦ୍ଧନ ଧାରଣପୂର୍ବକ ବିଦ୍ୟମାନ । ଏହିଭଳି ମୂର୍ତ୍ତି ସମସ୍ତ ଉତ୍କଳରରେ କ୍ୱଚିତ୍ ଦେଖାଯାଏ । ଏହି ମନ୍ଦିରଟି ଯଦି ଓ ଏବେ ଧ୍ୱଂସାଭିମୁଖୀ ତଥାପି ତା'ର ପାରିପାର୍ଶ୍ୱିକ ଅବସ୍ଥିତି ଥିବାରୁ ଜଣାଯାଏ - ଏହା ଲତା କୁଞ୍ଜ, ଆମ୍ରବନ ବେଷ୍ଟିତ ଏକ କୁଞ୍ଜର ଚିତ୍ରରେ ନିର୍ମିତ ।

ଏହି ବୈଷ୍ଣବ ମନ୍ଦିରମାନଙ୍କରେ ବର୍ଷର ସବୁ ସମୟରେ କିଛି ନା କିଛି ପର୍ବପର୍ବାଣୀ ଲାଗିରହିଥାଏ । ଫଗୁଣରେ ଦୋଳ ବିମାନରେ ଦୋଳ ଗୋବିନ୍ଦ ।

ଆଷାଢ଼ର ଘୋଷଯାତ୍ରା, ଭାଦ୍ରବର ରାକ୍ଷୀ ପୂର୍ଣ୍ଣିମା, ଜନ୍ମାଷ୍ଟମୀ, କାର୍ତ୍ତିକର ପଞ୍ଚୁକ ରାସ, ଆଦି ପ୍ରଧାନ ପର୍ବମାନଙ୍କରେ ମନ୍ଦିରମାନଙ୍କରେ ଭକ୍ତ ସମାଗମ ହୋଇ ଧାର୍ମିକ ଚେତନାର ଅଭିବୃଦ୍ଧି ଘଟିଥାଏ । ଏତଦ୍‌ବ୍ୟତୀତ ମାଘ ମାସରେ ଅନେକ ଗ୍ରାମରେ ଶ୍ରୀଚୈତନ୍ୟଙ୍କ ସଂକୀର୍ତ୍ତନକୁ ନେଇ ଅଷ୍ଟମପ୍ରହରୀ, ଷୋଡ଼ଶପ୍ରହରୀ ଆଦି ନାମଯଜ୍ଞ ଅନୁଷ୍ଠିତ ହୋଇଥାଏ ।

ବାଙ୍କୀରେ ଜଗନ୍ନାଥ ମନ୍ଦିରମାନଙ୍କରେ ମଧ୍ୟ ଅନେକ ପର୍ବ ପାଳନ କରାଯିବାର ଦେଖାଯାଏ । ତନ୍ମଧ୍ୟରୁ ରଥଯାତ୍ରା । ବାହୁଡ଼ା, ଜନ୍ମାଷ୍ଟମୀ, ଚାପ ଆଦି ପ୍ରମୁଖ । ଏହି ମନ୍ଦିରସବୁ ପାରମ୍ପରିକ ପଦ୍ଧତିରେ ପୁରୁଷୋତ୍ତମ କ୍ଷେତ୍ରର ଛାୟାରେ ନିଜ ନିଜର ଶକ୍ତି ମୁତାବକ ପର୍ବପର୍ବାଣି ପାଳନ କରିଥା'ନ୍ତି । ଏହି ମନ୍ଦିରମାନଙ୍କ ମଧ୍ୟରେ ରଗଡ଼ିର ମହିମାମଣି ମନ୍ଦିର ଆନୁମାନିକ ଷୋଡ଼ଶ ଶତାବ୍ଦୀର ବୋଲି କୁହାଯାଉଥିଲା ବେଳେ ସୁବର୍ଣ୍ଣପୁରର ତୃତୀୟ ଦେବ ମନ୍ଦିର ତ୍ରିଦେବ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ସହ ସୁଦର୍ଶନ କେଶରୀ ବଂଶୀୟ ସମ୍ରାଟଙ୍କ ଦ୍ୱାରା ସ୍ଥାପିତ ହୋଇଥିବାର ପ୍ରମାଣ ମିଳେ, ବାଙ୍କୀରେ ଡମପଡ଼ାର ଜଗନ୍ନାଥ ମନ୍ଦିର, ଡମପଡ଼ା ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ, ଚର୍ଚ୍ଚିକା ମନ୍ଦିର ସଂଲଗ୍ନ ଜଗନ୍ନାଥ ମନ୍ଦିର ମଧ୍ୟ ବହୁ ପ୍ରାଚୀନ । ଏତଦ୍‌ବ୍ୟତୀତ ସାଂପ୍ରତିକ ସମୟରେ ବରପୁଟରେ ଧାର୍ମିକ ଜନତାଙ୍କ ଦ୍ୱାରା ନିକଟସ୍ଥ ପାହାଡ଼ଶିଖରରେ ଏକ ଜଗନ୍ନାଥ ମନ୍ଦିର ନିର୍ମାଣ କରାଯାଇଅଛି । ଏହାର ପାରିପାର୍ଶ୍ୱର ଶୋଭା ଅତୀବ ମନୋମଗ୍ଧକର ।

ବାଙ୍କୀରେ ବୌଦ୍ଧଧର୍ମର ଯଦିଓ ପ୍ରଭାବ ପଡ଼ିଛି ତେବେ ଉପାସନାସ୍ଥଳୀ ଦେଖାଯାଏନାହିଁ । ମାତ୍ର

ମହିମାଧର୍ମର ପ୍ରଭାବରେ ମନ୍ଦିରଟିଏ ମାଳବିହାର ପୁରରେ ଥିବାର ଦେଖାଯାଏ । ଏତଦ୍‌ବ୍ୟତୀତ ମୁସଲମାନ ସଂପ୍ରଦାୟର ମସ୍‌ଜିଦ୍‌ମାନ ମୁସଲମାନ ବସ୍ତିମାନଙ୍କରେ ଦେଖାଯାଏ । ଏହି ମସଜିଦ୍‌ମାନ ଆନୁମାନିକ ଦୁଇଶହବର୍ଷ ମଧ୍ୟରେ ତିଆରି ହୋଇଥିବାର ଅନୁମାନ କରାଯାଏ । ମାତ୍ର ଖ୍ରୀଷ୍ଟଧର୍ମାବଲମ୍ବୀଙ୍କ ସଂଖ୍ୟା ନଗଣ୍ୟ ହୋଇଥିବାରୁ ବାଙ୍କୀରେ ପ୍ରାୟ ଗୀର୍ଜା ବା ଉପାସନା ସ୍ଥଳୀର ଅଭାବ ପରିଦୃଷ୍ଟ ହୁଏ ।

**ବାଙ୍କୀର ଲୋକନୃତ୍ୟ :**

ମନୋରଞ୍ଜନର ଏକ ଶକ୍ତିଶାଳୀ ମାଧ୍ୟମ ନୃତ୍ୟ, ନଟରାଜ ଶିବ ନୃତ୍ୟର ଆଦି ସ୍ରଷ୍ଟା ରୂପେ ଭାରତୀୟ ଶାସ୍ତ୍ରରେ ବର୍ଣ୍ଣିତ । ଭରତଙ୍କ ''ନାଟ୍ୟଶାସ୍ତ୍ର'' ଆଦିଶାସ୍ତ୍ର ଭାବେ ନୃତ୍ୟଜଗତର ସ୍ୱୀକୃତ, ନୃତ୍ୟ ମଣିଷର ସହଜାତ ପ୍ରବୃତ୍ତି, ନୃତ୍ୟବିଦ୍‌ମାନଙ୍କ ମତରେ ନୃତ୍ୟକୁ ତିନିଭାଗରେ ବିଭକ୍ତ କରାଯାଏ ।

ଯଥା - (୧) ଶାସ୍ତ୍ରୀୟନୃତ୍ୟ

(୨) ଲୋକନୃତ୍ୟ

(୩) ଆଦିବାସୀନୃତ୍ୟ

ଶାସ୍ତ୍ରୀୟ ନୃତ୍ୟ ଏକ ନିର୍ଦ୍ଦିଷ୍ଟ ନୀତିନିୟମରେ ବନ୍ଧା ହେଲାବେଳେ ଲୋକନୃତ୍ୟ ଓ ଆଦିବାସୀନୃତ୍ୟ ଏଥିରୁ ଟିକେ ଭିନ୍ନ । ଏହାର ଯଦିଓ ସେମିତି ଧରାବନ୍ଧା ନିୟମ ନାହିଁ ତଥାପି ସ୍ଥାନ କାଳ ବିଶେଷରେ ଭିନ୍ନ ହୋଇଥାଏ । ଭାରତୀୟ ନୃତ୍ୟ ପରମ୍ପରାରେ ବହୁ ଦେବତାଙ୍କ ସଂପୃକ୍ତି ହୋଇଥାଏ । ଏଣୁ ଏହାକୁ ଆଧ୍ୟାତ୍ମିକ ଚେତନାର ଅଂଶ ବୋଲି ଧରାଯାଏ । ଏଥିପାଇଁ ଏହାର ପବିତ୍ରତାକୁ ସମ୍ମାନ ଦିଆଯାଇଥାଏ । ସାମାଜିକ କ୍ଷେତ୍ରରେ ଐକ୍ୟ ସୃଷ୍ଟି କରିବାରେ ଏହି ଲୋକନୃତ୍ୟ ଏକ ବିଶେଷ ଭୂମିକା ଗ୍ରହଣ କରିଥାଏ । ଓଡ଼ିଶା ଏକ ପ୍ରାଚୀନ ରାଜ୍ୟ ଏବଂ ଉତ୍କୃଷ୍ଟ କଳାର ଦେଶ ବୋଲି ଏହାର ଅନ୍ୟନାମ ଉତ୍କଳ । ଲୋକନୃତ୍ୟ ଓଡ଼ିଶାର ସାଂସ୍କୃତିକ ପରମ୍ପରାର ଏକ ବିଶେଷ ଭୂମିକା ଗ୍ରହଣ କରିଥାଏ । ସମ୍ରାଟ ଖାରବେଳଙ୍କ ସମୟରୁ ପ୍ରାଚୀନ ଓଡ଼ିଶାର ''ଲୋକନୃତ୍ୟ'' ଏକ ସ୍ୱତନ୍ତ୍ର ମାନ୍ୟତା ପାଇଆସିଅଛି ବୋଲି ଗବେଷକମାନେ ମତପୋଷଣ କରିଥାନ୍ତି । ଓଡ଼ିଶାର ଲୋକନୃତ୍ୟ ମଧ୍ୟରେ ମୁଖ୍ୟ ଅଂଶଗ୍ରହଣ କରିଥିବା ଲୋକନୃତ୍ୟ ଗୁଡ଼ିକ ହେଲା :–

(କ) ଆଦିବାସୀ ଲୋକନୃତ୍ୟ

(ଖ) ଉପକୂଳ ଅଞ୍ଚଳର ଘୋଡ଼ାନାଚ, ଦଣ୍ଡନାଚ, ମୋଗଲ୍‌ତାମସା, ଲଉଡ଼ି , ପାଲା ।

(ଗ) ଗଞ୍ଜାମର ଗୋଟିପୁଅନାଚ, ଦାସକାଠିଆ, ପ୍ରହଲ୍ଲାଦ ନାଟକ

(ଘ) ପଶ୍ଚିମ ଓଡ଼ିଶାର ଘୁମୁରା, ଡାଲ୍‌ଖାଇ

(ଙ) ବିଶ୍ୱପ୍ରସିଦ୍ଧ ଛଉନାଚ ଏ ସବୁର ପ୍ରଭାବରେ ବାଙ୍କୀ ମଧ୍ୟ

ପ୍ରଭାବିତ । ବାଙ୍କୀର ମୁଖ୍ୟ ଲୋକନୃତ୍ୟଗୁଡ଼ିକ ହେଲା ।

(୧) ଦଣ୍ଡନାଚ (୨) ଘୋଡ଼ାନାଚ

(୩) ପାଲା (୪) ଲଉଡ଼ି

(୫) ରାମଲୀଳା

**ଦଣ୍ଡନାଚ :-** ଏହା ଓଡ଼ିଶାର ଏକ ଲୋକପ୍ରିୟ ନୃତ୍ୟ, ମୁଖ୍ୟତଃ ଦକ୍ଷିଣ ଓ ପଶ୍ଚିମ ଓଡ଼ିଶାରେ ଏହା ବହୁଳ ଭାବେ ପ୍ରଚଳିତ । ତଥାପି ବାଙ୍କୀରେ ଏହି ନୃତ୍ୟଧାରାର କଳାକାରମାନେ ଦଣ୍ଡନାଚ ପରିବେଷଣ କରନ୍ତି । ଏହି ନୃତ୍ୟ ଶୈବ ପରମ୍ପରା ସହିତ ଜଡ଼ିତ । ଏହାର ଆରାଧ୍ୟ ଦେବତା ଶିବ ଓ ପାର୍ବତୀ । ଏହାର କଳାକାରମାନେ ଅତ୍ୟନ୍ତ ନିଷ୍ଠାର ସହିତ ଦେବକୃପା ଲାଭର ଉଦ୍ୟମ କରିଥାନ୍ତି । ଏହି ଦଣ୍ଡନାଚ ପଣା ସଂକ୍ରାନ୍ତି ଦିନ ଉଦ୍‌ଯାପିତ ହୁଏ । ପ୍ରଚଣ୍ଡ ଗ୍ରୀଷ୍ମରେ ଏହାର କଳାକାରମାନେ ଗାଁ ଧୂଳିରେ ଦଣ୍ଡ ଭାଙ୍ଗିବା, ଗଡ଼ିବା ଓ ଝୁଣାଖେଳ ଇତ୍ୟାଦି ଦେଖାଇ ଥା'ନ୍ତି ।

ଏହାପରେ ରାତ୍ରିରେ ମୁକ୍ତମଞ୍ଚରେ ନୃତ୍ୟ ପରିବେଷଣ କରାଯାଏ । ପ୍ରଥମେ ଶିବପାର୍ବତୀ ଆସି ସଭାର ଦର୍ଶକଙ୍କୁ ଆଶୀର୍ବାଦ କରନ୍ତି । ପରେ ପରେ ଆସନ୍ତି ବୀଣାକାର । ବୀଣାକାର ଚରିତ୍ରଟି ଏଥିରେ ସଂଯୋଜକର ଭୂମିକା ନେଇଥାଏ । ଏହାପରେ ହାଡ଼ି ହାଡ଼ିଆଣୀ ସୁଆଙ୍ଗରେ ନାଟକ ଆରମ୍ଭ ହୁଏ । ଶେଷରେ ବୀଣାକାର ହିଁ ନାଟକର ଯବନିକା ପକାନ୍ତି, ଯାହାର ମାନସିକ ରହିଥାଏ, ତାଙ୍କରି ଦାଣ୍ଡରେ ହିଁ ଦଣ୍ଡନାଚ ପ୍ରଦର୍ଶିତ ହୁଏ । ଏଥିରେ ପୁରୁଷକଳାକାର ସ୍ତ୍ରୀ ଭୂମିକାରେ ଅଭିନୟ କରନ୍ତି । ଉକ୍ତ ନାଟକଟି ସଂପୂର୍ଣ୍ଣ ଗ୍ରାମୀଣଧର୍ମୀ ହୋଇଥିଲେ ମଧ୍ୟ ସାଂପ୍ରତିକ ସମାଜର ସିନେମା ସଂଗୀତ ଓ ଯାତ୍ରାନାଟକର ପ୍ରଭାବ, ଏହା ଉପରେ ପଡ଼ିଲାଣି । ଯାହାର ଫଳସ୍ୱରୂପ ଏହି ପ୍ରାଚୀନ ଲୋକନୃତ୍ୟଟି ଓ ଗ୍ରାମଜୀବନରୁ ପାଦେ ଆଗେଇ ସହରୀ ସଭ୍ୟତା ଆଡ଼କୁ ମୁହାଁଇଲାଣି ଓ ନିଜର ମୌଳିକତା ହରାଇବାକୁ ବସିଲାଣି ।

**ଘୋଡ଼ାନାଚ :-** ଘୋଡ଼ାନାଚ ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ନାଚ । କୈବର୍ତ୍ତ ସଂପ୍ରଦାୟ ଆରାଧ୍ୟଦେବୀ ''ବାସେଳୀ'' ଏହାଙ୍କ ପୂଜା ଅତ୍ୟନ୍ତ ନିଷ୍ଠାରସହ ଚୈତ୍ରପୂର୍ଣ୍ଣମୀ ଦିନ କରାଯାଏ । ବାସେଳୀଙ୍କ ପାଖରେ ଏକ ମାଟି ତିଆରି ଘୋଡ଼ାମୁଣ୍ଡ ଲଗେଇ ଘୋଡ଼ା ମୁଣ୍ଡରେ ସୋଲ ମୁକୁଟ ଓ ଶାଢ଼ୀ ବାନ୍ଧି ଜଣେ ଲୋକ ଢ଼ୋଲ ଓ ମହୁରୀ ବାଦ୍ୟର ତାଳେ ତାଳେ ପାଦ ପକାଇ ଘୋଡ଼ା ନଚାଏ ଓ ଚଢ଼େୟା ଚଢ଼େୟାଣୀ ଘୋଡ଼ା ଆଗରେ ନାଚୁଥାନ୍ତି । ଘୋଡ଼ା ନାଚର ନର୍ତ୍ତକ ମୁହଁରୁ ଶୁଭେ :-

''ବାଟରେ ମାଇଲି ବୋଡ଼ା
ରାତିରେ ନଚାଏ ଚଇତି ଘୋଡ଼ା
ମୁଁ ଦିନରେ କୁଟଇ ଚୁଡ଼ା''

ଘୋଡ଼ାନାଚ ଦଳ ଗାଁ ଗାଁ ବୁଲି ସାଆନ୍ତମାନଙ୍କ ଦାଣ୍ଡରେ ନୃତ୍ୟ ପ୍ରଦର୍ଶନ କରି ପାରିତୋଷିକ ଓ ଶାଢ଼ୀ ଆଦି ଗ୍ରହଣ କରିଥାଆନ୍ତି । ଏଥିପାଇଁ ନର୍ତ୍ତକୀ ମୁହଁରେ ଶୁଭେ ।

''ଘୋଡ଼ାମୁଣ୍ଡେ ଶାଢ଼ି ବାନ୍ଧିଲି
ମୋ'ର ପାଉଣା କାହିଁ......?''

ବାଙ୍କୀର ଘୋଳପୁର, ମାନପୁର, ପାଟପୁର ଓ ରଣପୁର ଆଦି ଗ୍ରାମମାନଙ୍କରେ ଘୋଡ଼ାନାଚ ଦଳ ଘୋଡ଼ାନାଚ୍ କରିଥାଆନ୍ତି । ସ୍ଥାନ ଓ କବି ଭିନ୍ନ ଭିନ୍ନ ହୋଇଥିବାରୁ ଘୋଡ଼ାନାଚ ଗୀତରେ ମଧ୍ୟ ବିଭିନ୍ନତା ପରିଲକ୍ଷିତ ହୁଏ । ଘୋଡ଼ାନାଚ ମୁଖ୍ୟତଃ ବାସେଳୀ ପୂଜାର ଅନ୍ତର୍ଗତ ହୋଇଥିଲେ ମଧ୍ୟ ଏଥିରେ ଅନେକ ପୌରାଣିକ କଥାବସ୍ତୁର ଅବତାରଣା କରାଯାଇଥାଏ । ଘୋଡ଼ାନାଚର ମହୁରୀର ସ୍ୱର ଓ ଲୟ ସ୍ୱତନ୍ତ୍ର, ଏହା ମୁଖ୍ୟତଃ ଆଧ୍ୟାତ୍ମିକ ଚେତନା ଜାଗ୍ରତ କରାଇଥିଲେ ବି ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଶାନ୍ତିପୂର୍ଣ୍ଣ ସହବଂଧନ ଖୋରାକ ଯୋଗାଇଥାଏ । ଘୋଡ଼ାନାଚର ମୁଖ୍ୟ ଉଦ୍ଦେଶ୍ୟ ମନୋରଞ୍ଜନ ହେଲେ ବି ଲୋକ-ଶିକ୍ଷା ମଧ୍ୟ ଏହାର ଅନ୍ୟତମ ଉଦ୍ଦେଶ୍ୟ । ମାତ୍ର ସାଂପ୍ରତିକ କାଳର ଚଳଚିତ୍ରର ଲଘୁସଂଗୀତ ଓ ଅନ୍ୟାନ୍ୟ ଶସ୍ତା ସଂଗୀତ ଏଥିରେ ଅନୁପ୍ରବେଶ କରିଗଲାଣି । ଏହା ଆମ ସମାଜ ପାଇ ନିହାତି ଅସ୍ୱାସ୍ଥ୍ୟକର । ଏବେଠାରୁ ଏଥିପ୍ରତି ଦୃଷ୍ଟି ନ ଦେଲେ ଭବିଷ୍ୟତରେ ଏହା ଏକ ବିକୃତ ପରମ୍ପରା ସୃଷ୍ଟିକରିବ ଏଥିରେ ସନ୍ଦେହ ନାହିଁ,

**ପାଲା:--** ପାଲାର ସୃଷ୍ଟି ମୋଗଲ ରାଜତ୍ୱ ସମୟରୁ ହୋଇଛି ବୋଲି ଗବେଷକମାନେ ମତ ଦିଅନ୍ତି । ଓଡ଼ିଶାର ''ସତ୍ୟ-ପୀର'' ପୂଜା ସର୍ବ ପ୍ରାଚୀନ ବୋଲି ଧରାଯାଏ । ସେହି ପୂଜା ହିନ୍ଦୁ ଓ ମୁସଲମାନ୍ ସଂପ୍ରଦାୟର ମଧ୍ୟରେ ସଦ୍‌ଭାବନା ସୃଷ୍ଟି କରିବାକୁ ଉଦ୍ଦିଷ୍ଟ । ଏହି ଗୋଟିଏ ଠାକୁର ପ୍ରସାଦ ହିନ୍ଦୁ-ମୁସଲ୍‌ମାନ ଉଭୟ ଆଗ୍ରହର ସହିତ ସେବନ କରନ୍ତି । 'ସତ୍ୟପୀର' ପାଲା ଶୃଙ୍ଖଳାରେ କବି କର୍ଣ୍ଣଙ୍କ ''ଷୋଳ ପାଲା'' ଷୋହଳଟି କାହାଣୀର ସମଷ୍ଟି । ଏଥିରେ ବଂଗଳା, ଉର୍ଦ୍ଦୁ

ଓ ଓଡ଼ିଆ ଭାଷାର ସମ୍ମିଶ୍ରଣ ପରିଲକ୍ଷିତ ହୁଏ । ପାଲା ଥିଲା ପ୍ରଥମାବସ୍ଥାରେ ବୈଠକୀ । ପରେ ଠିଆପାଲାର ପ୍ରଚଳନ ହୋଇଛି । ବୈଠକୀ ପାଲାରେ ପୋଥି ରଖି ପୂଜା କରା ଯାଉଥିଲା । ମାତ୍ର ଠିଆପାଲାରେ ପୋଥିର ଆବଶ୍ୟକ ପଡ଼ିଲା ନାହିଁ । ପାଲାଗାୟାକ ବିଷୟବସ୍ତୁକୁ ମୁଖସ୍ଥ କରି ପାଲା ପରିବେଷଣ କଲେ । ପାଲାରେ ଗିନି, ଝାଞ୍ଜ, ମୃଦଙ୍ଗ ମୁଖ୍ୟ ବାଦ୍ୟଯନ୍ତ୍ରର ଭୂମିକା ଗ୍ରହଣ କରନ୍ତି । ଗାୟକ, ବାୟକ ଓ ପାଳିଆଙ୍କ ବେଶଭୂଷାରେ ଯବନ-ପ୍ରଭାବ ପଡ଼ିଥିବାର ଗବେଷକମାନେ ମତ ଦିଅନ୍ତି । ମୁଣ୍ଡରେ ପଗଡ଼ି, ଦେହରେ ଅଚକନ, କାନରେ କାନଫୁଲ ଇତ୍ୟାଦି ଗହଣା ପାଲାବାଲାଙ୍କର ପାରମ୍ପରିକ ବେଶ । ପାଲାର ବିଷୟବସ୍ତୁ ପୌରାଣିକ ଆଖ୍ୟାନ ଉପରେ ପର୍ଯ୍ୟବେସିତ । ମହାଭାରତ, ରାମାୟଣ, ପୁରାଣଶାସ୍ତ୍ରର ଯେକୌଣସି ଏକ ବିଷୟକୁ ନେଇ ବର୍ଣ୍ଣନା କରାଯାଇଥାଏ । ଏତଦ୍‌ବ୍ୟତୀତ ସାହିତ୍ୟ ଚର୍ଚ୍ଚାପାଇଁ ସେଥିରେ ଛାନ୍ଦ, ଚଉପଦୀ ଆଦି ଅଳଙ୍କାର ଯୋଡ଼ାଯାଇ ଶ୍ରୁତି ମଧୁର କରାଯାଇଥାଏ । ଏହି ପରିପ୍ରେକ୍ଷୀରେ ବାଙ୍କୀରେ ପାଲା ସଂସ୍କୃତି ମଧ୍ୟ ଆଗେଇ ଚାଲିଛି । ଓଡ଼ିଶାର କେତେ ଜଣ ବହୁଚର୍ଚ୍ଚିତ ପାଲାକାରଙ୍କ ମଧ୍ୟରୁ ବାଙ୍କୀ ମାଟିରେ ଯେଉଁ ଯଶମାନ ପାଲାକାର ଜନ୍ମଗ୍ରହଣ କରିଛନ୍ତି ସେମାନେ ହେଲେ - ବେଦପୁରର ସ୍ୱର୍ଗତ ଧର୍ମାନନ୍ଦ ଦୀକ୍ଷିତ, ରଣଗଡ଼ର ଅନନ୍ତ ମହାପାତ୍ର, ପଥୁରୀପଡ଼ାର ହରିବଂଧୁ ତ୍ରିପାଠୀ, କୁରୁମୁ ଚୈନିର ନିତ୍ୟାନନ୍ଦ ରଣା ଇତ୍ୟାଦି । ଏମାନେ ଓଡ଼ିଶାର ପୁରପଲ୍ଲୀରେ ସୁପରିଚିତ ।

**ନଉଡ଼ି :–** ନଉଡ଼ି ବା ଲଉଡ଼ି ବା ଓଗାଳ ଗୋପାଳ ସଂପ୍ରଦାୟ ଦ୍ୱାରା ଏହା ଅନୁଷ୍ଠିତ ହୁଏ । ଦୋଳପୂର୍ଣ୍ଣମୀ ଗୋପାଳମାନଙ୍କର ମୁଖ୍ୟ ପର୍ବ । ଏହିଦିନ ଗୋପାଳଭାଇମାନେ ନିଜ ଗୋଧନଙ୍କୁ ଭଲଭାବରେ ଗାଧୋଇ ଦେଇ, ମୁଣ୍ଡରେ ଚନ୍ଦନସିନ୍ଦୂର ଦେଇ, ଶିଙ୍ଗରେ ପାଟଫୁଲି ବାନ୍ଧି ସେମାନଙ୍କୁ ଭୂରି ଭୋଜନ କରାଇଥାଆନ୍ତି । ନବବସ୍ତ୍ର ପରିଧାନ କରି ଗୋପାଳ ବାଳକମାନେ 'ନଉଡ଼ି' ଖେଳିବାକୁ ବାହାରନ୍ତି । କବି ଅଚ୍ୟୁତାନନ୍ଦ ଏମାନଙ୍କ ପାଇଁ ଓଗାଳ ନାମକ ଶାସ୍ତ୍ର ଲେଖିଯାଇଛନ୍ତି । ସେଥିରେ ଗୋପାଳ ଜନ୍ମର ଶାସ୍ତ୍ରୀୟ ପ୍ରମାଣ ଓ ସେମାନଙ୍କ ବ୍ୟବହାର୍ଯ୍ୟ ବଂଶୀର ଉତ୍ପତ୍ତି ଗୁଣାବଳୀ ଇତ୍ୟାଦି ବର୍ଣ୍ଣନା କରାଯାଇଅଛି । ନଉଡ଼ି ଖେଳରେ ବ୍ୟବହୃତ ସାମଗ୍ରୀ ରୂପେ ବ୍ୟବହୃତ ହୁଏ ମାତ୍ର ଦୁଇଖଣ୍ଡ ବାଡ଼ି । ଏହି ବାଡ଼ି ସାହାଯ୍ୟରେ ଗୋପାଳ ବାଳକମାନେ ନଉଡ଼ି ଖେଳ ପ୍ରଦର୍ଶନ କରିଥାନ୍ତି । ଅଧିକାଂଶ ଲୋକନୃତ୍ୟ ଭଳି ଏହି ଲୋକନୃତ୍ୟର ମଞ୍ଚ ହେଉଛି ଗାଁ ଦାଣ୍ଡ । ଗାଁ ଦାଣ୍ଡରେ ଦୁଇ ଦଳ ହୋଇ ଆଗରେ ବୟସ୍କ ଲୋକମାନେ କାନ୍ଧରେ ବାହୁଙ୍ଗୀ, ଶିକା ଓ ଶିଙ୍ଗା ବଜାଇ ଏହି ନୃତ୍ୟ । ପରିବେଷଣ କରନ୍ତି । ଏଥିରେ କେବଳ ପୁରୁଷମାନେ ଅଂଶଗ୍ରହଣ କରିଥାନ୍ତି । ଯମୁନା ସ୍ନାନ (ଗ୍ରାମ ପାଖରେ ଥିବା ନଦୀ ବା ଜଳାଶ୍ରୟରେ ଗାଧୋଇବା) ପରେ ଗ୍ରାମ ପରିକ୍ରମା କରି ଦୋଳ ବେଦୀରେ ଠାକୁରଙ୍କ ପାଖରେ ଓଗାଳ ବୋଲିବା ପରେ ଏହି ଯାତ୍ରା ଶେଷ ହୁଏ । ଏହି ଯାତ୍ରାର ଆରାଧ୍ୟ ଦେବତା 'ରାଧାକୃଷ୍ଣ' । ସାଂପ୍ରତିକ ସମାଜରେ ଆଧୁନିକତା ପ୍ରବେଶ କରିବାରୁ ଓ ଏହି ଖେଳକୁ ଶିକ୍ଷିତ ପିଲାମାନେ ଆସିବାକୁ ଦ୍ୱିଧାବୋଧ କରିବାରୁ ବର୍ତ୍ତମାନ ଏହା କେବଳ ଲୌକିକ ଭାବେ ଚାଲୁଅଛି । ଭବିଷ୍ୟତ ବଂଶଧରମାନେ ଏହାକୁ ଗ୍ରହଣ ନକଲେ ଏହି ବିରଳ ଲୋକନୃତ୍ୟର ବିଲୟ ଘଟିବ ଏଥିରେ ସନ୍ଦେହ ନାହିଁ । ବାଙ୍କୀର ଗ୍ରାମେ ଗ୍ରାମେ ଏହି ଲୋକନୃତ୍ୟ ପରିବେଷଣ କରାଯାଏ । ସମୟେ ସମୟେ ଏହି ଲୋକନୃତ୍ୟର ଆନୁଷ୍ଠାନିକ ପ୍ରତିଯୋଗିତା କରା ଯାଇଥାଏ । ଗୋପାଳ ବସତିମାନଙ୍କରେ "ନଉଡ଼ି" ଦୋଳ ପୂର୍ଣ୍ଣମୀରେ ପରିବେଷଣ କରାଯାଇଥାଏ ।

**ରାମଲୀଳା :–** ଦଶକନ୍ଧ ମୌଳି, ମର୍ଯ୍ୟାଦା ପୁରୁଷୋତ୍ତମ ପ୍ରଭୁ ରାଘବେନ୍ଦ୍ର ସରକାରଙ୍କ ଜୀବନ ଗାଥାକୁ ନେଇ ମହର୍ଷି ବାଲ୍ମିକି ରଚନା କଲେ ଆଦ୍ୟଶାସ୍ତ୍ର ରାମାୟଣ । ପରେ ସନ୍ଥ ତୁଳସୀଦାସ ଶ୍ରୀରାମ ଚରିତ

ମାନସ ପ୍ରାନ୍ତୀୟ ହିନ୍ଦି ଭାଷାରେ ରଚନା କରି ଜନମାନସରେ ଏହାର ପ୍ରସାର କରାଇଲେ । ଆମ ଓଡ଼ିଆ ସାହିତ୍ୟରେ ବଳରାମ ଦାସଙ୍କ ଦାଣ୍ଡି ରାମାୟଣ, ବିଶ୍ୱନାଥ ଖୁଣ୍ଟିଆଙ୍କ ବିଚିତ୍ର ରାମାୟଣ, କବିସମ୍ରାଟଙ୍କ ବୈଦେହୀଶ ବିଳାସ ଇତ୍ୟାଦି ପ୍ରଥିତଯଶା କବିମାନଙ୍କର ଅନବଦ୍ୟ ସୃଷ୍ଟି । ଏଥିରେ ପ୍ରଭୁ ଶ୍ରୀରାମଙ୍କ ଗୁଣାବଳୀ ବର୍ଣ୍ଣନା କରାଯାଇଅଛି । ଏସବୁ କାବ୍ୟକୃତି ପରେ ନୃତ୍ୟ ଓ ସଂଗୀତର ସମାହାରରେ ସୃଷ୍ଟିହୁଏ ରାମଲୀଳା । ଏଥିରେ ନାଟ୍ୟରୂପ, ସଂଗୀତ ଓ ନୃତ୍ୟ ସମ୍ମିଶ୍ରିତ ହୋଇ ରହିଥିଲା । ଏହି ରାମଲୀଳା ପ୍ରାୟ ପ୍ରତି ଗାଁରେ ଗ୍ରାମୀଣ କଳାକାରମାନଙ୍କୁ ନେଇ ରାତିରାତି ଅଭିନୀତ ହୋଇଥାଏ । ଏଥିରେ କିଛି ହାସ୍ୟରସ ଦିଆଯାଇ ଏହାକୁ ଶ୍ରୁତିମଧୁର ଓ ମନୋରଞ୍ଜନ କରାଗଲା । ରାମଲୀଳା ଚୈତ୍ରମାସ ଶ୍ରୀରାମ ନବମୀ ଠାରୁ ଆରମ୍ଭ ହୋଇ ନ'ଦିନ ଧରି ପାଳନ କରାଯାଏ । ରାମାୟଣ ପୋଥି ପାରାୟଣ ସହ ଅନ୍ୟାନ୍ୟ କବିଙ୍କର ରାମାୟଣ ଓ ସ୍ଥାନୀୟ କବିଙ୍କର ନାଟ୍ୟଗୀତ ମଧ୍ୟ ଏଥିରେ ସଂଯୋଗ ହୋଇଥାଏ । ନ' ଦିନ ଧରି ଖୁବ୍ ନିଷ୍ଠାର ସହ ହବିଷାନ୍ନ ଭକ୍ଷଣ କରି ଶ୍ରୋତାମାନେ ଏହି ପର୍ବକୁ ପାଳନ କରନ୍ତି । ଶ୍ରୀରାମଙ୍କ ଜନ୍ମଠାରୁ ଆରମ୍ଭ ହୋଇ ଗୀତକାବ୍ୟ ସୀତାବିବାହ, ରାମ ବନବାସ, ସୀତାଚୋରୀ, ବାଳିବଧ, ଲଙ୍କାଦହନ, ରାବଣ ମରଣ ଓ ଶେଷରେ ରାମାଭିଷେକରେ ଏହାର ପରିସମାପ୍ତି ଘଟେ । ଏଥି ମଧ୍ୟରୁ ଲଙ୍କାଦହନ ପର୍ବଟି ବେଶ୍ ମନମୁଗ୍ଧକର ଓ ଆକର୍ଷଣୀୟ ହୋଇଥାଏ । ହନୁମାନ ହେଉଥିବା କଳାକାର ପାଇଁ ଏହି ଦିନ ଅଭିନୟ ଏକ ସାଧନାଯୋଗ୍ୟ ଅଭିନୟ । ଏହି ରାମଲୀଳାର ଧାରାରେ ବାଙ୍କୀ ମଧ୍ୟ ପ୍ରଭାବିତ ହୋଇଛି । ବାଙ୍କୀର ପୁରପଲ୍ଲୀରେ ରାମଲୀଳା ମଞ୍ଚସ୍ଥ ହୁଏ । ରାମଲୀଳା ଦଳ ଗାଁ ଗାଁ ବୁଲି ଏହା ମଞ୍ଚସ୍ଥ କରିଥାନ୍ତି । ଯେଉଁ ପ୍ରମୁଖ ଦଳଗୁଡ଼ିକ ବାଙ୍କୀର ରାମଲୀଳା ପରିବେଷଣ କରନ୍ତି, ସେଗୁଡ଼ିକ ହେଲା – ସାହାଡ଼ାପଦା, ହରିରାଜପୁର, କୁଶପଙ୍ଗୀ, ଘୋଳପୁର, ଓସ୍ତିଆ ଆଦି ଗ୍ରାମ ଓ ଏତଦ୍ ବ୍ୟତୀତ ବ୍ରହ୍ମପୁରା, ନୂଆସାହି, ପାଥପୁର, କଳାପଥର, ରଗଡ଼ି ଖଜୁରୀପଦା, ଗୋପାଳପୁର, ଚର୍ଚ୍ଚିକା, ରଣପୁର, ଚକାପଦା, ବେଦପୁର ଆଦି ଗ୍ରାମମାନଙ୍କରେ ମଧ୍ୟ ଏହି ରାମଲୀଳା ପରିବେଷଣ କରାଯାଏ । ଏହି ଲୋକନୃତ୍ୟ ବିଗତ ଶହେ ବର୍ଷ ହେଲା ଏହି ଗ୍ରାମମାନଙ୍କରେ ଅନୁଷ୍ଠିତ ହୋଇଥିବାର ଅନୁମାନ କରାଯାଏ ।

ଉପରୋକ୍ତ ଲୋକନୃତ୍ୟ ବ୍ୟତୀତ ବାଙ୍କୀ ବ୍ରହ୍ମପୁରା ଅଞ୍ଚଳରେ କଣ୍ଢେଇ ନାଚ ମଧ୍ୟ ଲୋକନୃତ୍ୟର ଅନ୍ୟ ଏକ ଅଂଶ ବିଶେଷ । ଲୋକନୃତ୍ୟର ମୁଖ୍ୟ ଲକ୍ଷ୍ୟ ମନୋରଞ୍ଜନ ସହ ଧାର୍ମିକଚେତନା, ଭାବଜାଗ୍ରତ ଓ ଲୋକଶିକ୍ଷା ସମାଜର ଅଧୋଗତି ବେଳେ ଏହାକୁ ସୁଧାରିବା ପାଇଁ ଲୋକନୃତ୍ୟର ଏକ ବିଶେଷ ଭୂମିକା ରହିଛି । ଲୋକନୃତ୍ୟ ମାଧ୍ୟମରେ ଜାଗରଣ ଆଣିବା ସହଜ । ପଲ୍ଲୀ ପ୍ରାଣରେ ଲୋକନୃତ୍ୟର ପ୍ରଭାବ ଅନେକ ପଡ଼ିଥାଏ । ତେଣୁ ଲୋକଶିକ୍ଷା ଓ ସଂସ୍କାର ଆଣିବାରେ ଲୋକନୃତ୍ୟଯେ ଏକ ପ୍ରଧାନ ମାଧ୍ୟମ ଏଥିରେ ଦ୍ୱିମତ ନାହିଁ ।



# କରାଳ କାଳ କବଳିତ 'ମୁଣ୍ଡ ଦେଉଳ'

ସୌଭାଗ୍ୟ ମଞ୍ଜରୀ ମହାରଣା
+୨ ପ୍ରଥମ ବର୍ଷ କଳା

ତା ୧୦-୦୪-୧୯୮୬ ମସିହା ବାଙ୍କୀଗଡ଼ର କମଳାବାଗ ରାଜକବି ପଦ୍ମନାଭ ଶ୍ରୀ ଚନ୍ଦନସାହିତ୍ୟ ମଣ୍ଡପରେ, ନିଖିଳ ଉତ୍କଳ ଖଣ୍ଡାୟତ । ମହାସଭାରେ ''ଓଡ଼ିଶା ପାଇକ ବାର୍ତ୍ତା''ର କିଛି ସ୍ୱନାମଧନ୍ୟ ଲେଖକଙ୍କ ମଧ୍ୟରୁ କ୍ଷେତ୍ରୀୟ କବି ହରିବନ୍ଧୁ ମଙ୍ଗରାଜ, କବି ନବକିଶୋର ମହାରଣା (ବାଙ୍କୀ ଇତିହାସ ବହିର ଲେଖକ) ଉପସ୍ଥିତ ଥିଲେ । ''ବାଙ୍କୀ ଇତିହାସ'' ରେ ମୁଣ୍ଡଦେଉଳ ସମ୍ବନ୍ଧୀୟ କିଛି ତଥ୍ୟ ଉପସ୍ଥାପନା କରାଯାଇଥିଲା । ମୁଣ୍ଡଦେଉଳ କାହିଁକି ହୋଇଥିଲା ଓ ତାହାର ସ୍ରଷ୍ଟା କିଏ ସେ, ଏଥିପାଇଁ ଖୋର୍ଦ୍ଧା ଓ ବାଙ୍କୀ ମଧ୍ୟରେ ତର୍କ ବିତର୍କ ସୃଷ୍ଟି ହୋଇଥିଲା ।

ଉତ୍କଳ ଇତିହାସର ''ଅଜ୍ଞାତ ଅଧ୍ୟାୟ'' ପୁସ୍ତିକାର ଲେଖକ ଚକ୍ରଧର ମହାପାତ୍ର ତାଙ୍କ ବହିର ୧୫୨ ପୃଷ୍ଠାରେ ଲେଖିଛନ୍ତି, ସୀମା ବିବାଦ ଯୁଦ୍ଧରେ ଖୋରଧାର ରାଜା ତାଳବସ୍ତ ଓ ଦୋଲଣାପୁର ପ୍ରଗଣା ବାଙ୍କୀରୁ ଛଡ଼ାଇ ନେଲେ । ରୂପ କମଳିନୀ ରାଣୀ ଶୁକଦେଇଙ୍କୁ ଗୋପୀନାଥ ଦେବ ପ୍ରତାରଣା ପଣକରି ତାଙ୍କ ସ୍ୱାମୀ ଧନୁର୍ଜୟ ଶ୍ରୀଚନ୍ଦନଙ୍କୁ ଜୟୀମଙ୍ଗଳଗଡ଼ର ଦଳବେହେରାଙ୍କ ଦ୍ୱାରା ଆତତାୟୀମାନେ ହତ୍ୟା କଲେ ।

ଗୋପୀନାଥ ଦେବ ବାଣପୁର ରାଜା ଅଚ୍ୟୁତ ହରିଚନ୍ଦନଙ୍କ ଜେମାଙ୍କ ପ୍ରତି ଅମାନବୀୟ ଆଚରଣ କରିବାରୁ ତାଙ୍କ ଦେୱାନ ମିର୍ଜାସୟଦ୍ ବେଗ ଓ ବକ୍ସି ବେଣୁ ଭ୍ରମରବର ରଥୀପୁରଗଡ଼ରେ ଗୋପୀନାଥ ଦେବଙ୍କୁ ହତ୍ୟା କଲେ । ବାଙ୍କୀରାଣୀ ଶୁକଦେଇ ବିଧବା ଦୁଃଖରେ କାତର ନହୋଇ ଦ୍ୱିତୀୟବାର ଖୋରଧା ଅଭିମୁଖେ ଯୁଦ୍ଧ ଅଭିଯାନର ପ୍ରସ୍ତାବ ବାଢ଼ିଲେ । ବଡ଼ମ୍ବା ରାଜା ବୀରବର ପଦ୍ମନାଭ ମଙ୍ଗରାଜଙ୍କର ସାହାର୍ଯ୍ୟ ଲୋଡ଼ିଥିଲେ । ବାଙ୍କୀ, ଖୋରଧା ଯୁଦ୍ଧ ପୂର୍ବରୁ ବଡ଼ମ୍ବା ଢ଼େଙ୍କାନାଳର ଯୁଦ୍ଧ ହୋଇଥିଲା । ଢ଼େଙ୍କାନାଳ ରାଜା ହାରି ଯାଇଥିଲେ । ଢ଼େଙ୍କାନାଳର ସୀମାନ୍ତ ଝୁମ୍ପୁଡ଼ିଆ ଓ କାଳିକାପ୍ରସାଦ ଗାଁ ମଝିସୀମାନ୍ତରେ ଦୁଇପକ୍ଷର ମଣିଷ ମୁଣ୍ଡକୁ ଠୁଳ କରି ପଦ୍ମନାଭ ମଙ୍ଗରାଜ ଏକ ମୁଣ୍ଡ ଦେଉଳ ଗଢ଼ିଥିଲେ । ଯାହାକି ପୃଥିବୀ ଇତିହାସରେ ବୀରତ୍ୱର ଏକ ଅଭିନବ ପରିକଳ୍ପନା ଅଟେ ।

ବଡ଼ମ୍ବା ରାଜା ପଦ୍ମନାଭ ମଙ୍ଗରାଜ ତାଙ୍କ ଭଉଣୀ ରାଣୀ ଶୁକଦେଈଙ୍କୁ ସାହାଯ୍ୟ କରିବାକୁ ଯାଇ, ବୈଦ୍ୟେଶ୍ୱର ବାଟରୁ କଳାପଥର ଗେଡ଼ିଆପଲ୍ଲୀ ଅତିକ୍ରମ କରି ମାଣିବନ୍ଧଗଡ଼କୁ ଆକ୍ରମଣ କଲେ । ଗେଡ଼ିଆପଲ୍ଲୀର ପାଇକମାନଙ୍କ ସହ ଭୀଷଣ ଯୁଦ୍ଧ ହେବାରୁ ଲୋକକଥାରେ ।

ଗେଡ଼ିଆପଲ୍ଲୀ ପାଇକ
ସଂସାର ଭିତରେ ଡାକ ।

ଦଣ୍ଡନାଚରେ ଏବେ ମଧ ଗାଁ ଗହଳିରେ ଶୁଣାଯାଏ ରାଣୀ ଶୁକଦେଈ ତୁଳସୀପୁର ପଟୁ ପୋଡ଼ାଡିହ, ସୀମର, ବେଗୁନିଆ ଅତିକ୍ରମ କରି କୁଶପଲ୍ଲା ଗାଁର ଭୀମଟାଙ୍ଗୀ ଉପରେ ଅଦମନୀୟ ଖୋରଧା ପାଇକମାନଙ୍କ ସହିତ ଭୀଷଣ ଯୁଦ୍ଧ ହୋଇଥିଲା ।

ମାଣିବନ୍ଧଗଡ଼ରେ ଗୋପୀନାଥ ଦେବ ରାଣୀ ଓ ତାଙ୍କ ପୁତ୍ର ରହୁଥିଲେ । ଗୋପୀନାଥ ଦେବଙ୍କ ପୁତ୍ର କିଛି ଦିନ ପୂର୍ବରୁ ବସନ୍ତ ରୋଗରେ ମରିଯିବାରୁ ଖୁଣ୍ଟିଆ ଛାଉଣୀର ଦଶଦଳ ପଡ଼ିଆର ତଳବନ୍ଧ ହୁଡ଼ାରେ ଏକ ଶିବ ମନ୍ଦିର ପୁତ୍ର ଶୋକାତୁର ସ୍ମୃତିରେ ତୋଳା ହୋଇଥିଲା । ଗୋପୀନାଥ ଦେବଙ୍କୁ ବନ୍ଦୀ କରିବା ପାଇଁ ବାଙ୍କୀ ଓ ବଡ଼ମ୍ବାର ମିଳିତ ଶକ୍ତି ପ୍ରବାହରେ ଗୋପୀନାଥ ଦେବ ବନ୍ଦୀ ହେଲେ । ଗେଡ଼ିଆପଲ୍ଲୀ ଓ କୁଶପଲ୍ଲା ଗାଁ ଏବଂ ମାଣିବନ୍ଧଗଡ଼ ଏକ ତ୍ରିଭୁଜ ସୀମାକୃତି ଯୁଦ୍ଧ କ୍ଷେତ୍ରରେ ଅନେକ ଶହୀଦଙ୍କର ମଥା ଲୋଟି ପଡ଼ିଥିଲା । କୁଶପଲାଗାଁର ପଶ୍ଚିମ ଓ ଉତ୍ତର କୋଣ ବିସ୍ତୀର୍ଣ୍ଣ ଭୀମଟାଙ୍ଗି ଉପରେ ବୀରବର ପଦ୍ମାନଭ ମଙ୍ଗରାଜ, ମନ୍ତ୍ରୀ ବିଧାର ସାମନ୍ତ, ସେନାପତି ବକ୍ସିଙ୍କ ଉପସ୍ଥିତି ପକ୍ଷେ ବନ୍ଦୀ ଗୋପୀନାଥ ଦେବଙ୍କ ସମକ୍ଷରେ ରାଣୀ ଶୁକଦେଈ ଢ଼େଙ୍କାନାଳର ମୁଣ୍ଡଦେଉଳ ସ୍ମାରକୀକୁ

ଅନୁକରଣ କରି କୁଶପଲ୍ଲୀ ଟାଙ୍ଗି ଉପରେ ମୁଣ୍ଡ ଦେଉଳ ଗଢ଼ିବା ପାଇଁ ଆଦେଶ ଦେଇଥିଲେ ।

''ଖୋରଧା ଦର୍ପଣ'' ପ୍ରଣେତା ଦିଗମ୍ବର ଶ୍ରୀଚନ୍ଦନ ତାଙ୍କ ବହି ର ୨୫୩ ପୃଷ୍ଠାରେ ଲେଖିଅଛନ୍ତି, ମୁଣ୍ଡଦେଉଳଟି ଏକ ମାଙ୍କଡ଼ା ପଥରର ଖୋପାକୃତି ଆକାରରେ ପ୍ରତିଷ୍ଠିତ ହୋଇଥିଲା । ବାଙ୍କୀର ସାମନ୍ତ ରାଜାଙ୍କ ରାଣୀ ଓଡ଼ିଶା ରାଜାଙ୍କୁ ପରାସ୍ତ କରିବା ଏକ ନିନ୍ଦନୀୟ ଘଟଣା । ଐତିହାସିକ ଚକ୍ରଧର ମହାପାତ୍ର ବଡ଼ବାରଣାର ସାମନ୍ତ ନଳିନୀ ମହାପାତ୍ରଙ୍କୁ ଦେଇଥିବା ପତ୍ରର ଏକିକତା ନକଲ ଏଠାରେ ଉଦ୍ଧାର କରାଗଲା ।

ତା ୦୯-୧୨-୧୯୬୫
ହରିପୁର ରୋଡ଼, କଟକ - ୧

ନଳିନୀକାନ୍ତବାବୁ,

ଆପଣ ମାୟାଧର ମାନସିଂହଙ୍କୁ ଦେଇଥିବା ପତ୍ରରେ ତା ୧୧-୧୧-୧୯୬୫ ରେ ମାନସିଂହ ଆପଣଙ୍କ ପତ୍ରର ଉତ୍ତର ଦେଇଥିଲେ । କବି ମାନସିଂହଙ୍କୁ ରାଣୀ ଶୁକଦେଈଙ୍କ ସମ୍ବନ୍ଧରେ ଐତିହାସିକ ସମୀକ୍ଷା ଘେନି ଯେଉଁ ଚିଠି ଦେଇଥିଲେ ସେ ତହିଁର ଉତ୍ତର ମୋତେ ଦେବାକୁ ଦେଇଥିଲେ ।

ରାଣୀ ଶୁକଦେଈଙ୍କ ସମ୍ବନ୍ଧରେ ''ଉତ୍କଳ ଦୀପିକା''ରେ ବିସ୍ତୃତ ଆଲୋଚନା ହୋଇଥିଲା । ଏ ଘଟଣା ଆଦୌ ମିଥ୍ୟା ନୁହେଁ । ଘଟଣାର କାଳ ୧୭୧୯ରୁ ୧୭୨୭ ମଧ୍ୟରେ । ଦୁଶ୍ଚରିତ୍ର ଖୁର୍ଦ୍ଧା ଗଜପତି ଗୋପୀନାଥ ଦେବଙ୍କ ସହିତ ଏ ଯୁଦ୍ଧ ହୋଇଥିଲା । ଗୋପୀନାଥ ହରିକୃଷ୍ଣ ଦେବଙ୍କ ବଡ଼ପୁଅ । ଲାମ୍ପଟ୍ୟ ତାଙ୍କର ଏକମାତ୍ର ବିଳାସ ଥିଲା । ଶୁକଦେଈଙ୍କୁ ଜଗନ୍ନାଥ ଦର୍ଶନ ବେଳେ ପ୍ରଗନ୍ନା ଦର୍ଶନ ବେଳେ ଦେଖିବା ପରେ ତାଙ୍କୁ ରାଜଗୃହକୁ ଆମନ୍ତ୍ରଣ କରିବା ପୁଣି ବୃଥାରେ କୁଶପଲ୍ଲୀ ପ୍ରଗନ୍ନ ସହିତରେ ବହୁ ପ୍ରଗନ୍ନ ଦଖଲ କରିବା ପରେ ବାଙ୍କୀର ଯୁବକ ରାଜା ବାଧ ହୋଇ ଯୁଦ୍ଧକରି ହତ ହୋଇଥିଲେ । ଯୁବତୀ ଶୁକଦେଈ ଶିଶୁପୁତ୍ରକୁ ଘେନି ଯୁଦ୍ଧକ୍ଷେତ୍ରକୁ ଯାଇଥିଲେ । ଲମ୍ପଟ ଗୋପୀନାଥ ତାଙ୍କୁ ଦେଖୁ ଦେଖୁ ଅଶ୍ୱପୃଷ୍ଠରୁ ପତିତ ହେବା, ବନ୍ଦୀ ହେବା ପୁଣି ମୁକ୍ତହେବା ଘଟଣା ସବୁ ସତ୍ୟ । (ଲେଖା ଅସ୍ପଷ୍ଟ...) ପରେ ....ତାଙ୍କୁ ମାନସିକ ରୋଗ ଘୋଟିଲା......ସେ ଚିକିତ୍ସିତ ହୋଇ ଭଲ ହେଲେ; କିନ୍ତୁ ସ୍ୱଭାବ ନ ହୋଇ ....ଜଗନ୍ନାଥ ଦର୍ଶନକୁ ଆସୁଥିବା ରଣପୁର ଜେମାଙ୍କ ପ୍ରତି ଦୁର୍ବ୍ୟବହାର କରିବାରୁ ରଣପୁର ରାଜା କୃଷ୍ଣ ନରେନ୍ଦ୍ର ଦେବାନ ସୟଦବେଗ ଓ ଭ୍ରମରବର ରାଉତମାନେ ସହି ପାପାଚାରୀ ରାଜାଙ୍କୁ ଖୋରଧା ରାଜବାଟୀରେ ପଶି ମାରି ଦେଇଥିଲେ, ମୁଣ୍ଡରେ ପଥର ଛେଚି ।

(Seeଉତ୍କଳ ଇତିହାସ, କୃପାସିନ୍ଧୁ, ପୃ-୨୪୯, ମହତାବ ଇତିହାସ, ୧ ମ ସଂସ୍କରଣ - ଖୋର୍ଦ୍ଧାବଂଶ, ମାଦଳା ପାଞ୍ଜି, ପୃ -୭୩)

କିନ୍ତୁ ଏଥିରେ ଶୁକଦେଈଙ୍କ କଥା ନାହିଁ । କାରଣ ଖୋର୍ଦ୍ଧା ରାଜବଂଶର ଏକ ଅପମାନିତ ଘଟଣାଟି ମୂଳ ପାଞ୍ଜିରେ କରଣମାନେ ଲୁଚାଇ ଦେଇଛନ୍ତି । ସାକ୍ଷାତ କଲେ ସବୁ ଜାଣିବେ । (ଇତି)

ଚକ୍ରଧର ମହାପାତ୍ର

ରାଣୀ ଶୁକଦେଈଙ୍କ ସ୍ୱର୍ଗୀୟ କ୍ଷମା କିରତୀ ମୁଣ୍ଡ ଦେଉଳ ଖୋରଧା ରାଜାଙ୍କ ମଥାବନତ ଘଟଣାର ମୂକସାକ୍ଷୀକୁ ''ସବୁଜସ୍ୱପ୍ନ'' ପତ୍ରିକା ଖୋରଧା ମହୋତ୍ସବ ବହିରେ ମୁରଲୀଧର ପ୍ରଧାନ ମୁଣ୍ଡ ଦେଉଳ ନାମକ ଏକ ଐତିହାସିକ ପ୍ରବନ୍ଧ ଲେଖିଛନ୍ତି । ଶ୍ରୀଯୁକ୍ତ ପ୍ରଧାନ ତା ୧୦-୧୧-୧୯୯୮ ମଙ୍ଗଳବାର ଦିନ ଯାହା ଦେଖିଥିଲେ କେତେଖଣ୍ଡ ମାଙ୍କଡ଼ା ପଥର ବର୍ଗାକାର ଆକାରରେ ପଡ଼ିରହି ଦେଉଳର ମୂଳପତନ ମାତ୍ର ସୂଚାଇ ଅଛି ।

''ବାଙ୍କୀ ଇତିହାସର'' ଲେଖକ ଶ୍ରୀଯୁକ୍ତ ନବକିଶୋର ମହାରଣା ତା ୨୭-୧୨-୧୯୮୭ ଦିନ କୁଶପଲ୍ଲୀର ମୁଣ୍ଡଦେଉଳର ଭଗ୍ନ ଖୋପାକୃତି ମାଙ୍କଡ଼ାପଥର ଗଦା ଦେଉଳଟି ଦେଖିଥିବା ବେଳେ ଶ୍ରୀଯୁକ୍ତ ପ୍ରଧାନ ବାଇଶି ବର୍ଷ ପରେ ମୁଣ୍ଡଦେଉଳ ଦେଖିଛନ୍ତି । ମୂଳ ପତନରୁ ଆଜକୁ ପାଞ୍ଚବର୍ଷ ମଧ୍ୟରେ ସ୍ଥାନୀୟ ଚାଷୀମାନେ ପଥର ସବୁକୁ ନେଇ ଧାନ ଜମିର ମୁହାଣ ପ୍ରସ୍ତୁତ କଲେଣି । ୧୬୮୬ ଖ୍ରୀଷ୍ଟାବ୍ଦରୁ ଖ୍ରୀ ୧୭୨୬ ମଧ୍ୟରେ ରାଣୀ ଶୁକଦେଈଙ୍କ କର୍ମମୟ ଜୀବନର ଅଭିନୀତ ହୋଇଥିଲା । ଚର୍ଚ୍ଚିକା ଦେବୀଙ୍କ ଘଣ୍ଟ କାହାଳୀର ପ୍ରତିଧ୍ୱନୀ ଛନ୍ଦ 'ମୁଣ୍ଡ ଦେଉଳ'ର କାହାଣୀକୁ ଅମର କରିଛି । ଶୁକଦେଈଙ୍କ ବିଜୟ ଗାଥାର ଐତିହ୍ୟପୂର୍ଣ୍ଣ ମୁଣ୍ଡ ଦେଉଳର ଧୂପଛାଇରେ ବିଶ୍ୱ ଇତିହାସ ଆଜି ମର୍ଯ୍ୟାଦାବନ୍ତ ହେଉ, ଏତିକି ମାତ୍ର କାମନା ।

ଜୟ'ମା ଚର୍ଚ୍ଚିକା ।

# ବାଙ୍କୀର ସାରସ୍ୱତ ପରମ୍ପରା

*ଅର୍ଚ୍ଚନା ରଥ*
+୩ ବିଜ୍ଞାନ ଶେଷବର୍ଷ , (ପଦାର୍ଥ ବିଜ୍ଞାନ ସମ୍ମାନ)

ସମାଜର ଯେ, ହିତସାଧନ କରେ ତାହା ହିଁ ସାହିତ୍ୟ । ସାହିତ୍ୟ ସୃଷ୍ଟି ପାଇଁ ଅନୁଭୂତିର ତୀବ୍ରତା ଯେତିକି ଆବଶ୍ୟକ, ପ୍ରଜ୍ଞା, ଚେତନା ବା ଧୀଶକ୍ତିର ମଧ ସେତିକି ପ୍ରୟୋଜନ । ଏହାବିନା ସାହିତ୍ୟ ସ୍ୱୟଂ ସମ୍ପୂର୍ଣ୍ଣ ମନେହୁଏନା । ସାହିତ୍ୟର ବିସ୍ତୀର୍ଣ୍ଣ ଇଲାକାରେ ନିଜସ୍ୱ କ୍ଷୁଦ୍ର କାୟା ମେଲାଇ ଥିବା ଅନେକ ବ୍ୟକ୍ତିତ୍ୱଙ୍କର ଜନ୍ମ ଏହି ସ୍ୱର୍ଣ୍ଣପ୍ରସୂ ବାଙ୍କୀ ଭୂମିରେ । ନହେବ ବା କେମିତି ? ଯାହାର ପୁରାଣ ଇତିହାସ, ଭୂଗୋଳ ଅନନ୍ୟ, ତା'ର ସାହିତ୍ୟ ମଧ ସୁଦୂର ପ୍ରସାରୀ ଥିବା ସ୍ୱାଭାବିକ । ସେହି ପ୍ରଜ୍ଞାଦୀପ୍ତ ବ୍ୟକ୍ତି, ଯେଉଁମାନଙ୍କର ଲେଖନୀରେ ବାଙ୍କୀର ସାହିତ୍ୟ ଋଦ୍ଧିମନ୍ତ ସେହିମାନଙ୍କ ଜୀବନଦର୍ଶନ କେତେକାଂଶରେ ଅନ୍ୟମାନଙ୍କ ଠାରୁ ନିଆରା । ଜୀବନକୁ ଜୀବନ ଭାବରେ ପଢ଼ିଥିବା, ଆଉ ଟିକେ ପାଖରୁ ଦେଖିଥିବା ସେହି ସାହିତ୍ୟକମାନଙ୍କର ଜୀବନଶୈଳୀ ଉପରେ ଆସନ୍ତୁ କିଞ୍ଚିତ୍ ଆଲୋକପାତ କରିବା ।

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ବାଙ୍କୀ ସାରସ୍ୱତ ଆକାଶର ଏକ ଉଜ୍ଜ୍ୱଳ ନକ୍ଷତ୍ର । ସେ ୧୮୯୮ ମସିହା ଡିସେମ୍ବର ୨୩ ତାରିଖ ରେ ବାଙ୍କୀ ଖମାରଙ୍ଗ ଗ୍ରାମରେ ପିତା ଦୁର୍ଗାଚରଣ ପଟ୍ଟନାୟକ ଓ ମାତା ରାଧାମଣୀ ଦେବୀ ଙ୍କ କୋଳରେ ଜନ୍ମଗ୍ରହଣ କରି ଖାଲି ସେମାନଙ୍କୁ ନୁହେଁ ସମଗ୍ର ଉତ୍କଳକୁ କରିଦେଇଥିଲେ ଧନ୍ୟା । କିଶୋର ଅବସ୍ଥାରୁ ହିଁ ଘଟିଥିଲା ତାଙ୍କ ପ୍ରତିଭାର ଉନ୍ମେଷ ଆଉ ପ୍ରେରଣା ଦେଇଥିଲେ ମାତା ରାଧାମଣି ଦେବୀ । ସର୍ବପ୍ରଥମେ ମା'ଚର୍ଚ୍ଚିକା ଙ୍କର ଆନୁଗତ୍ୟ ନେଇ ଧର୍ମୀୟ ଭାବନାରେ ଉଦ୍‌ବୁଦ୍ଧ ହୋଇ ରଚନା କଲେ ସେ–

ଦେବୀ ଗୋ ଚର୍ଚ୍ଚିକେ ।
ପରମାନନ୍ଦ ଦାୟିନୀ
ପଦ୍ମଗନ୍ଧ ପ୍ରସୂନ ମାଳିନୀ ମା'
ଶ୍ମଶାନ ବିଳାସିନୀ
କର ଦୟା ଦୀନେ ସିଂହବାହିନୀ
ହର ହୃଦୟ ପଦଚାରିଣୀ ।

ବାସ୍ ଆଉ ପଛକୁ ଫେରିଚାହିଁବାର ଅବକାଶ ନାହିଁ । କାଳୀଚରଣ ସୌଜନ୍ୟ ସ୍ନିଗ୍ଧତାର ଜୀବନ୍ତ ପ୍ରତିମୂର୍ତ୍ତି ସାଜି ଲେଖିଚାଲିଲେ ଅନେକ ଛାନ୍ଦ, ଚଉପଦୀ, ରଚନା, ଜଣାଣ, ପଲ୍ଲୀଗୀତ, ଲୋକଗୀତ, ଚମ୍ପୂ, ଓ ଅନେକ ନାଟକ । ତାଙ୍କ ରଚିତ ନାଟକ ମଧରୁ– ଫଟାଭୂଇଁ, ରକ୍ତମାଟି, ରକ୍ତମନ୍ଦାର, ଜୀବନ୍ତ ସମାଧି, ଚୁମ୍ବନ, ପଦ୍ମାବତୀ ଆଦି ବେଶ୍ ଜନାଦୃତ । ଏତଦ୍‌ଭିନ୍ନ ସେ ଏକାଧାରରେ ଥିଲେ ଜଣେ କବି ସଂଗୀତଜ୍ଞ, ନାଟ୍ୟକାର ଏବଂ ଆହୁରି ଅନେକ କିଛି । ଏମିତି ଜଣେ ସେ ସ୍ୱାଭିମାନୀ ଓଡ଼ିଆ– ଯାହାର ଜୀବନରେ ''ପଦ୍ମଶ୍ରୀ'' ଉପାଧିର ଗୁରୁତ୍ୱ ନିହାତି ତୁଚ୍ଛ ଥିଲା । ତାଙ୍କର ଦୃଷ୍ଟିରେ ''କବିଚନ୍ଦ୍ର ଉପାଧି'', ଯାହାକି ଓଡ଼ିଶାର ମୁକୁଟମଣି ଗଜପତି ମହାରାଜାଙ୍କ ଦ୍ୱାରା ପ୍ରଦତ୍ତ ଥିଲା ତାହା ହେଉଛି ମହାନ । ସେ ୧୯୬୯ ମସିହାରେ ''ରତ୍ନସଦସ୍ୟ'' ତାମ୍ରଫଳକ ଓ ୧୯୪୪ ରେ ''ନାଟ୍ୟାଚାର୍ଯ୍ୟ'' ଉପାଧି ଲାଭ କରିଥିଲେ । ଓଡ଼ିଶା ସାହିତ୍ୟ ଇତିହାସରେ ସେ ଏକ ପ୍ରାତଃ ସ୍ମରଣୀୟ ନାମ । ସେ ଆଜି ନାହାଁନ୍ତି ସତ, ହେଲେ ସେ ଛାଡ଼ି ଯାଇଥିବା ସାହିତ୍ୟରୂପକ ଦର୍ପଣ ରେ ତାଙ୍କ ଛବି ଖୁବ୍ ସ୍ୱଚ୍ଛ ।



୧୮୪୮ ମସିହା ନାଗଲ ଚତୁର୍ଥୀ ର ପୁଣ୍ୟବେଳାରେ ଯେଉଁ ଯୋଗଜନ୍ମା ପିତା ଦୀନବନ୍ଧୁ ଓ ମାତା କବିବୁଢ଼ୀ ଙ୍କ କୋଳରେ ଜନ୍ମନେଇ ଧନ୍ୟ କରିଥିଲେ ବାଙ୍କୀ ଭୂମିକୁ ସେ ହେଉଛନ୍ତି ବିପ୍ଳବୀ ପଣ୍ଡିତ ଗୋବିନ୍ଦ ରଥ । ଅନୁମାନ କରାଯାଏ ପଣ୍ଡିତ ରଥ ହିଁ ପ୍ରଥମ ବ୍ୟଙ୍ଗସାହିତ୍ୟର ରଚୟିତା । ଅତ୍ୟନ୍ତ ନିର୍ଭୀକ ଭାବରେ ସେ ଇଂରେଜ ସରକାରଙ୍କର ତଥା ବିଗିଡ଼ି ଯାଇଥିବା ଶାସନକଳ ବିଷୟରେ ବ୍ୟଙ୍ଗ କବିତାମାନ ରଚନା କରି ସେ କାଳରେ ଲୋକଙ୍କ ଭିତରେ ଜାଗରଣ ଆଣିପାରିଥିଲେ । ୧୮୭୧ ମସିହାରେ ସେ ''ଉତ୍କଳ ପୁତ୍ର'' ନାମକ ଏକ ପତ୍ରିକା ପ୍ରକାଶ କରି ଓଡ଼ିଶାର ଦୁଃଖ ଦୁର୍ଦ୍ଦଶାକୁ ବ୍ରିଟିଶ୍ ସାମ୍ନାରେ ଉପସ୍ଥାପିତ କରାଇଥିଲେ । ୧୮୭୭ରେ ମହାରାଣୀ ଭିକ୍ଟୋରିଆଙ୍କର ଭାରତେଶ୍ୱରୀ ପଦବୀ କୁ ନେଇ ''ଭାରତ ଉତ୍ସବ'', ୧୮୮୫ ରେ ଲାଟ୍ ଦର୍ଶନ, ଆଦି ରଚନା କରିଥିଲେ । ପ୍ରଥମ ବର୍ଣ୍ଣବୋଧକ, ଚାଟଶାଳୀ ପାଠ, ଅଭିଷେକ ଉତ୍ସବ, ଘୋଡ଼ାଡ଼ିମ୍ବ, ଫିଉଚର ସାହେବ ଆଦି ତାଙ୍କର ସଫଳ କୃତି । ତାଙ୍କ ଲେଖନୀର ଅଦ୍ଭୁତ ଶକ୍ତିରେ ସେ ଯୁଗର ସାହିତ୍ୟ ହୋଇଥିଲା ଋଦ୍ଧିମନ୍ତ । ସେ ମହାନ ନାୟକ, ବିପ୍ଳବୀ ବୀର ୧୯୧୮ ମସିହା ମେ ମାସ ୨୮ ତାରିଖ ଦିନ ଇହଲୀଳା ସମ୍ବରଣ କଲେ ।

କଟକ ଜିଲ୍ଲାସ୍ଥ ଶକ୍ତିପୀଠ ବାଙ୍କୀ ଉପଖଣ୍ଡ ଅନ୍ତର୍ଗତ ପ୍ରସିଦ୍ଧ ନଗରଗ୍ରାମ ବୈଦ୍ୟେଶ୍ୱର ବ୍ରଜବିହାରୀପୁର ଶାସନରେ ୧୮୬୭ ମସିହା ଡିସେମ୍ବର ମାସ ୧୪ ତାରିଖରେ ଆବିର୍ଭାବ ହୁଏ ନୀଳମଣି ବିଦ୍ୟାରତ୍ନଙ୍କର । ପିତା ସୌରୀଚରଣ ମିଶ୍ର ଓ ମାତା ରୋହିଣୀ ଦେବୀଙ୍କର ସୁଯୋଗ୍ୟ ଦାୟାଦ । ସତ୍ୟ ଥିଲା ତାଙ୍କ ଜୀବନର ମୂଳଭିତ୍ତି । ତେଣୁ ସେ ଲେଖିଛନ୍ତି -

''ହୋଇବେ ଏକତ୍ର
ସ୍ୱର୍ଗ ଦେବଗଣ,
କରିବେ ଯଦି ମୋ ଜୀବନ ହରଣ
ନତେଜିବି ସତ୍ୟପଥ ସଦାଶ୍ରୟ
ଦେବି ନାହିଁ କେଭେ ମିଥ୍ୟାକୁ ଆଶ୍ରୟ ।''

ବଡ଼ମ୍ବାର ରାଣୀ ତାଙ୍କ କବିତା ରଚନା ରେ ମୁଗ୍ଧ ହୋଇ ତାଙ୍କୁ ''ବିଦ୍ୟାରତ୍ନ'' ଉପାଧି ପ୍ରଦାନ କରିଥିଲେ । ସାହିତ୍ୟ ଜଗତରେ ତାଙ୍କର ଥିଲା ଅଦ୍ଭୁତ ପ୍ରବେଶ । ତାଙ୍କର ସୃଷ୍ଟି ମଧ୍ୟରୁ - ବିଭିନ୍ନ ରୋଗ ସମ୍ବଳିତ ପୁସ୍ତକ, ଗୋଧନ ରକ୍ଷା, ଭିକ୍ଟୋରିଆ ଚରିତ, ଜିହ୍ୱାସୁଖ ଓ ଜୀବନ, ରାଜଧର୍ମ, କୃତନୀତି ପରାଗ, ମଣିମଞ୍ଜୁଷା, ଉତ୍କଳମଧୁପ, ଅରୁକ୍ଷ ପର୍ଯ୍ୟନ୍ତ ନୀତିଶ୍ଳୋକ, ଅର୍ଥନୀତି, ଅରଖଚାଷ, ନୀତିସୁଧାକର, ପରମାୟୁ ପ୍ରହରୀ, ପୁଷ୍ପାଞ୍ଜଳି, ବନପର୍ବ ମହାଭାରତ, ପିଲାଙ୍କ ପାଠ୍ୟ ପୁସ୍ତକ ମଧ୍ୟରୁ ଲିପି ପ୍ରଣାଳୀ ଓ ବର୍ଣ୍ଣଶିକ୍ଷା ଆଦି ଅନ୍ୟତମ । ବଡ଼ ଖେମୁଣ୍ଡିର ଟାଉନହଲ ଓ ଲକ୍ଷ୍ମୀନାରାୟଣ ଲାଇବ୍ରେରୀ ବିଦ୍ୟାରତ୍ନ ଙ୍କର ଏକ ଏକ ସଫଳ ସ୍ମାରକୀ । ୧୯୨୩ ମସିହା ଜୁଲାଇ ୨୬ ତାରିଖରେ ତାଙ୍କର ତିରୋଧାନ ହୋଇଥିଲା ।

ପୁରାଣ ପ୍ରସିଦ୍ଧ ବାଙ୍କୀରେ ପ୍ରଥମ ସାରସ୍ୱତ ପ୍ରସୂନ ହେଉଛି 'ଶଶିରେଖା' କାବ୍ୟ । ଏହାର ସ୍ରଷ୍ଟା ହେଉଛନ୍ତି ବାଙ୍କୀରାଣୀ ଶୁକଦେଈଙ୍କ ନାତି ରାଜକବି, ପଦ୍ମନାଭ ଶ୍ରୀଚନ୍ଦନ । ସେ ଖ୍ରୀ ୧୭୩୫ ରୁ ଖ୍ରୀ ୧୭୫୭ ପର୍ଯ୍ୟନ୍ତ ବକ୍ରଗଡ଼ର ରାଜସିଂହାସନ ଆରୋହଣ କରିଥିଲେ । ରାଜକବି ଉପେନ୍ଦ୍ରଭଞ୍ଜଙ୍କର ଥିଲେ ସମସାମୟିକ । ତେଣୁ ସେ ଉପନ୍ଦ୍ରେଭଞ୍ଜଙ୍କ ଦ୍ୱାରା ଅନୁପ୍ରେରିତ ହୋଇ ରଚନା କରିଥିଲେ ଏହି ଶଶିରେଖା କାବ୍ୟ ଯାହାର କି ଉପେନ୍ଦ୍ରଭଞ୍ଜଙ୍କର ପ୍ରସିଦ୍ଧ 'ଲାବଣ୍ୟବତୀ' କାବ୍ୟ ସହ ବହୁତ ସାମଞ୍ଜସ୍ୟ ଥିଲା । ଏହାଛଡ଼ା 'ଇଚ୍ଛାବତୀ' କାବ୍ୟ କବିଙ୍କର ଅନ୍ୟ ଏକ ସଫଳ କୃତି ।

ତାଙ୍କ ପରବର୍ତ୍ତୀ ବଂଶଧର ରାଜା ବ୍ରଜବିହାରୀ ଶ୍ରୀଚନ୍ଦନ ଜଣେ ଉଚ୍ଚକୋଟୀର କବି । ସେ ନିଶାମଣି ଚଉତିଶା କାବ୍ୟଲେଖି ମଧ୍ୟଯୁଗୀୟ କାବ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଥିଲେ ।

ରାଜା ପୀତାମ୍ବର ଶ୍ରୀଚନ୍ଦନ ଜଣେ ଧାର୍ମିକ ଚେତନାର ବ୍ୟକ୍ତିଥିଲେ । ତାଙ୍କ ଦ୍ୱାରା ରଚିତ ଭଜନ ଓ ଜଣାଣ ସେ ସମୟରେ ବେଶ୍ ଜନାଦୃତି ଲାଭକରିଥିଲା ।

ବାଙ୍କୀ ଉପଖଣ୍ଡ ଅନ୍ତର୍ଗତ ଉପର ପାଥପୁରର ଶ୍ରୀଯୁକ୍ତ କମଳରାୟ ଖଡ଼୍‌ଗରାୟ ଜଣେ ଖ୍ୟାତନାମା କାବ୍ୟ ରଚୟିତା ଓ ସଙ୍ଗୀତ ବିଶାରଦ ଥିଲେ । ଗୀତମୁକୁଳ, ସଙ୍ଗୀତ ଚିନ୍ତାମଣି ଓ ଭାଗବତଲୀଳା ଆଦି ସଫଳ ସୃଷ୍ଟି ।

ଡମପଡ଼ା-ଭଗୀପୁର ମଠର ଦ୍ୱାରକା ଦାସ ଜଣେ ସଫଳ ଲେଖକ ଥିଲେ । ତାଙ୍କ ଦ୍ୱାରା ରଚିତ ୧୪ ଖଣ୍ଡ ପୁସ୍ତକ ମଧ୍ୟରୁ ଗୋବିନ୍ଦ ଗୀତା, ଛଅପୋଇ, ନଅପୋଇ, ଶେଷଅଙ୍କ, ଭକ୍ତିରସାମୃତ, ତତ୍ତ୍ୱଚୂଡ଼ାମଣି, ବ୍ରହ୍ମଦଗର, ଗୁଣ୍ଡଚାକେଳି, ଶୈବପୁରାଣ, ବୋଧ-ଚଉତିଶା ଆଦି ଅନ୍ୟତମ ।

କୁସୁନ୍ଦା ମଠର ତ୍ରିପୁରାରୀ ଦାସ ଜଣେ କବି ଓ ଜ୍ୟୋତିଷ ଭାବରେ ବେଶ୍ ଜଣାଶୁଣା । ସେ ପ୍ରାୟ ୫ ଖଣ୍ଡ ପୁସ୍ତକର ରଚୟିତା । ସେଥିମଧ୍ୟରୁ ରାମକୃଷ୍ଣ କେଳି, କଲ୍ଲୋଳ, ରାଧାକୃଷ୍ଣ କେଳି-କଲ୍ଲୋଳ, କଟାପାୟ କେରଳ ଗୀତି ଆଦି ଅନ୍ୟତମ ।

ଡମପଡ଼ା ମଠର ଶ୍ରୀଧର ଦାସ ସେ ସମୟରେ କାଞ୍ଚନଲତା କାବ୍ୟ ରଚନା କରି ବେଶ୍ ସୁଖ୍ୟାତି ଲାଭ କରିଥିଲେ ।

ଊନବିଂଶ ଶତାବ୍ଦୀ ଶେଷଭାଗରେ ଡମପଡ଼ାଗଡ଼ର ରାଣୀ ଇନ୍ଦୁମତୀ ପାଟମହାଦେଈ ଥିଲେ ବାଙ୍କୀର ପ୍ରଥମ ରୀତିଯୁଗୀୟ ନାରୀକବି । ତାଙ୍କର ସାରସ୍ୱତ ପ୍ରସୂନ ମଧ୍ୟରୁ - ଇନ୍ଦୁମତୀ, ଭାନୁମତୀ, ଗୀତିକଥାମାଳା କାବ୍ୟ ଅନ୍ୟତମ । ସେ ପ୍ରାୟ ୩୭ ଖଣ୍ଡ କାବ୍ୟ ରଚନା କରିଅଛନ୍ତି ।

ନଟବର ଧଳସାମନ୍ତ ଡମପଡ଼ାର ଅନ୍ୟଜଣେ ସଫଳ ସ୍ରଷ୍ଟାଥିଲେ । ସେ କାବ୍ୟ, ଚଉତିଶା, ପାଲା ଉପଯୋଗୀ ଖଣ୍ଡବାକ୍ୟ ଓ ସଙ୍ଗୀତ ଆଦି ରଚନା କରିଅଛନ୍ତି । ତାଙ୍କର ଶ୍ରେଷ୍ଠ କୃତି ମଧ୍ୟରୁ ସଙ୍ଗୀତ ମଦନ ମଞ୍ଜରୀ, କାଳିକାନ୍ତ ଚଉତିଶା, ଚିନ୍ତାମଣି ଚଉତିଶା, ସୁଭଦ୍ରା ପରିଣୟ, କାଳିକାସ୍ତବ ପ୍ରଭୃତି ଅନ୍ୟତମ ।

ରଗଡ଼ି ଗ୍ରାମର ମାଧବ ମହାପାତ୍ର ଜଣେ ସଫଳ ସାହିତ୍ୟିକ । ସେ ଉଭଟ ସାଗର, ରାଜସଭା ଶ୍ଳୋକ, ଚାଣକ୍ୟନୀତି ଦର୍ପଣ ଆଦିପୁସ୍ତକ ରଚନା କରିଅଛନ୍ତି ।

ହରିରାଜପୁର ନିବାସୀ ପଣ୍ଡିତ ଗଦାଧର ବିଦ୍ୟାଭୂଷଣ ଜଣେ ସାରସ୍ୱତ ପ୍ରତିଭାଧର । ତାଙ୍କର ଅନେକ ପ୍ରକାଶିତ ପୁସ୍ତକ ମଧ୍ୟରୁ କୃପାନିଧି ଚଉତିଶା ଓ ମୁକ୍ତମଞ୍ଜରୀ ଦେଖିବାକୁ ମିଳେ ।

ତୃତୀୟ ଦଶନ୍ଧିରୁ ପଞ୍ଚମ ଦଶନ୍ଧି ପର୍ଯ୍ୟନ୍ତ ଯେଉଁବ୍ୟକ୍ତିମାନେ ବାଙ୍କୀର ସାହିତ୍ୟ ଭଣ୍ଡାରକୁ ଋଦ୍ଧିମନ୍ତ କରିଥିଲେ ସେମାନଙ୍କ ମଧ୍ୟରୁ-

ପଣ୍ଡାଳମର ଲୋକନାଥ ପାଣିଗ୍ରାହୀ ଙ୍କ ବିଚିତ୍ର ହରିବଂଶ, ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସ ଶୈଳୀରେ ଆଦ୍ୟ 'ର' ଅକ୍ଷର କ୍ରମରେ ବତୀଶ ବିଳାସ । ପାଟପୁର ନୀଳକଣ୍ଠ ରଥଙ୍କ ପରିମଳ, ଗାନ୍ଧୀପୁରାଣ, ଭଗବତ୍ ଗୀତା, ଡମପଡ଼ା ମାୟାଧର ଧଳଙ୍କ ଅବନ୍ତିକା, ସ୍ୱପ୍ନର ସଂସାର, ରୂପର ଅତିଥି, କପୋତ-କପୋତୀ । ଖମାରଙ୍ଗ ମାଧବ ମିଶ୍ରଙ୍କ ଧନମାଳି ଇତ୍ୟାଦି ଅନ୍ୟତମ । ଏହାବ୍ୟତୀତ ଆହୁରି ଅନେକ ସାହିତ୍ୟ ସ୍ରଷ୍ଟା ଲୋକଲୋଚନକୁ ନଆସିପାରି ବଣମଲ୍ଲୀ ବଣରେ ଫୁଟି ଝାଉଁଳି ଗଲାପରି ଝରିପଡ଼ିଥିଲେ ।

ପଥୁରୀପଡ଼ାର ବିଶିଷ୍ଟ ଭାଷାବିଜ୍ଞାନୀ ପ୍ରଫେସର ଡଃ କୁଞ୍ଜବିହାରୀ ତ୍ରିପାଠୀ ୧୯୧୧ ମସିହାରେ ଜନ୍ମଲାଭ କରିଥିଲେ । ସେ ୧୯୫୩ ମସିହାରେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ "ଇଣ୍ଡୋ ଆର୍ଯ୍ୟ ଭାଷାବିଜ୍ଞାନ" ଉପରେ ଗବେଷଣା କରି ପି.ଏଚ୍.ଡ଼ି ଲାଭ କରିଥିଲେ । ପୁଷ୍ପାଞ୍ଜଳି , ବନ୍ଦନିକା, ଆଦି ତାଙ୍କର କବିତା ସଙ୍କଳନ । ପ୍ରକୃତରେ ସେ ଥିଲେ ଜଣେ ପ୍ରାବନ୍ଧିକ । ପ୍ରାଚୀନ ଓଡ଼ିଆ ଅଭିଲେଖ, ସଂସ୍କୃତ ସାହିତ୍ୟ, ଧର୍ମପଦ, ଓଡ଼ିଆ ଭାଷା ଓ ଲିପିର କ୍ରମବିକାଶ, ଆଦି ତାଙ୍କର ସୃଜନକଳାର ପରିଚୟ ପ୍ରଦାନ କରେ ।

ବିଶିଷ୍ଟ ସ୍ୱାଧିନତା ସଂଗ୍ରାମୀ ଓ କବି ଗୋକୁଳାନନ୍ଦ ପ୍ରହରାଜ ସାରସ୍ୱତ ଜଗତର ଜଣେ ସଫଳ ବ୍ୟକ୍ତିତ୍ୱ । ତାଙ୍କର ପ୍ରତ୍ୟେକ ରଚନାରେ ମିଳେ ଧର୍ମୀୟ ଭାବନାର ବାସ୍ନା । ତାଙ୍କ ରଚନା ମଧ୍ୟରୁ-ଅଗଷ୍ଟ ନଅ ଗୋ ଆସ-ଆସ, ରକ୍ତରେଖା, ପଦ୍ମ ଘୁଞ୍ଚୁ ଘୁଞ୍ଚୁ

ଗଲା, ସମାଜବାଦୀ ସଂଳାପ, କଇଁଫୁଲ ଭଜନ ମାଳା, ଆମେ କିଏ ସେ, ଆମେ କିଏ ସେ, ସ୍ୱାଧୀନତା ସଂଗ୍ରାମରେ ବାଙ୍କୀର ଭୂମିକା ଆଦି ଉଲ୍ଲେଖଯୋଗ୍ୟ । ସେହି ଅତୁଳନୀୟ ବ୍ୟକ୍ତିଙ୍କର ଜନ୍ମ ବାଙ୍କୀ ଉପଖଣ୍ଡ ଅନ୍ତର୍ଗତ ଗୋଳାଗଣ୍ଡ ଗ୍ରାମରେ ।

ବାଙ୍କୀସ୍ଥ ଚର୍ଚ୍ଚିକା ଗ୍ରାମର କବି ଲୋକନାଥ ମହାପାତ୍ର ଥିଲେ ଯୁବାବସ୍ଥାରୁ ଜଣେ ପରୋପକାରୀ ଓ ସଂସ୍କାରବାଦୀ ପ୍ରକୃତିର । ସେ ସମାଲୋଚନାମୂଳକ କବିତା ରଚନା କରି ନିର୍ଭୀକତାର ଉଦାହରଣ ସୃଷ୍ଟି କରିପାରିଛନ୍ତି । ତାଙ୍କର କୀର୍ତ୍ତି ମଧ୍ୟରୁ ସାଧନ, ବିନ୍ଧାଛିଟିକା ଆଦି ଅନ୍ୟତମ ।

ଅନୁବାଦ ସାହିତ୍ୟ କ୍ଷେତ୍ରରେ ଚର୍ଚ୍ଚିକାର ବରେନ୍ଦ୍ରକୃଷ୍ଣ ଧଳ ଏକ ବେଶ୍ ପରିଚିତ ନାମ । ସେ ଏକାଧାରରେ ଜଣେ ସାମ୍ବାଦିକ ଓ ସାହିତ୍ୟିକ । ବଙ୍ଗଳା ସାହିତ୍ୟ 'ଶାମ୍ବ' କୁ ସେ ଓଡ଼ିଆ ଭାଷାରେ ଅନୁବାଦ କରି କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ସେ ନିର୍ଭୀକ ଭାବରେ ନିଜର ଲେଖନୀ ଚାଳନା କରି ଓଡ଼ିଶାରେ ନିଜର ଏକ ସ୍ୱତନ୍ତ୍ର ସ୍ଥାନ ତିଆରି କରିପାରିଛନ୍ତି । ତାଙ୍କର ସୃଷ୍ଟି ସମ୍ପଦ ମଧ୍ୟରୁ ସନ୍ଧ୍ୟାର ମୁକୁରା ଓ ପାଣିଗାର ଅନ୍ୟତମ ।

ପଣ୍ଡାଳମ୍ ର ଦାଶରଥି ଦାଶ ଅନୁବାଦ ସାହିତ୍ୟ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ନାମ । ତାଙ୍କର ଅନୁବାଦ ସାହିତ୍ୟ ମଧ୍ୟରେ ଶୃଙ୍ଗାର ତିଳକ ଓ ଅଟଳ ବିହାରୀ ବାଜପେୟୀ ଙ୍କ ଶ୍ରେଷ୍ଠ କବିତା ମହାନ୍ କୃତିତ୍ୱ ।

ବାଙ୍କୀ ସବ୍‌ଡ଼ିଭିଜନ୍ ଅନ୍ତର୍ଗତ ବ୍ରହ୍ମପୁରା ଗ୍ରାମର କବି କେଶରୀ ନବକିଶୋର ମହାରଣା ଜଣେ ସଫଳ ସ୍ରଷ୍ଟା । ତରୁଣ ବୟସ ରୁ ହିଁ ବିକଶିତ ହୋଇଥିଲା ତାଙ୍କ ପ୍ରତିଭାର ମନମୁଗ୍ଧକର ବାସ୍ନା । ତାଙ୍କର ପ୍ରମୁଖ ସାରସ୍ୱତ ସାଧନ ମଧ୍ୟରୁ-ଶିଶୁ କବିତା, ଶୈଶବରେଣୁ, ଚର୍ଚ୍ଚିକା ମହାତ୍ମ୍ୟ, ରାଜା ହରିଶ୍ଚନ୍ଦ୍ର, ରକ୍ତଭୋଗ, ବାଙ୍କୀ ରାଣୀ ଶୁକଦେଈ, ବାଙ୍କୀ ଇତିହାସ ଇତ୍ୟାଦି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଏକ ଅନବଦ୍ୟ ଅବଦାନ । କବିଙ୍କର ଅନ୍ୟାନ୍ୟ ସୃଜନ ଯାହାକି ଅଦ୍ୟାପି ପ୍ରକାଶନ ଅପେକ୍ଷାରେ ସେଗୁଡ଼ିକ ମଧ୍ୟରୁ ସାବିତ୍ରୀ, ଦମୟନ୍ତୀ, ରାମଅମୃତ, ଅଂଶୁପାବିହାର ବାଙ୍କୀ କାବ୍ୟ, ଧ୍ରୁବ ଓ ଜୀବନୀମାଳା, ଆଦି ଅନ୍ୟତମ ସଂପ୍ରତି ସେ ନିଜ ଗ୍ରାମ ବ୍ରହ୍ମପୁରାରେ ଅବସ୍ଥାନ କରୁଅଛନ୍ତି ।

ଉପଯୋଗୀ ରଚନାକାର ସୂର୍ଯ୍ୟମଣି ମହାପାତ୍ର କାର୍ଯ୍ୟକ୍ଷେତ୍ରରେ ଜଣେ ମାଜିଷ୍ଟ୍ରେଟ୍ । ସମାଜକୁ ସୁସ୍ଥ ଓ ସୁ-ନିର୍ବାଚିତ ରାସ୍ତାରେ ପରିଚାଳିତ କରିବା ଦିଗରେ ତାଙ୍କର ଲେଖନୀ ସର୍ବଦା ଚଞ୍ଚଳ । ତାଙ୍କ ରଚିତ ସୃଷ୍ଟି ସମ୍ପଦ ମଧ୍ୟରୁ ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ, ଏକ ବିରଳ କୃତି । ଅନ୍ୟାନ୍ୟ ସୃଷ୍ଟିସମ୍ପଦ ମଧ୍ୟରୁ ସଫଳତାର ରହସ୍ୟ, ବାସ୍ତୁଶାସ୍ତ୍ର ସିଦ୍ଧାନ୍ତ, ସଫଳ ଦାମ୍ପତ୍ୟ ଜୀବନ ଇତ୍ୟାଦି ଉଲ୍ଲେଖଯୋଗ୍ୟ ।

ବାଙ୍କୀ ଉପଖଣ୍ଡ ଅନ୍ତର୍ଗତ ସୁବର୍ଣ୍ଣପୁର ଗ୍ରାମର ଶ୍ରୀଯୁକ୍ତ ଅଜିତ୍ ତ୍ରିପାଠୀ ଜଣେ ଉତ୍ତମ ପ୍ରଶାସକ ହେବା ସହିତ ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ ଓ ରମ୍ୟରଚନାକାର ।

ବାଙ୍କୀ ସବ୍‌ଡ଼ିଭିଜନ ଅନ୍ତର୍ଗତ କୁଶପଙ୍ଗୀ ଗ୍ରାମର ଅନ୍ୟତମ ବରପୁତ୍ର ଶୈଳୀସମ୍ରାଟ ଦେବ୍ରାଜ ଲେଙ୍କା ସାରା ଓଡ଼ିଶାରେ ଏକ ସୁପ୍ରତିଷ୍ଠିତ ନାମ । ତାଙ୍କର ଅତୁଳନୀୟ ଶୈଳୀ, ବାକ୍ୟବିନ୍ୟାସ, ସତେ ଯେମିତି ମୁଗ୍ଧ କରି ରଖିଦିଏ ତା'ର ପାଠକକୁ । ତାଙ୍କ ରଚିତ ଶ୍ରେଷ୍ଠ ସମ୍ପଦଗୁଡ଼ିକ ମଧ୍ୟରୁ-ଅନ୍ଧ ମୁହାଣୀ, ଟ୍ରେଲର, ଜୋକର, ଅଗଷ୍ଟ ନଅର ନେତା, ଦୂରପୃଥିବୀର ତାରା, ଜୀବନ ରଙ୍ଗ ଖେଳ, ଅନ୍ୱେଷା, ଅନ୍ୱେଷଣ, ପ୍ରେମନଗରୀର ଅନେକ କଥା, ଗୋଟିଏ ବାକ୍ସ ଭର୍ତ୍ତି ଗଳ୍ପ, ଗାଁ, ଗାଁ-ଆହା-ଆହା ଆଦି ଅନ୍ୟତମ । ନିଜସ୍ୱ ଶୈଳୀରେ ତଲ୍ଲୀନ ବାଙ୍କୀର ଏହି ଯୋଗଜନ୍ମା ସନ୍ତାନ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଉତ୍କଳ ସାହିତ୍ୟ ସମାଜ, ଭୁବନେଶ୍ୱର ସାମ୍ବାଦିକ ସଂଘ, ବାଲେଶ୍ୱର ଫକୀରମୋହନ ସାହିତ୍ୟ ସମାଜ ଓ ନିଜ ଜନ୍ମଭୂମି ବାଙ୍କୀ ମାଟିରୁ ବାଙ୍କୀ ମହୋତ୍ସବ ଅବସରରେ ବିଶେଷ ଭାବରେ ସମ୍ମାନିତ । ସଂପ୍ରତି ସେ କୁଶପଙ୍ଗୀରେ ଅବସ୍ଥାପିତ ।

କବି ଓ ଲେଖକ ଇଂ ସତ୍ୟବ୍ରତ ରଥଙ୍କର ଜନ୍ମ ବାଙ୍କୀସ୍ଥ ହରିରାଜପୁର ଗ୍ରାମରେ । ତାଙ୍କ କବିତାର

ଭାବଭୂମିରେ ସେ ଯେପରି ଏକକ ସମ୍ରାଟ । ତାଙ୍କର ସୃଷ୍ଟି ସମ୍ପଦ ମଧ୍ୟରୁ ମୌନମଧୁପ, ଚିତ୍ରିତ ପ୍ରଜାପତି, ଜହ୍ନ ଓ ଜାହ୍ନବୀ, ମରୁବଳୟ ଆଦି ସ୍ମରଣୀୟ ।

ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କର ଜନ୍ମ ବାଙ୍କୀସ୍ଥ ଚର୍ଚ୍ଚିକା ଗ୍ରାମରେ । ତାଙ୍କ ରଚିତ ଅନେକ ପୁସ୍ତକ ମଧ୍ୟରୁ ପ୍ରଥମ ପ୍ରଭାତ, ଝରେ ଶ୍ରାବଣ ଝୁରେ ଫଗୁଣ, ଜଙ୍ଗଲର ଜମାନବନ୍ଦୀ, ତମସାତୀର୍ଥ, ସତ୍ୟମ୍ ଏହି ଜୀଅନ୍ତାଶବ, ଅରଣ୍ୟ ଅତିଥି, ସତ ହେଲେବି ଗପ, ଭୂମିତୃଷା, ବ୍ୟାଘ୍ରନିନାଦ, ରକ୍ତର ରଙ୍ଗ ଆଦି ଅନବଦ୍ୟ କୃତିତ୍ୱ । ତାଙ୍କ ରଚିତ ଭୂମିତୃଷା ଉପନ୍ୟାସ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଁ ବିବେଚିତ ହୋଇଅଛି । ସେ ବାଙ୍କୀ ମହୋତ୍ସବ ଅବସର ରେ ବାଙ୍କୀ ମାଟିରେ ପୁରସ୍କୃତ ହୋଇଅଛନ୍ତି ।

ନାରୀକବିମାନଙ୍କ ମଧ୍ୟରୁ ହରିରାଜପୁର ସୁଧାଂଶୁବାଳା ପଣ୍ଡା ଙ୍କ ନାମ ଉଲ୍ଲେଖଯୋଗ୍ୟ । ତାଙ୍କ ରଚିତ ସୃଷ୍ଟି ସମ୍ପଦ ମଧ୍ୟରୁ ଅଛୁଆ ଛୁଇଁ ଦେଲା, ନବବର୍ଷର ସକାଳ, ବକୁଳବନର ରାଧା, ନିଶିଗୁଞ୍ଜନ, ଶେଷପ୍ରହର, ଅବ୍ୟକ୍ତ ବେଦନା, ଅସ୍ତିଗୋଦାବରୀ ତୀରେ ଆଦି ଅନ୍ୟତମ ।

ରହସ୍ୟ ଔପନ୍ୟାସିକ ରମେଶଚନ୍ଦ୍ର ମିଶ୍ର ଅପରାଧ ରଚନା କ୍ଷେତ୍ରରେ ବେଶ୍ ସୁପରିଚିତ । ତାଙ୍କର ଜନ୍ମ ବାଙ୍କୀ ଉପଖଣ୍ଡ ଅନ୍ତର୍ଗତ ରଗଡ଼ି ଗ୍ରାମରେ । ତାଙ୍କର ଅଧିକାଂଶ ଡିଟେକ୍‌ଟିଭ୍ ଉପନ୍ୟାସ ର ପ୍ରକାଶନ କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋର ଓ ସାଥୀ ପ୍ରକାଶନ ପ୍ରକାଶ କରିଥିଲେ । ତାଙ୍କ ରଚିତ ଉପନ୍ୟାସଗୁଡ଼ିକ ମଧ୍ୟରୁ-କିଏ ହତ୍ୟାକାରୀ, ମହାତାନ୍ତ୍ରିକ, ମୃତ୍ୟୁମଣ୍ଡପ, ସନ୍ଧାନୀବିଗା, ନୀଳ ଆଲୋକରେ ହତ୍ୟା, ଚମ୍ବଲର ମଣିଷ ବାଘ, ଅଗ୍ନିଚକ୍ର, ଏଭରଗ୍ରୀନ୍, ଥ୍ରୀଏସ୍‌ର ନାଗୁଣୀ, ଜେ ଆଣ୍ଡ ଜେଡ୍, ଚିନାଏ ବିଷ, ଅନ୍ତିମ ଯାତ୍ରା, ଲୋସନ୍ ପୁଡ଼ିଆ ଏବଂ ଆହୁରି ଅନେକ ।

ଅନ୍ୟାନ୍ୟ ନାରୀକବିମାନଙ୍କ ମଧ୍ୟରୁ ପଥୁରୀପଡ଼ା କାନନବାଳା ତ୍ରିପାଠୀ ଙ୍କ ମନର ମୁକୁଳ, ହୀରାମୋତି ମାଣିକ୍ୟ, ଆଦି ଅନ୍ୟତମ ।

ବାଙ୍କୀ ଉପଖଣ୍ଡ ଅନ୍ତର୍ଗତ ପଶାଣିଆ ଗ୍ରାମର ସାରଙ୍ଗଧର ରାୟଗୁରୁ କାର୍ଯ୍ୟକ୍ଷେତ୍ରରେ ଜଣେ ଭାରତୀୟ ପୋଲିସ୍ ସେବା ଅଧିକାରୀ । ସେ ମହାନ ବ୍ୟକ୍ତିତ୍ୱ ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ । ଓଡ଼ିଆ ବାଣୀଭଣ୍ଡାରକୁ ଶତଦଳ, ବାର୍ତ୍ତାବର୍ଣ୍ଣାଳୀ, ଗୌରପଞ୍ଚଶୀଳା, ସୂର୍ଯ୍ୟଶତକ, ଅମରଶତକ, ବସନ୍ତ ଦୂତ ଆଦି ତାଙ୍କର ଅନବଦ୍ୟ ଅବଦାନ ।

ସହି ! ତୋ ଗାଁ ମୋ ଗାଁ ଦୋସମାଳିରେ ନଈ, ନଈରେ ନଈଏ ପାଣି, ମାଛପରି ପହଁରୁଛି ଜହ୍ନର କବି ସତ୍ୟବାଦୀ ରାଉତଙ୍କ ଜନ୍ମ ଢସଁର ଗ୍ରାମରେ । ଅନୁଭୂତିର ତୀବ୍ରତା ତାଙ୍କ କବିତାର ବୈଶିଷ୍ଟ୍ୟ ।

ଏହାବ୍ୟତୀତ ବାଙ୍କୀରେ ଆହୁରି ଅନେକ ଯୋଗଜନ୍ମା ଓ ପ୍ରତିଭାଧରମାନେ ଜନ୍ମଗ୍ରହଣ କରଅଛନ୍ତି । ସେହିମାନଙ୍କ ଜନ୍ମରେ ବାଙ୍କୀମାଟି ଗର୍ବିତା । ସେମାନଙ୍କର ମଧ ସାହିତ୍ୟ କ୍ଷେତ୍ରକୁ ଅବଦାନ କିଛି କମ୍ ନୁହେଁ । ଓଡ଼ିଶା ସାହିତ୍ୟ ଇତିହାସରେ ରହିଛି ସେମାନଙ୍କର ଏକ ଏକ ସ୍ୱତନ୍ତ୍ର ଇଲାକା । ବାଙ୍କୀ ସାହିତ୍ୟ ଇତିହାସର ପୃଷ୍ଠା ସୁଦୂର ପ୍ରସାରୀ ଯାହାକୁ କି ବାନ୍ଧି ରଖି ହୁଏନା ଏହି ସୀମିତ ବୁଦ୍ଧିର ପରିସୀମା ଭିତରେ । ତେଣୁ କହିବା ବାହୁଲ୍ୟ ଏହି କ୍ଷୁଦ୍ର ପ୍ରବନ୍ଧରେ ସେହି ମହାନ ସ୍ରଷ୍ଟାମାନଙ୍କ ବିଷୟରେ ଆଲୋଚନା କରିଛି କିଞ୍ଚିତ୍ ମାତ୍ର ।

ଯୁଗେ ଯୁଗେ ରହିଛି, ''ସାହିତ୍ୟ ହିଁ ସମାଜର ଦର୍ପଣ'' । ସେହି ଦର୍ପଣରେ ପ୍ରତିବିମ୍ବିତ ସମାଜର ପ୍ରତିଛବି । ତା'ର ହସ, କାନ୍ଦ, ଲୁହ ଆଉ ତା'ମନର ଅବସ୍ଥା । ସମାଜ ସୁସ୍ଥଥିଲେ ସାହିତ୍ୟ ହୁଏ ବଳିଷ୍ଠ ଆଉ ରୁଗଣ୍‌ତାରେ ସାହିତ୍ୟ ହୁଏ ରୋଗାକ୍ରାନ୍ତ । ବାଙ୍କୀର ପରିସ୍ଥିତି ଉନ୍ନତ ତେଣୁ ଉଚ୍ଚମାନର ସାହିତ୍ୟ ସୃଷ୍ଟି ଯେ, ଅବଶ୍ୟମ୍ଭାବୀ ଏହା ନିଃସନ୍ଦେହରେ କୁହାଯାଇ ପାରେ । ଓଡ଼ଇଶାର ସାହିତ୍ୟ ଖୁବ୍ ସମୃଦ୍ଧ । ସେହି ମହାନ ଇତିହାସ କୁ ବାଙ୍କୀପରି ଏକ କ୍ଷୁଦ୍ର ସ୍ଥାନର ଦାନ ଯେ ନ୍ୟୂନ ନୁହେଁ ଏହା ସର୍ବାଦୌ ଗ୍ରହଣୀୟ । ବାଙ୍କୀର ସାରସ୍ୱତ ସମ୍ବେଦନା ଓଡ଼ିଶା ସାହିତ୍ୟ କ୍ଷେତ୍ରରେ ନିଜର ସ୍ୱତନ୍ତ୍ର ମର୍ଯ୍ୟାଦା ବହନ କରି ଯୁଗେ ଯୁଗେ ଅନ୍ୟମାନଙ୍କ ପାଇଁ ଆଲୋକବର୍ତ୍ତିକାସମ ପ୍ରତୀୟମାନ ହୋଇ ରହିଥିବ ।



# ଆସନ୍ତୁ : ବାଙ୍କୀବୁଲିଯିବା

ନୀହାରିକା ବେହେରା
+୨ କଳା ପ୍ରଥମ ବର୍ଷ

ସର୍ବ ଧର୍ମର ସମନ୍ୱୟ । ସମସ୍ତ ସାଂସ୍କୃତିକ ଚେତନାର ପ୍ରାଣକେନ୍ଦ୍ର ଏଇ ସୌନ୍ଦର୍ଯ୍ୟମୟୀ ବାଙ୍କୀ । ବାଙ୍କୀ ଏକ କ୍ଷୁଦ୍ର ସହର ହେଲେ ମଧ୍ୟ ଅନେକ ଅନେକ ମନୋରମ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଦର୍ଶନୀୟ ସ୍ଥାନକୁ ବହନ କରିଛି । ସେଇଥି ପାଇଁ ତ ବାଙ୍କୀକୁ ପ୍ରତିଦିନ ଶହ ଶହ ସଂଖ୍ୟାରେ ଭକ୍ତ, ସାଧୁ ସନ୍ଥ ତଥା ପରିଦର୍ଶକ ଆସିଥାନ୍ତି ।

**ମା' ଚର୍ଚ୍ଚିକାଙ୍କ ରଡିକ ଗିରି :**

ଓଡ଼ିଶାର ପର୍ବତମାଳା ମଧ୍ୟରେ ରଚିକ ଗିରି ଅନ୍ୟତମ; ଯେଉଁଠି ବାଙ୍କୀର ଆରାଧ୍ୟ ଦେବୀ ମା' ଚର୍ଚ୍ଚିକାଙ୍କର ପବିତ୍ର ମନ୍ଦିର ଶୋଭା ପାଉଛି । ରଚିକ ଶିଖର ଉପରେ ଦଣ୍ଡାୟମାନ ହୋଇ ବାଙ୍କୀର ପ୍ରାକୃତିକ ପରିବେଶ ଓ ଭୌଗୋଳିକ ଦର୍ଶନକୁ ଉପଲବ୍ଧି କଲେ ଯେ କେହି ଆତ୍ମହରା ହୋଇଯିବ । ଅନତି ଦୂରରେ ପୁଣ୍ୟତୋୟା ମହାନଦୀର ଦିଗନ୍ତ ବିସ୍ତାରିତେଉ ଅପର-ତୀରର ପର୍ବତମାଳା ଆଡ଼କୁ ନିର୍ନିଶେଷ ଆଖିରେ ଚାହିଁଲେ ଆତ୍ମହରା ହୋଇଯାଏ ମନ ।

ରଚିକ ଗିରିର ସବୁଜ ଲାବଣ୍ୟ, ରୂପ ସମ୍ଭାର ଏବଂ ସାତ୍ତ୍ୱିକ ପରିବେଶ ସ୍ୱତନ୍ତ୍ର । ସକାଳ ଏବଂ ସନ୍ଧ୍ୟା ସମୟରେ ପାହାଡ଼ ଚୂଡ଼ାରୁ ମହାନଦୀର ଦୃଶ୍ୟ ବେଶ ମନୋହର ।

ରଚିକ ଗିରି - ମହର୍ଷି ଜମଦଗ୍ନିଙ୍କର ତପସ୍ୟାପୀଠ ଥିବା ବେଳେ ଚତୁଃପାର୍ଶ୍ୱ ହରିଡ଼ା, ବାହାଡ଼ା, ଆଙ୍କୁ, ବେଲ, ଯୁଇ, ଜାଇ, ମାଳତୀ ଆଦି ବୃକ୍ଷ ଲତାରେ ପରିଶୋଭିତ ଥିଲା । ରଚିକ ଗିରିର ଆଧ୍ୟାତ୍ମିକ ପରିଭାଷା ସାଧୁସନ୍ୟାସୀ ତଥା ଧର୍ମପ୍ରାଣ ବ୍ୟକ୍ତିମାନଙ୍କ ମନରେ ପ୍ରବଳ ବିଶ୍ୱାସ ସୃଷ୍ଟି କରି ଆସିଛି ।

ଏହି କ୍ଷେତ୍ର ଏକ ମହାନ ତନ୍ତ୍ରକ୍ଷେତ୍ର ଯେଉଁଠାରେକି ତନ୍ତ୍ରଶାସ୍ତ୍ରର ପ୍ରକ୍ରିୟା ପ୍ରାରମ୍ଭ ହୋଇଥିଲା । ଚର୍ଚ୍ଚିକା ମନ୍ଦିର ସଂଲଗ୍ନ ଶୂନ୍ୟ କାଠ ମଣ୍ଡପଟି ପ୍ରାଚୀନ ଚାରୁକଳାର ଏକ ଜ୍ୱଳନ୍ତ ନିଦର୍ଶନ । ଏହା ଓଡ଼ିଶା କାହିଁକି; ସମଗ୍ର ଭାରତ କୌଣସି ମନ୍ଦିରରେ ଦୃଷ୍ଟ ହୁଏ ନାହିଁ । ଏହାକୁ ଶୂନ୍ୟବାହିନୀ ମଣ୍ଡପ କୁହାଯାଏ । ୫୨୮ ଖଣ୍ଡ ଗଡ଼କାଠରୁ ସୃଷ୍ଟ ଏହି ମଣ୍ଡପକୁ ୧୮୨୪ ଖ୍ରୀଷ୍ଟାବ୍ଦରେ ରାଜା ପୀତାମ୍ବର ଶ୍ରୀଚନ୍ଦନ ମହାପାତ୍ର ନିର୍ମାଣ କରାଇଥିଲେ । ବାଙ୍କୀର ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରେ :-

**ମା'ବ୍ରହ୍ମେଇ ଠାକୁରାଣୀ :-**

ମା' ବ୍ରହ୍ମେଇଙ୍କର ଆସ୍ଥାନ ବାଙ୍କୀ ଟାଉନ ଠାରୁ ମାତ୍ର ଏକ କିଲୋ ମିଟର ଦୂର ବାଙ୍କୀ ସୀମର ରାସ୍ତାର ବାମ ପାର୍ଶ୍ୱରେ ଅବସ୍ଥିତ । ଏହି ସ୍ଥାନଟି ସବୁବେଳେ କୋଳାହଳ ପୂର୍ଣ୍ଣ । ବହୁ ବର୍ଷର ଏକ ବିରାଟ ବଟ ବୃକ୍ଷ ମୂଳରେ ମା' ଅବସ୍ଥାପିତା ।

ମା'ପରମ ବୈଷ୍ଣବୀ ହେଲେ ମଧ୍ୟ ତାଙ୍କ ନିକଟରେ ମାଛ ମାଂସ ବଳି ସ୍ୱରୂପ ଭୋଗ କରାଯାଉଛି । ତେବେ ମା'ଙ୍କର ପ୍ରଧାନ ଭୋଗ କ୍ଷୀର ଓ ଲିଆ ।

ସହରର ଜନ ଗହଳି ଠାରୁ ଅଳ୍ପ ଦୂର ଗହୀର ବିଲ ମଧ୍ୟରେ ମା'ଙ୍କର ମନ୍ଦିର ହୋଇଥିବାରୁ ଓ ସେଠାରେ ଭୋଜିଭାତ କରି ଖାଇବା ପାଇଁ ସବୁ ପ୍ରକାର ସୁବିଧା ଥିବାରୁ ସଦାସର୍ବଦା ସେଠାରେ ଜନ ଗହଳି ଲାଗି ରହିଥାଏ ।

**ମହାପର୍ବତ :-**

ମହାପର୍ବତ ବାଙ୍କୀଠାରୁ ୪/୫ ମାଇଲ ଦୂର ଦକ୍ଷିଣ ପଶ୍ଚିମ ଦିଗରେ ଅବସ୍ଥିତ । ସମୁଦ୍ର ପତନ ଠାରୁ ଏହାର ଉଚ୍ଚତା ୧୮୦୦ ଫୁଟ । ମହାପର୍ବତର ନାମ ଅତି ପ୍ରାଚୀନ । ଖ୍ରୀଷ୍ଟୀୟ ୯/୧୦ ଶତାବ୍ଦୀର ତୁଙ୍ଗ ରାଜାମାନଙ୍କର ତମ୍ବାପଟ୍ଟାରେ ମହାପର୍ବତର ନାମ ଉଲ୍ଲେଖ ଅଛି । ପୂର୍ବ କାଳରେ ଏହାର ଶିଖର ଦେଶରେ ଶିବ ପାର୍ବତୀଙ୍କର ମୂର୍ତ୍ତି ସ୍ଥାପିତ ହୋଇ ପୂଜାର୍ଚ୍ଚନା ହେଉଥିଲା ।

ସେତେବେଳେ ମହାପର୍ବତ ନିକଟରେ 'ଋଷିବାସକ' ନାମରେ ଗୋଟିଏ ବ୍ରାହ୍ମଣ ବସତି ଥିଲା । ସେହି ବ୍ରାହ୍ମଣମାନେ ସର୍ବଦା ଯାଗଯଜ୍ଞରେ ବ୍ୟସ୍ତ ରହୁଥିଲେ । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ସାଧୁମାନେ ଆସି ବ୍ରାହ୍ମଣମାନଙ୍କୁ ଯଜ୍ଞରେ ସାହାଯ୍ୟ କରିବା ସହିତ ସେଠାରେ ତପସ୍ୟା କରୁଥିଲେ । ଏହି ପର୍ବତରେ ଷୋହଳଟି ଗୁମ୍ଫା ଥିବାର ପ୍ରମାଣ ପୁରାଣରୁ ମିଳେ । ବୋଧହୁଏ ସାଧୁ ସନ୍ଥମାନେ ଏହି ଗୁମ୍ଫାଗୁଡ଼ିକରେ ବିଶ୍ରାମ କରୁଥିଲେ ।

ପ୍ରତିବର୍ଷ ଏହି ପର୍ବତ ଉପରେ ରାକ୍ଷୀପୂର୍ଣ୍ଣିମାରେ ଏକ ବିରାଟ ମେଳାର ଆୟୋଜନ କରାଯାଉଥିଲା । ଆଜିକାଲି ସେ ସବୁର ପରିବର୍ତ୍ତନ ହୋଇଯାଉଛି । ମେଳାର ଆୟୋଜନ ହେଉନଥିଲେ ମଧ୍ୟ ଶହ ଶହ ସଂଖ୍ୟାରେ ଯୁବକ ମହାପର୍ବତ ଉପରକୁ ଯାଇ ଆନନ୍ଦ ଉପଭୋଗ କରି ଫେରି ଆସୁଛନ୍ତି । ଏବେ ଏହା ଏକ ପରମ୍ପରାରେ ପଡ଼ି ଗଲାଣି ।

**ଅଂଶୁପା :-**

ଅଂଶୁପା ସମଗ୍ର ଏସିଆର ବୃହତ୍ତମ ମଧୁର ଜଳପୂର୍ଣ୍ଣ ହ୍ରଦ । ପ୍ରକୃତିକ ଶୋଭା ପାଇଁ ଏହାର ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ସମସ୍ତଙ୍କୁ ଆକର୍ଷିତ କରେ । ଓଡ଼ିଶାର ଏହାହିଁ ଦ୍ୱିତୀୟ ବୃହତ୍ ହ୍ରଦ । ହ୍ରଦର ଆକାର, ତାହାର ନୀଳ ଜଳ, ହ୍ରଦରେ ଭାସୁଥିବା ଅସଂଖ୍ୟ ଛୋଟ ଛୋଟ ମାଛଧରା ନାଆ, କୂଳର ସବୁଜ ପାହାଡ଼ ସମୂହ । ଅରଣ୍ୟ, ଫୁଲ ଫଳ, ପକ୍ଷୀ, ଶିଳା, ପ୍ରତ୍ୟେକଟି ମିଶି ହ୍ରଦର ଚାରୁଚିତ୍ରପଟ୍ଟ ଅବଲୋକନ ଓ ରତାଗଡ଼ ପାହାଡ଼ ଉପରୁ ମହାନଦୀର ସୂର୍ଯ୍ୟୋଦୟ ଦୃଶ୍ୟ ଏକାନ୍ତ ମନୋରମ ।

ପରିବେଶ ଦୃଷ୍ଟିରୁ ପର୍ଯ୍ୟଟନ ଓ ଭ୍ରମଣ ପାଇଁ ଏହି ସ୍ଥାନଟିର ଯଥେଷ୍ଟ ବିଶେଷତ୍ୱ ରହିଅଛି । ପ୍ରାକୃତିକ ଦୃଶ୍ୟାବଳୀର ଅପରୂପ ସୁଷମା ସମ୍ଭାର ଭିତରେ ଅଂଶୁପାର ମନୋମୁଗ୍ଧକର ଦୃଶ୍ୟକୁ ଯେ ଥରେ ଉପଭୋଗ କରିଛି ସେ ତାହାକୁ ଜୀବନ ମଧ୍ୟରେ କେବେବି ଭୁଲି ପାରିବନି ।

ପାହାଡ଼, ଜଙ୍ଗଲ, ଶସ୍ୟକ୍ଷେତ୍ର, ଗ୍ରାମ୍ୟ ଦୃଶ୍ୟ ସହିତ ବିସ୍ତୀର୍ଣ୍ଣ ଜଳରାଶିର ଏକ ଅପୂର୍ବ ମିଶ୍ରଣର ଅନୁଭୂତି ଏଠାରେ ପର୍ଯ୍ୟଟକ ଓ ଦର୍ଶକର ମନକୁ ବିମୋହିତ କରେ । ଅଂଶୁପା କୂଳରେ ସୂର୍ଯ୍ୟର ପହିଲି କିରଣର ସ୍ପର୍ଶ ପାଇଁ ପଦ୍ମଫୁଲ ସବୁ ନିଜର ପାଖୁଡ଼ାକୁ ଖୋଲି ଦିଅନ୍ତି । ସୂର୍ଯ୍ୟୋଦୟର ସେହି ଦୃଶ୍ୟାବଳୀ ଯେତିକି ମନଲୋଭା; ସୂର୍ଯ୍ୟାସ୍ତର ଗୋଧୂଳି ଲଗ୍ନରେ ସରଣ୍ଡା ପାହାଡ଼ର ଶିଖରରେ ଛିଡ଼ା ହୋଇ ନିରୀକ୍ଷଣକଲେ ଅଂଶୁପା ବକ୍ଷରୁ ମତ୍ସ୍ୟଜୀବୀର ଘର ଫେରନ୍ତା ଦୃଶ୍ୟ ଏବଂ ଶସ୍ୟକ୍ଷେତ୍ରରେ ସାନ୍ଧ୍ୟକାଳୀନ ଦୃଶ୍ୟ ସେତିକି ଆକର୍ଷଣୀୟ ।

ପୂର୍ବେ ଅଂଶୁପାକୁ ଏବଂ ଏହାର ଉଭୟ ପାର୍ଶ୍ୱରେ ରହିଥିବା ଜଙ୍ଗଲକୁ ରାଜାମାନେ ଶିକାର ଓ ନୌକାବିହାର କରିବାକୁ ଆସୁଥିଲେ । ଏହାର ପ୍ରମାଣ ସ୍ୱରୂପ ଆଦି ମଧ୍ୟ ସରଣ୍ଡା ପାହାଡ଼ର ଶିଖର ଦେଶରେ ରାଜାଙ୍କର ଏକ ବିଶାଳ ଗୃହ, ବାରୁଦଘର ଏବଂ ମୁଖ୍ୟ ପଥର ଦ୍ୱାରର ଭଗ୍ନାଶେଷ ଦେଖିବାକୁ ମିଳୁଛି ।

**ରାମନାଥ, ସିଂହନାଥ ଓ ବୈଦ୍ୟନାଥ :—**

ଓଡ଼ିଶାର ସାଂସ୍କୃତିକ, ନୈସର୍ଗିକ ଓ ଆଧାତ୍ମିକ ଚେତନାର ପ୍ରବାହ ପ୍ରତୀକ ମହାନଦୀ ପଶ୍ଚିମରୁ ପୂର୍ବକୁ ଦୁଇ ତଟଦେଶରେ ଅସଂଖ୍ୟ ଐତିହାସିକ ସ୍ମାରକୀ ଧାରଣ କରି ପ୍ରବାହିତ । ଏହି ମହାସ୍ରୋତର ଚନ୍ଦ୍ରହାର ପଦକ ସଦୃଶ ସିଂହନାଥ ମନ୍ଦିର ନଦୀର ମଧ୍ୟସ୍ରୋତର ଦଣ୍ଡାୟମାନ ।

ବୈଦେଶ୍ୱର ବାଙ୍କୀଠାରୁ ପଶ୍ଚିମକୁ ମାତ୍ର ୧୨/୧୩ କିଲୋମିଟର ଦୂରରେ ଅବସ୍ଥିତ । ତ୍ରେତୟା ଯୁଗରେ ରାମଚନ୍ଦ୍ରଙ୍କ ବନବାସ ସମୟରେ 'ତ୍ରିକୂଟ' ଧାମରେ ପ୍ରଭୁ ଶ୍ରୀରାମଚନ୍ଦ୍ର ଚିତ୍ରୋତ୍ପଳା (ମହାନଦୀର ଅନ୍ୟନାମ) କୂଳରେ ଜାନକୀ ଓ ଲକ୍ଷ୍ମଣଙ୍କ ସହିତ ଶିବ ପୂଜା କରିଥିଲେ । ଏହି ସ୍ଥାନର ପ୍ରାକୃତିକ ପରିବେଶରେ ସୀତାଦେବୀ ବିମୋହିତ୍ ହୋଇ ଯାଇଥିଲେ । ତାଙ୍କ ଦ୍ୱାରା ପୂଜିତ ଶିବ ଲିଙ୍ଗଙ୍କ ନାମାନୁସାରେ - ଏସ୍ଥାନ 'ବୈଦ୍ୟନାଥ' ବା ଆଧୁନିକ ବୈଦ୍ୟେଶ୍ୱର ନାମରେ ନାମିତ ହୋଇଥିଲା । ବୈଦ୍ୟେଶ୍ୱରରେ ପୂଜିତ ସେହି ଲିଙ୍ଗତ୍ରୟ - ରାମଚନ୍ଦ୍ରଙ୍କ ନାମାନୁସାରେ 'ରାମନାଥ' ବୈଦେହୀଙ୍କ ନାମାନୁସାରେ 'ବୈଦ୍ୟନାଥ' ଓ ଲକ୍ଷ୍ମଣଙ୍କ ନାମାନୁସାରେ 'ସିଂହନାଥ' ନାମରେ ସେହିକାଳୁ ନାମିତ । ସିଂହନାଥ ମନ୍ଦିର କେଶରୀ ବଂଶର ଏକ ଶାଶ୍ୱତ ଓ ଉଜ୍ଜ୍ୱଳ କୀର୍ତ୍ତି । ଭୁବନେଶ୍ୱରର ରାଜାରାଣୀ ବା ମୁକ୍ତେଶ୍ୱର ମନ୍ଦିରର ଭାସ୍କର୍ଯ୍ୟଠାରୁ ଏହାର ଭାସ୍କର୍ଯ୍ୟ କୌଣସି ଗୁଣରେ କମ୍ ନୁହେଁ । ପୌରାଣିକ ଓ

ଐତିହାସିକ ଉପାଦାନଗୁଡ଼ିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏହାର ନିର୍ମାଣ ଭୁବନେଶ୍ୱରର ଅବସ୍ଥିତି ମନ୍ଦିରମାନଙ୍କର ନିର୍ମାଣର ବହୁ ପୂର୍ବରୁ ହୋଇଥିଲା ।

ଶୈବ ପୀଠ ସିଂହନାଥ ମନ୍ଦିର ଗାତ୍ରରେ ବିଭିନ୍ନ ଆସନାରୂଢ଼ ବୁଦ୍ଧ ଦେବଙ୍କର ମୂର୍ତ୍ତି କାହିଁକି ଯେ ଖୋଦିତ ହୋଇଛି ସେଥିର ରହସ୍ୟ ଐତିହାସିକମାନଙ୍କର ଗବେଷଣାର ବସ୍ତୁ । ପ୍ରାୟ ଅଶୀଫୁଟ ଉଚ୍ଚ ମନ୍ଦିରର ଚତୁପାର୍ଶ୍ୱରେ ଦଶାବତାର, ରାମାୟଣ, ମହାଭାରତର ପୂର୍ଣ୍ଣାଙ୍ଗ ଚିତ୍ରାବଳୀ ତଥା ଅନ୍ୟାନ୍ୟ ବହୁ ଦେବଦେବୀଙ୍କର ମୂର୍ତ୍ତି ଅତ୍ୟନ୍ତ ସଜୀବ ଭଳି ଖୋଦିତ ହୋଇଅଛି ।

ଏହି ତିନିଗୋଟି ମନ୍ଦିର ତିନିଗୋଟି ପାହାଡ଼ରେ ସ୍ଥାପିତ ହୋଇଥିବାରୁ ଏହାର ନାମ 'ତ୍ରିକୂଟ' ରଖାଯାଇଛି । ପୁରାଣ ଓ ଇତିହାସ ପ୍ରସିଦ୍ଧ ଏହି ପବିତ୍ର ତୀର୍ଥସ୍ଥଳୀର ପ୍ରତ୍ୟେକ ଧୂଳିକଣା ପବିତ୍ରତର ହୋଇଛି ପ୍ରଭୁ ଶ୍ରୀରାମ, ଦେବୀ ଜାନକୀ ଓ ଅନୁଜ ଲକ୍ଷ୍ମଣଙ୍କର ପଦକମଳ ସ୍ପର୍ଶରେ ।

**ପାଣ୍ଡବ ବଖରା ଗୁମ୍ଫା** – ଅଜ୍ଞାତ ବନବାସ ସମୟରେ ପାଣ୍ଡବମାନେ ମାତା କୁନ୍ତୀ ଓ ଦ୍ରୌପଦୀଙ୍କର ସହିତ ଡମପଡ଼ା ନିକଟସ୍ଥ ପାଥପୁର ପର୍ବତ ଉପରେ କିଛି କାଳ ବିଶ୍ରାମ କରିଥିଲେ । ସେମାନେ ଯେଉଁ ଗୁମ୍ଫାଗୁଡ଼ିକରେ ବିଶ୍ରାମ ନେଇଥିଲେ ସେଗୁଡ଼ିକ ଏବେ ବି ସୁରକ୍ଷିତ ଅବସ୍ଥାରେ ରହିଛି, ଯାହାକୁ ଦେଖିବାକୁ ପର୍ଯ୍ୟଟକମାନେ ଆଗ୍ରହ ପ୍ରକାଶ କରୁଛନ୍ତି ।

**ଶୁକଭୋଇ ସଂଗ୍ରହାଳୟ** – ପୁତ ପବିତ୍ର ମହାନଦୀ ତଟଦେଶର ସବୁଜ ବନାନୀ ଘେରା ବାଙ୍କୀ ମାଟିର କଳା, ସାହିତ୍ୟ, ସଂସ୍କୃତି ଅତୀବ ପ୍ରାଚୀନ । ବାଙ୍କୀ ମାଟିର ମହାନ୍ କୀର୍ତ୍ତିରାଜିର ଖଣ୍ଡ ବିଖଣ୍ଡିତ ଅଂଶକୁ ସଂଗ୍ରହ କରି - ଭୁବନେଶ୍ୱର କଣ୍ଟିଲୋ ରାଜରାସ୍ତାରେ କଳାପଥର ଠାରୁ ୧ କିଲୋମିଟର ଦୂର ପର୍ଶୁରାମପୁର ଗ୍ରାମରେ 'ଶୁକଭୋଇ ସଂଗ୍ରହାଳୟ' ଅବସ୍ଥାପିତ ।

ସଂଗ୍ରହାଳୟରେ ବିଭିନ୍ନ ପତ୍ର ପତ୍ରିକା, ଦୁଷ୍ପ୍ରାପ୍ୟ ପୁସ୍ତକ ତଥା ମହାଭାରତ, ରାମଲୀଳା, ହରିବଂଶ, ଭାଗବତ ଆଦି ବିରଳ ଚିତ୍ରକାବ୍ୟ ପୋଥି ସଂଗୃହୀତ ହୋଇ ରଖାଯାଇଛି ।

ସଂଗ୍ରହାଳୟର ଚତୁଃପାର୍ଶ୍ୱରେ ଅଁଳା, ବାହାଡ଼ା, ହରିଡ଼ା, ଅଶୋକ, ଅର୍ଜ୍ଜୁନ, ପାପଳ ଗରୁଡ଼, ପ୍ରସନ୍ନ କେଦାର, ରାଧାକେଦାର, ଅନନ୍ତ ମୂଳ ଆଦି ଔଷଧୀୟ ବୃକ୍ଷମାନ ରୋପଣ କରାଯାଇଛି ।

ସଂଗ୍ରହାଳୟ ଭିତରେ ଅଣା, ପାହୁଲା, ଅଧଲା, ରୂପାଟଙ୍କା, ହନୁମାନ ପଇସା, ତଥା ଇଂଲଣ୍ଡ, ଫ୍ରାନ୍ସ, ଜାପାନ, ଜର୍ମାନ, ନେପାଳ, ଆମେରିକା ଆଦିର ବୈଦେଶିକ ମୁଦ୍ରା, ଖଣ୍ଡା, ତଲୱାର, କଟେରୀ, ଫାର୍ସା, ଭୁଜାଲି, ଧନୁଶର ଆଦି ଅସ୍ତ୍ରଶସ୍ତ୍ର । ମାଟି, ପଥର ଓ ପିତ୍ତଳ ମୂର୍ତ୍ତି, ସେତୁବନ୍ଧର ଭାସମାନ ପଥର, ବାଲା, ବଟଫଳ, ପାହୁଡ଼, ନୋଳି, ମଲକଡ଼ି, ଚିତା, ବାହୁଟି, ମଥାମଣି ଆଦି ଅଳଙ୍କାର, ବିଭିନ୍ନ ଜୀବଜନ୍ତୁମାନଙ୍କ ଦାନ୍ତ, ହାଡ, ଶିଙ୍ଘ, ତିମି ମାଛ ଲାଙ୍ଗୁଡ଼, ମାଟିପାତ୍ର, ବାସନକୁସନ, ସାମୁଦ୍ରିକ ଜୀବମାନଙ୍କ ଦେହାବଶେଷ, ହସ୍ତଶିଳ୍ପ, ପେଡ଼ିପାଟରା, ପ୍ରଭୃତି ବହୁ ପୁରାତନ ସାମଗ୍ରୀମାନ ସଂଗୃହୀତ ହୋଇ ରହିଛି ।

ଏହି ସଂଗ୍ରହାଳୟକୁ ଦେଖିବା ପାଇଁ ଦୈନିକ ଅନେକ ଦର୍ଶକ ବିଭିନ୍ନ ପ୍ରାନ୍ତରୁ ଆସୁଛନ୍ତି । ବିଶେଷ କରି ବିଭିନ୍ନ ବିଦ୍ୟାଳୟ ଓ କଲେଜର ଛାତ୍ରଛାତ୍ରୀମାନେ ପରିଦର୍ଶନ କରି ଆନନ୍ଦ ଉପଭୋଗ କରୁଛନ୍ତି ।

ଏତଦ୍ ଭିନ୍ନ ବାଙ୍କୀରେ ଆହୁରି ଅନେକ ଦର୍ଶନୀୟ ସ୍ଥାନ ରହିଛି । ତନ୍ମଧ୍ୟରୁ ସୁନାଦେଇ ମୁଣ୍ଡିଆ, ଡମପଡ଼ାର ଅରଣ୍ୟ ଦେବୀ ଅରାଚଣ୍ଡୀ ଓ ପାଙ୍କଳିମା, କାଳିକା ପ୍ରସାଦର ମହାନଦୀ ଗଡ଼ଖାଇ, ବାଙ୍କୀର ତୋହିତାଶୁଣି । ପାଟପୁରର ସିଂହନାଥ, ଦେବୀଦ୍ୱାର ମନ୍ଦିର, ରଣପୁରର ଢଳେଶ୍ୱର, ଚର୍ଚ୍ଚିକାର ଐଶାନେଶ୍ୱର, ରଘୁନାଥ ଓ ରାଧାକୃଷ୍ଣ ମନ୍ଦିର, ନୃସିଂହ ମନ୍ଦିର, ଶନୈଶ୍ୱର ମନ୍ଦିର, ତାରିଣୀମନ୍ଦିର ପ୍ରମୁଖ ଅନେକ ରହିଛି ।

ସାଧାରଣତଃ ବିବ୍ରତ ମଣିଷ କୃତ୍ରିମ ସବୁଜତାରେ ନିଜକୁ ବାରମ୍ବାର ପ୍ରତାରଣା କରୁଥିବା ବେଳେ; ସ୍ୱର୍ଗୀୟ ଆନନ୍ଦ, ବିଳାସ ଓ ଶାନ୍ତି ଦେଇଥିବା ବାଙ୍କୀ ମାଟିର ଏଇ ନଦନଦୀ, ଦେବଦେବୀ ଓ ବଣ ପାହାଡ଼ର ଚୁମ୍ବକୀୟ ଆତ୍ମୀୟତାକୁ ଝୁରିବ ନିଶ୍ଚୟ ।



# ବାଙ୍କୀର ତ୍ରିକୂଟସ୍ଥ ତ୍ରିନାଥ

*ପ୍ରାଧ୍ୟାପକ ନାରାୟଣ ପ୍ରସାଦ ପଣ୍ଡା*
ଓଡ଼ିଆ ବିଭାଗ ମୁଖ୍ୟ

ଗୁପ୍ତଗଙ୍ଗା ମହାନଦୀର ତଟଦେଶରେ ବାଙ୍କୀ ଉପଖଣ୍ଡ ଅବସ୍ଥିତ । ପୁରାଣ ଓ ଇତିହାସରେ ବାଙ୍କୀ ଉପଖଣ୍ଡର କଳା, ସଂସ୍କୃତି, ଧର୍ମ, ଦର୍ଶନ ଓ ସାହିତ୍ୟର ଗୌରବଗାଥା ବର୍ଣ୍ଣିତ । ରଚିକ ବାସିନୀ ମା' ଚର୍ଚ୍ଚିକା ବାଙ୍କୀ ଉପଖଣ୍ଡର ଆତ୍ମା । ଚର୍ଚ୍ଚିକା ପୀଠର ଦକ୍ଷିଣରେ ଗିରିରାଜ ମହାପର୍ବତ ବିରାଜିତ । ରଚିକ ପର୍ବତର ଉତ୍ତର ଦିଗରେ ଗୁପ୍ତଗଙ୍ଗା ମହାନଦୀ ପ୍ରବହମାନ । ବାଙ୍କୀ ଉପଖଣ୍ଡରେ ପୂର୍ବଭାଗ ସବୁଜ ସୁଷମାରେ ମଣ୍ଡିତ । ବାଙ୍କୀର ପଶ୍ଚିମଦିଗସ୍ଥ ତ୍ରିକୁଟର ତ୍ରିନାଥଙ୍କ ମହିମା ପୁରାଣ ପୃଷ୍ଠାକୁ ମଣ୍ଡନ କରିଛି ।

ମହାନଦୀର ଉଭୟତଟ ଓ ମଧ୍ୟଭାଗ ଦେବାଦେବୀଙ୍କ ଦ୍ୱାରା ଶୋଭିତ । ବୈଦେଶ୍ୱର ଠାରୁ ପୂର୍ବକୁ ଆସିଲେ ଦୃଷ୍ଟିରେ ବହୁଶଃ ଶିବ-ଶକ୍ତି ପୀଠ ଦୃଷ୍ଟି ପଥାରୂଢ଼ ହୁଏ । ବୈଦ୍ୟେଶ୍ୱର ନିକଟସ୍ଥ ମହାନଦୀ ଗର୍ଭରେ ସିଂହନାଥ, ପାର୍ଶ୍ୱରେ ବୈଦ୍ୟନାଥ ଓ ରାମନାଥ ଶୋଭା ପାଉଛନ୍ତି । ଭଟ୍ଟାରିକା, ନୀଳମାଧବ, ବୁଢ଼ାମହାଦେବ, ଦୁର୍ଗା, ସୁନାଦେଈ, ଜଳେଶ୍ୱର, ବାଲୁଙ୍କେଶ୍ୱର, ଐଶାନେଶ୍ୱର, ମା' ଚର୍ଚ୍ଚିକା, ଅଖଣ୍ଡେଶ୍ୱର, ପାଥପୁର ନିକଟସ୍ଥ ଅମଙ୍ଗେଇ କୁଦର ଶିବମନ୍ଦିର, ଶୈବ-ଶାକ୍ତ ଓ ବୈଷ୍ଣବ ଚେତନାର ପରିବାହକ । ସକଳ ଦେବାଦେବୀ ଙ୍କ ଅବସ୍ଥିତି ଯୋଗୁଁ ମହାନଦୀର ନାମ ମର୍ତ୍ତ୍ୟଗଙ୍ଗା ହେବାର ସାର୍ଥକତା ଅଛି ।

ଦେବଦେବୀର ପୂଣ୍ୟଭୂମି ଓଡ଼ିଶାରେ ପ୍ରବହମାନ ଗୁପ୍ତଗଙ୍ଗା ମହାନଦୀର ଉଭୟତଟ ଓ ମଧ୍ୟଭାଗ ଶାକ୍ତଧର୍ମର ପୀଠସ୍ଥଳୀ ଭାବେ ଖ୍ୟାତ । ବାଙ୍କୀ ଉପଖଣ୍ଡ ପ୍ରାଚୀନ ଶୈବ ପୀଠସ୍ଥଳୀ ରୂପେ ବିଦିତ । ବାଙ୍କୀଠାରୁ ଅଠର କିଲୋମିଟର ପଶ୍ଚିମକୁ ଗଲେ ବୈଦ୍ୟେଶ୍ୱର ଗ୍ରାମ ପଡ଼େ । ବୈଦେହୀଙ୍କ ଦ୍ୱାରା ସ୍ଥାପିତ ବୈଦ୍ୟନାଥଙ୍କ ନାମାନୁଯାୟୀ ଗ୍ରାମର ନାମ ବୈଦ୍ୟେଶ୍ୱର ହୋଇଛି । କିମ୍ବଦନ୍ତୀ ଅନୁସାରେ ବନବାସ କାଳରେ ଶିବ ଆରାଧନା ନିମନ୍ତେ ଶ୍ରୀରାମ-ରାମନାଥ, ଲକ୍ଷ୍ମଣ-ସିଂହନାଥ, ବୈଦେହୀ-ବୈଦ୍ୟନାଥ ନାମକ ତିନୋଟି ଲିଙ୍ଗ ସ୍ଥାପନ କରିଥିଲେ ।

**ସିଂହନାଥ :**

ସିଂହନାଥ ମନ୍ଦିର ମହାନଦୀ ମଧ୍ୟସ୍ଥ ଦ୍ୱୀପର ପର୍ବତରେ ସ୍ଥିତ । ସିଂହନାଥ ମନ୍ଦିର, ମନ୍ଦିରମାଳିନୀ ଉତ୍କଳର ସୂକ୍ଷ୍ମସ୍ଥାପତ୍ୟକଳାର ବଳିଷ୍ଠ ନିଦର୍ଶନ । ଐତିହାସିକ କିଟୋ ସାହେବ ଓ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ସିଂହନାଥ ମନ୍ଦିରର ନିର୍ମାଣ ସମୟ ଖ୍ରୀଷ୍ଟିୟ ନବମ ଶତାବ୍ଦୀ ମଧ୍ୟରେ ବୋଲି ମତଦେଇଛନ୍ତି । ମନ୍ଦିର ଗାତ୍ରରେ ଖୋଦିତ ଶିଳ୍ପକଳା ଲିଙ୍ଗରାଜ ମନ୍ଦିରର ଶିଳ୍ପକଳା ସହ ତୁଳନୀୟ । ତ୍ରିରଥ ଶୈଳୀରେ ମନ୍ଦିରଟି ନିର୍ମିତ । ପୂର୍ବାଭିମୁଖୀ ମନ୍ଦିରଟିର ମୁଖଶାଳା ଓ ଜଗମୋହନ ସଂଯୁକ୍ତ ହୋଇଛି । ମୁଖଶାଳା ବୃଷଭ ଦ୍ୱାରା ଶୋଭିତ । ପାର୍ଶ୍ୱ ଦେବତା ଭାବେ ପଶ୍ଚିମରେ ଖଡ୍ଗ ଓ ଧନୁଧାରିଣୀ ଦେବୀ ପାର୍ବତୀ ବିରାଜିତ । ଦକ୍ଷିଣର ଉଭୟ ଗଣେଶ ଓ କାର୍ତ୍ତିକେୟ ମୂର୍ତ୍ତିଦ୍ୱୟ ମନ୍ଦିରସହ ସଂଲଗ୍ନ ପରି ମନେହୁଏ । ଉତ୍ତର ପାର୍ଶ୍ୱ ଶୂନ୍ୟ । ଶୈବ ମନ୍ଦିରର ଏକ ପାର୍ଶ୍ୱ ଶୂନ୍ୟ ଥାଇ ଅନ୍ୟ ପାର୍ଶ୍ୱରେ ଦୁଇଟି ଦେବତାଙ୍କ ଅବସ୍ଥାନ ସମଗ୍ର ଉତ୍କଳର ବିରଳ ।

ମନ୍ଦିର ଗାତ୍ରରେ ଖୋଦିତ ସୂକ୍ଷ୍ମ ସ୍ଥାପତ୍ୟ କଳା ମଧ୍ୟରେ ଦଶାବତାର, ବ୍ରହ୍ମାଙ୍କର ନିକଟରେ ଉପବିଷ୍ଟ ମୁନି, ବିଷ୍ଣୁଙ୍କ ଅନନ୍ତ ଶୟନ, ସମୁଦ୍ରମନ୍ଥନ, ରାକ୍ଷସ ବାନର ଯୁଦ୍ଧ ଓ କନ୍ୟା ବିଦାୟ ପ୍ରଭୃତି ଉଲ୍ଲେଖ ଯୋଗ୍ୟ ।

ମନ୍ଦିର ଗାତ୍ରରେ ମୃଦଙ୍ଗ, ଖଞ୍ଜଣୀ, ଶଙ୍ଖ ଓ ଗିନି ପ୍ରଭୃତି ବାଦ୍ୟଯନ୍ତ୍ରଗୁଡ଼ିକ ଖୋଦିତ ହୋଇଛି । ମନ୍ଦିର ବେଢ଼ାରେ ଅନ୍ନପୂର୍ଣ୍ଣା, ବାଲୁଙ୍କେଶ୍ୱର, ଐଶାନେଶ୍ୱର, ଜମେଶ୍ୱର, ଲୋକନାଥ, ମଲ୍ୟନାଥ, ସୋମନାଥ, ବିଶ୍ୱନାଥ ଓ ନୀଳମାଧବଙ୍କର କ୍ଷୁଦ୍ର କ୍ଷୁଦ୍ର ମନ୍ଦିରମାନ ଅବସ୍ଥିତ । ସୋମନାଥଙ୍କ ଦେଉଳଟି ଆକୃତିରେ କ୍ଷୁଦ୍ର ହେଲେ ମଧ ସିଂହନାଥ ଦେଉଳର ବର୍ଣ୍ଣବିଭା ସହ ତୁଳନୀୟ, ବେଢ଼ା ବାହାରେ ଦକ୍ଷିଣ କାଳୀଙ୍କ ମନ୍ଦିର ବିଦ୍ୟମାନ । ଲକ୍ଷ୍ମଣ ଶର ମୁନରେ କାଳୀ ମୂର୍ତ୍ତି ଖୋଦନ କରି, ସ୍ୱସ୍ଥାପିତ ଲିଙ୍ଗର ଦକ୍ଷିଣ ଦିଗରେ ସ୍ଥାପିତ କରିଛନ୍ତି । ବଡ଼ମ୍ବା ରାଜା ନାରାୟଣ ମଙ୍ଗରାଜ ପର୍ବତର ଅର୍ଦ୍ଧଭାଗରେ ରଘୁନାଥ ମନ୍ଦିର ସ୍ଥାପନ କରିଥିଲେ । ଗୁମ୍ଫା ବହୁଳ ପର୍ବତର ଶୀର୍ଷଦେଶରେ କିମ୍ବଦନ୍ତୀର ସୀତାଖୋଲ ଅବସ୍ଥିତ । ଲକ୍ଷ୍ମଣଙ୍କ ପ୍ରତିଷ୍ଠିତ ସିଂହନାଥ ସହ ସୀତାଖୋଲର ଅବସ୍ଥିତିର କିମ୍ବଦନ୍ତୀ ଓ ଲୋକକଥାର ସତ୍ୟତା ପ୍ରତିପାଦନ କରୁଛି ।

ବଡ଼ମ୍ବାରାଜା ସିଂହନାଥ ମନ୍ଦିରର ସୁପରିଚାଳନା ପାଇଁ ବାଇଶି ବାଟି ଜମି ଖଞ୍ଜାଇ ଦେଇଥିଲେ । ବର୍ତ୍ତମାନ ଦେବୋତ୍ତର ବିଭାଗ ମନ୍ଦିର ସମସ୍ତ କାର୍ଯ୍ୟ ପରିଚାଳନା କରୁଛନ୍ତି । ଠାକୁରଙ୍କ ପ୍ରତିଦିନ ପାଞ୍ଚ ଅବକାଶ ହେଉଛି । ସକାଳେ ବଲ୍ଲଭ ଖେଚଡ଼ି ଓ ତରକାରୀ, ଦ୍ୱିପ୍ରହରରେ ଖେଚଡ଼ି, କ୍ଷୀରୀ, ତରକାରୀ, ଏଣ୍ଡୁରି, କାକରା ଓ କାନ୍ତି । ସଂନ୍ଧ୍ୟାରେ ବଡ଼ସିଂହାର ବେଶ, ରାତିରେ ଅରୁଆ ଅନ୍ନ, ଦହି ଓ ତରକାରୀ ମଣୋହି ହେଉଛି । ସ୍ୱୟଂମ୍ଭୁ ବା ଫୁଟା ଲିଙ୍ଗ ଖ୍ୟାତି ଥିବା ଦେବତାଙ୍କର ପ୍ରତ୍ୟକ୍ଷ କରୁଣା ଲାଭ କରି, ବହୁଭକ୍ତ ଉପକୃତ ହେବାର ଦୃଷ୍ଟାନ୍ତ ଜନଶ୍ରୁତିରେ ପ୍ରତ୍ୟକ୍ଷ । ସିଂହନାଥଙ୍କ ଠାରେ ମକର ସଂକ୍ରାନ୍ତ ଓ କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ବର୍ଷକୁ ଦୁଇଥର ଯାତ୍ରା ଅନୁଷ୍ଠିତ ହୁଏ । ଦୂରଦୂରାନ୍ତରୁ ଅଂସଖ୍ୟ ଯାତ୍ରୀ ଓ ଭକ୍ତଙ୍କ ଆଗମନରେ ସିଂହନାଥ ପୀଠ ମୁଖରିତ ହୁଏ । ମକର ମେଳା ସିଂହାନାଥପୀଠର ବଳିଷ୍ଠ ଆକର୍ଷଣ । ରକ୍ଷଣାବେକ୍ଷଣ ଅଭାବରୁ ମନ୍ଦିରଟି ଜରାଜୀର୍ଣ୍ଣ ହୋଇପଡ଼ିଛି । ଅନିର୍ବଚନୀୟ ପ୍ରାକୃତି ଆଭାର ଭଣ୍ଡାର ସିଂହନାଥ ପର୍ବତ । ପର୍ଯ୍ୟଟନ ପାଇଁ ତ୍ରିକୁଟର ତ୍ରି-ନାଥ ଏକ ପ୍ରଶସ୍ତ କ୍ଷେତ୍ର । ଦୁଃଖ ତଥା ପରିତାପର ବିଷୟ ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ତ୍ରିକୁଟର ତ୍ରିନାଥଙ୍କ ନାମ ଉଲ୍ଲେଖ ହୋଇନାହିଁ । ଓଡ଼ିଶା ସରକାରଙ୍କ ପର୍ଯ୍ୟଟନ ଓ ପ୍ରତ୍ନତତ୍ତ୍ୱ ବିଭାଗର ପ୍ରଯତ୍ନରେ ତ୍ରିକୁଟର-ତ୍ରିନାଥ ଏକ ସାର୍ଥକ ପର୍ଯ୍ୟଟନ କ୍ଷେତ୍ରରେ ପରିଣତ ହେବାରେ ଆଶା ଅଛି ।

**ରାମନାଥ ଓ ଦୁର୍ଗା :**

ରାମନାଥମନ୍ଦିର ବୈଦ୍ୟେଶ୍ୱର ଗ୍ରାମର ପୂର୍ବରେ ଥିବା ପର୍ବତ ଉପରେ ନିର୍ମତ । ପର୍ବତର ଦୁଇଦିଗରୁ ପଥର ପାହାଚ କରାଯାଇ, ଗମନାଗମନର ସୁବିଧା କରାଯାଇଛି । ରାମନାଥ ମନ୍ଦିରରୁ ମହାନଦୀ ତଥା ତା'ର ଚତୁଃପାର୍ଶ୍ୱସ୍ଥ ମନୋହର ଦୃଶ୍ୟ ସନ୍ଦର୍ଶନ କରିହୁଏ । ନିର୍ଜନସ୍ଥଳୀ ହୋଇଥିବାରୁ ପୂଜକ ବା ମାଳି ପୂଜା ସମୟରେ ଆସି, ପୂଜା କାମ ସାରି ଚାଲିଯାଆନ୍ତି । କାର୍ତ୍ତିକ ପୂର୍ଣ୍ଣିମାକୁ ରାମନାଥଙ୍କ ଠାରେ ଏକ ବିରାଟ ଯାତ୍ରା ହୁଏ । ରାମନାଥଙ୍କର ଦୁଇଟି ଧୂପ ହୁଏ । ଦ୍ୱିପ୍ରହରରେ ଖେଚଡ଼ି ଓ କ୍ଷୀରୀ ସଂନ୍ଧ୍ୟାରେ ଅରୁଆ ଅନ୍ନ ଓ ଦହି । ପ୍ରାକୃତିକ ଆଭାରେ ପରିପୂର୍ଣ୍ଣ ରାମନାଥ ମନ୍ଦିର ନିର୍ଜନ ହୋଇଥିବାରୁ, ମୁନି, ଋଷି ଓ ସାଧକମାନଙ୍କର ପ୍ରିୟସ୍ଥଳୀ ।

ରାମନାଥ ପର୍ବତର ପାଦଦେଶରେ ଏକ ପ୍ରାଚୀନ ଦୁର୍ଗା ମନ୍ଦିର ଅବସ୍ଥିତ । 'ଛ' ଫୁଟ ପ୍ରସ୍ଥ, ନ'ଫୁଟ ଦୈର୍ଘ୍ୟ ଓ ଚଉଦ ଫୁଟ ଉଚ୍ଚତା ବିଶିଷ୍ଟ ଦୁର୍ଗାମନ୍ଦିରର ସ୍ଥାପତ୍ୟ ଓ ଶିଳ୍ପକଳା ଦୃଷ୍ଟିରୁ ଅନନ୍ୟ । ଦୁର୍ଗାମନ୍ଦିରର କାରୁକଳା ସୁନ୍ଦର, ମନୋରମ ଓ ଦର୍ଶକର ହୃଦୟଗ୍ରାହୀ । ପଶ୍ଚିମମୁଖୀ ମନ୍ଦିରରେ ଅଧିଷ୍ଠାତ୍ରୀ ଦେବୀ ଦୁର୍ଗା । ଦୁର୍ଗାମନ୍ଦିରର ସମ୍ମୁଖରେ ତିନୋଟି ସିଂହ ଅଦ୍ୟାପି ବିଦ୍ୟମାନ । ମନ୍ଦିରର ବାହ୍ୟ ଶୀର୍ଷସ୍ଥାନରେ ଗଣେଶ ମୂର୍ତ୍ତି ଓ ଉତ୍ତର ଦିଗରେ ହିରଣ୍ୟକଶ୍ୟପୁ ବଧର ଚିତ୍ର ଖୋଦିତ । ପରିତ୍ୟକ୍ତ ମନ୍ଦିରଟି ବର୍ତ୍ତମାନ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସଂରକ୍ଷିତ ହୋଇଛି । ଶିବ ରାତ୍ରିରେ

ରାମନାଥ ମନ୍ଦିର ଭକ୍ତମାନଙ୍କ ସମାଗମରେ ପରିପୂର୍ଣ୍ଣ ହୁଏ । ଭକ୍ତମାନଙ୍କର ଠାକୁରଙ୍କ ଉଦ୍ଦେଶ୍ୟରେ ସମର୍ପିତ ଦୀପାଳି ପର୍ବତର ଶିଖର ଦେଶର ଶୋଭା ବର୍ଦ୍ଧନ କରେ । ଅମାବାସ୍ୟାର ଅମାଅନ୍ଧକାରକୁ ଭକ୍ତି ଦୀପାଳି ଘଉଡ଼ାଇ ଦିଏ ।

**ବୈଦ୍ୟନାଥ :**

ବୈଦ୍ୟନାଥ ମନ୍ଦିର ହାତୀଆ ପାହାଡ଼ର ପାଦଦେଶରେ ଥିବାରୁ ମହାନଦୀର ବଢ଼ିପାଣି ପ୍ରତିବର୍ଷ ମନ୍ଦିର ବେଢ଼ା ସ୍ପର୍ଶକରେ । ପାର୍ଶ୍ୱଦେବଙ୍କ ସହ କପିଳେଶ୍ୱରଙ୍କ ମନ୍ଦିର ଓ ଏକ ଗଭୀର ବାମ୍ଫି ବେଢ଼ାମଧ୍ୟରେ ଅବସ୍ଥିତ । କାର୍ତ୍ତିକ ପୂର୍ଣ୍ଣମୀର ବଡ଼ଓଷା ଏବଂ ଚୈତ୍ରକୃଷ୍ଣ ପକ୍ଷ ଦ୍ୱାଦଶୀ ଦିନ ବୈଦ୍ୟନାଥ ପୀଠର 'ମହାବାରୁଣୀ ଯୋଗ' ପଡ଼େ । ତ୍ରିବେଣୀ ବୁଡ଼ ବା ବାରୁଣୀ ସ୍ନାନ ମାନବର ପାପମୋଚନ କରି ଭାଗ୍ୟୋଦୟ କରାଏ ବୋଲି ପୁରାଣରେ ବର୍ଣ୍ଣିତ । ଦୂରଦୂରାନ୍ତରୁ ବହୁ ମୁକ୍ତିକାମୀଭକ୍ତ ଅଲଭ୍ୟ ସ୍ନାନ ଯୋଗରେ ଯୋଗ ଦେଇଥାନ୍ତି । ପୂର୍ବେ ବଡ଼ମ୍ବା ରାଜାଙ୍କ ପ୍ରଦତ୍ତ ଚାଳିଶ ଏକର ଜମିସଞ୍ଜା ଆକାରରେ ମାଳିମାନେ ଭୋଗ ଦଖଲ କରି, ଦେବଙ୍କର ସମସ୍ତ ବ୍ୟୟ ବହନ କରୁଥିଲେ । ବର୍ତ୍ତମାନ ଦେବୋତ୍ତର ବିଭାଗ ନିର୍ଦ୍ଦେଶରେ ତାହା ପରିଚାଳିତ ହେଉଛି । ବୈଦ୍ୟନାଥଙ୍କ ତିନି ଧୂପ ହୁଏ । ସକାଳେ ବାଳଭୋଗ, ଦ୍ୱିପ୍ରହରରେ ଖେଚଡ଼ି, କ୍ଷୀରୀ ଓ ତରକାରୀ ଓ ରାତ୍ରିରେ ଦହି ପଖାଳ ଲାଗିହୁଏ ।

ତ୍ରିଭୂଜାକୃତିର ତ୍ରିକୂଟର ତ୍ରିନାଥଙ୍କ ସ୍ଥିତି ଅପୂର୍ବ ମନୋରମ । ପ୍ରାକୃତିକ ସୌନ୍ଦର୍ଯ୍ୟଭରା ତ୍ରିକୂଟର ତ୍ରିନାଥଙ୍କୁ ଦର୍ଶନ କଲେ, ଦର୍ଶକ ବିମୁଗ୍ଧ ହୁଏ । ଆଶୁତୋଷ ଅକର୍ମର କର୍ମଦାୟକ । ବର୍ଷର ସବୁ ସମୟରେ ବହୁ ଆର୍ତ୍ତିଭକ୍ତ ନିଜର କାମନା ବାସନା ଚରିତାର୍ଥ ପାଇଁ ନିରାହାରରେ ଅନୁସରଣରେ ରହି ବରପ୍ରାପ୍ତ ହୁଅନ୍ତି । ତ୍ରିକୂଟର ତ୍ରିନାଥ ଦିନେ ଜନମନ ଅପହରଣ କରିବ, ଏଥିରେ ସନ୍ଦେହ ନାହିଁ । ଜୟ ପ୍ରଭୁ ତ୍ରିନାଥ !



-ସହାୟକ ଗ୍ରନ୍ଥସୂଚୀ-

(୧) ଓଡ଼ିଶାର ଦେବାଦେବୀ - ୨ୟ ଭାଗ ।

(୨) ବ୍ରହ୍ମାଣ୍ଡ ପୁରାଣ ୧ମ, ୨ୟ ଓ ୩ୟ ଖଣ୍ଡ ।

(୩) ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ଅନ୍ୱେଷଣ ।

(୪) ସମୟର ସାପ୍ତାହିକ

(୫) ବ୍ରହ୍ମବୈବର୍ତ୍ତ ପୁରାଣ ୧ମ, ୨ୟ ଓ ୩ୟ ଖଣ୍ଡ ।

# କବିତ୍ୱର ଛଳ ଛଳ : ନଟବର ଧଳ ସାମନ୍ତ

ସ୍ନେହସ୍ମିତା ଧଳ

+୨ ବିଜ୍ଞାନ ଦ୍ୱିତୀୟ ବର୍ଷ

''ଶୋଭାପାଏ କି'ରେ ଗଭାରେ ନ ଥିଲେ କେଶ
ସଭାରେ ନ ଥିଲେ ପଣ୍ଡିତ ମଣ୍ଡଳୀ
ରାଜା ଅଭାବରେ ଦେଶ ?
ଭୃଙ୍ଗ ରଙ୍ଗ ଭରେ, ଅଙ୍ଗ ସଂସର୍ଗରେ
ନ ଚୁମ୍ବିଲେ ତାମ ରସ
ଏ ରସ ସରସ, ଭାଷେ ନଟବର
ବିରସ ବଦନେ ହାସ ।''

– ଏହା ହେଉଛି, ବାଙ୍କୀ 'ଡମପଡ଼ା'ର ସୁବିଖ୍ୟାତ କବି ତଥା ଉତ୍କଳର ପାଲା ଗାୟକମାନଙ୍କର ଗୁରୁ-ପ୍ରତିମ ସଂଗୀତକାର ନଟବର ଧଳ ସାମନ୍ତଙ୍କର ଏକ ଅମୃତ ଉଦ୍ଧୃତି । କବି ତ ୧୯୬୦ ସାଲ୍‌ରୁ ପବିତ୍ର ସ୍ୱର୍ଗଧାମରେ, ମାତ୍ର ଓଡ଼ିଶାର ଅଗଣିତ ପାଲାକାରଙ୍କ କଣ୍ଠରେ ସେ ଚିରକାଳ ଅମର ଅଛନ୍ତି ଏବଂ ରହିବେ ।



ପାଲାକବି ନଟବର ଧଳ ସାମନ୍ତ (ଡମପଡ଼ା)

ଡମପଡ଼ାର ନିଜିଗଡ଼ ନିବାସୀ ଏଇ କବିଙ୍କର ଜନ୍ମ ୧୮୭୬ ସାଲ୍‌ରେ । ସେ ବଳରାମ ଧଳଙ୍କର, ପୋଷ୍ୟପୁତ୍ର ଥିଲେ ।

ନଟବର ମାଇନର୍ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ମାତ୍ର ନିଜ ଘରେ, ସେ ଅଭିଧାନ, ଗୀତାଭିଧାନ, ଧ୍ୱନି ମଞ୍ଜରୀ, ଶବ୍ଦମାଳିକା, ଏକାକ୍ଷରୀ କୋଷଠାରୁ ପ୍ରାଚୀନ କାବ୍ୟାବଳୀ ଏବଂ ସଂଗୀତ ଶାସ୍ତ୍ରାଦି ଅଧ୍ୟୟନ କରି ସେଗୁଡ଼ିକରେ ନିପୁଣ ହୋଇ ପାରିଥିଲେ । ତା'ଙ୍କର ସୁପ୍ତ ସୃଜନଶୀଳ ଲେଖକୀୟ ପ୍ରତିଭାକୁ ଏଗୁଡ଼ିକ ବିଚଳିତ କରି ଦେଇଥିଲେ । ଅବଶ୍ୟ ତାହାର ପରିପ୍ରକାଶ ଘଟିଥିଲା ସାମାନ୍ୟ ବିଳମ୍ବରେ । ସେ ସଂପର୍କରେ ପରେ ଆଲୋଚନା କରାଯିବ ।

ଫକୀରମୋହନ ଡମପଡ଼ାର ଦେବାନ୍ ଥିଲାବେଳେ, ନଟବର ଥିଲେ ନକଲ୍ ନବିସ୍ । ଏ ଦିଗରୁ ଉପାର୍ଜନ ସହିତ ନିଜର ପ୍ରାୟ ପନ୍ଦର ଏକର ଜମିରେ ସେ ସ୍ୱଚ୍ଛନ୍ଦରେ ପରିବାର ପ୍ରତିପୋଷଣ କରୁଥିଲେ । ମାତ୍ର ପ୍ରତିଭା କେବେହେଲେ ଗୁପ୍ତ ହୋଇ ରହିପାରେ ନାହିଁ । ତା'ଙ୍କର ବିଦ୍ୱତ୍ତା ଏବଂ ପ୍ରଶସ୍ତି ସଂପର୍କରେ ଡମପଡ଼ାର ରାଜା ସାହେବ ବ୍ରଜେନ୍ଦ୍ର ଭ୍ରମରବର ରାୟ ଜାଣିବାକୁ ପାଇଲେ । ସେତେବେଳେ ରାଜା ବ୍ରଜେନ୍ଦ୍ର ରାଜକୁମାର ଓ ଜେମାମଣିଙ୍କ ନିମନ୍ତେ ଜଣେ ଯୋଗ୍ୟ ଗୃହ ଶିକ୍ଷକ ସନ୍ଧାନରେ ଥିଲେ । ସଂଗେ ସଂଗେ ନଟବରଙ୍କୁ ସେ ସୁଯୋଗ ମିଳିଗଲା । ସୌଭାଗ୍ୟ ସଦାବେଳେ ତାଙ୍କର ପଶ୍ଚାଦ୍ ଧାବନ କରୁଥିଲା । କିଛି କାଳପରେ

ଦେଖାଗଲା, ନଟବର ହେଉଛନ୍ତି ଡମପଡ଼ା ରାଜ ଉଆସର ଅନ୍ୟତମ ପରିଚାଳକ, ଜଣେ ପ୍ରତିପତ୍ତିଶାଳୀ ରାଜ କର୍ମଚାରୀ । ଭଲରେ ମନ୍ଦରେ ରାଜା ସାହେବ ମଧ୍ୟ ତାଙ୍କର ପରାମର୍ଶ ଗ୍ରହଣ କରୁଥିଲେ ।

ରାଜା ବ୍ରଜେନ୍ଦ୍ର ଜଣେ ପାଲାପ୍ରେମୀ ବ୍ୟକ୍ତିବିଶେଷ ଭାବେ ସେତେବେଳେ ସର୍ବତ୍ର ପରିଚିତ ଥିଲେ । ପ୍ରାଚୀନ କାବ୍ୟ ସାହିତ୍ୟ ଏବଂ ସଂଗୀତର ଧାରା ଏହି ପାଲା ମାଧ୍ୟମରେ ହିଁ ରାଜ୍ୟସାରା ଚର୍ଚ୍ଚିତ ହେଉଥିଲା । ସେ କାଳରେ ଏହାଥିଲା ମନୋରଂଜନର ପ୍ରଧାନ ମାଧ୍ୟମ । ସେ ସମୟରେ ସୁପ୍ରତିଷ୍ଠିତ ପାଲାକାରମାନଙ୍କୁ ଡମପଡ଼ା ରାଜା ବିଶେଷ ଭାବେ ଆଦର ଅଭ୍ୟର୍ଥନା ସହିତ ଏକପ୍ରକାର ପ୍ରତିପୋଷଣ ମଧ୍ୟ କରୁଥିଲେ । କଥା ଅଛି, କୌଣସି ପାଲାଦଳ ଯେଉଁ କଖାରୁ ତରକାରୀ ପ୍ରଥମଦିନ ଖାଉଥିଲେ, ସେହି କଖାରୁର ମଞ୍ଜିକୁ ସେମାନଙ୍କ ପାଲା ପରିବେଷଣର ପ୍ରଥମ ଦିନ ହିଁ ମାଟିରେ ପୋତି ଦିଆଯାଉଥିଲା । ସେ ମଞ୍ଜି ଗଛ ହୋଇ ସେଥିରେ କଖାରୁ ଫଳି ପୁନଶ୍ଚ ତରକାରୀ ଯୋଗ୍ୟ ହେଲାଯାଏ, ପୂର୍ବୋକ୍ତ ପାଲାଦଳ ଧାରାବାହିକ ଭାବେ ପ୍ରତ୍ୟହ ପାଲା ପରିବେଷଣ କରୁଥିଲେ । ସବୁଠାରୁ ବଡ଼କଥା ଥିଲା ଯେ, ଗୋଟିଏ ରାତିର ଗୀତକୁ ଅନ୍ୟ ରାତିରେ ପୁଣି ପରିବେଷଣ କରିବା ନିମନ୍ତେ ବାରଣ କରାଯାଉଥିଲା । ଏହି ସବୁ ପାଲା ପ୍ରତିଯୋଗିତାରେ ରାଜାଙ୍କ ପକ୍ଷରୁ ନଟବରଙ୍କୁ ହିଁ ବିଚାରପତି ଭାବେ ପାଲାକାରମାନଙ୍କ ମାନ ନିର୍ଦ୍ଧାରଣ କରିବାକୁ ପଡୁଥିଲା । ଏହାପରେ ସେମାନେ ଯାଇ ପୁରସ୍କୃତ ହେଉଥିଲେ ।

ବାରମ୍ବାର ପାଲା ଦେଖିବାଦ୍ୱାରା ନଟବରଙ୍କ ମଧ୍ୟରେ ସୁପ୍ତ ସୃଜନୀ-ପ୍ରତିଭାର ଅଙ୍କୁରୋଦ୍‌ଗମ ଘଟିଲା । ପାଲାର ଶୈଳୀରେ ସେ ରଚନାକରି ଚାଲିଲେ ଅଗଣିତ ଗୀତ ସଂଗୀତାଦି, ଯାହାସବୁ ସଂପ୍ରତି ଅନେକାଂଶରେ ଉତ୍କଳର ପାଲାକାରମାନଙ୍କର ମୌଖିକ ସଂପତ୍ତି ହୋଇଯାଇଛି । ବେଳେ ବେଳେ, ଚୌର୍ଯ୍ୟ ବୃତ୍ତିରେ ନଟବରଙ୍କ ରଚନାକୁ ଅନ୍ୟ ନାମରେ ଭଣିତା ବି କରାଯାଉଛି । ଏହା ହିଁ କବିର ଦୁର୍ଭାଗ୍ୟ ।

କବି ନଟବରଙ୍କର ପ୍ରକାଶିତ ସଂକଳନଗୁଡ଼ିକ ହେଲା (୧) ପ୍ରବନ୍ଧ-ପୁଷ୍ପଲତା (୨) ମଦନ ମଞ୍ଜରୀ (୩) କାଳିକାନ୍ତ ଚଉତିଶା (୪) ଚିନ୍ତାମଣି ଚଉତିଶା (୫) କାଳିକା ସ୍ତବ (୬) ସୁଭଦ୍ରା ପରିଣୟ (୭) ରାଧାକୃଷ୍ଣ କେଳିକଲ୍ଲୋଳ ଇତ୍ୟାଦି । ଏହି ରଚନା ଚମ୍ପୂଗୁଡ଼ିକ ବର୍ତ୍ତମାନ ଦୁର୍ଲଭ । ଏହି ଆଲୋଚନାରେ କେବଳ 'ପ୍ରବନ୍ଧ ପୁଷ୍ପଲତା'ର କେତେକ ସ୍ମରଣୀୟ ପଦକୁ ଉଦ୍ଧାର କରି କବି-ପ୍ରତିଭାର କିଞ୍ଚିତ-ପରିଚୟ ପ୍ରଦାନ କରାଯାଇଛି । ତାଙ୍କର ଏହି ଗ୍ରନ୍ଥଟି ଶବ୍ଦ ବିନ୍ୟାସ, ଯମକ, ଯତିପାତ, ଅନୁପ୍ରାସାଦି ଅଳଙ୍କାର ଦୃଷ୍ଟିରୁ ଅତ୍ୟନ୍ତ ମନୋଜ୍ଞ ହୋଇପାରିଛି । ଓଡ଼ିଶାର ଅଗଣିତ ସଂଗୀତଜ୍ଞ ଏବଂ ପାଲାଗାୟକମାନଙ୍କର ଏଇଟି ଏକ ଆଦରର ଗ୍ରନ୍ଥ ବୋଲି ଏହା ମୁଖବନ୍ଧରେ ବାଙ୍କୀର ତତ୍କାଳୀନ ମାଜିଷ୍ଟ୍ରେଟ୍ ସ୍ୱର୍ଗତ ଆନନ୍ଦଚନ୍ଦ୍ର ମିଶ୍ର ଉଲ୍ଲେଖ କରିଯାଇଛନ୍ତି ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ମଧ୍ୟରେ ମାନ ଅଭିମାନ ଏବଂ ଲଳିତାଙ୍କର ମଧ୍ୟସ୍ଥତା ହେଉଛି କବି ନଟବରଙ୍କ 'ପ୍ରବନ୍ଧ-ପୁଷ୍ପଲତା'ର ବିଷୟବସ୍ତୁ । କବିସୂର୍ଯ୍ୟ ବଳଦେବ ରଥଙ୍କ କିଶୋର ଚନ୍ଦ୍ରାନନ ଚମ୍ପୂ ବୋଧହୁଏ ଏହି ଗ୍ରନ୍ଥ ରଚନାପାଇଁ କବି ନଟବରଙ୍କୁ ପ୍ରେରଣା ଦେଇଛି । କବି କଳହଂସ ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ସଙ୍ଗୀତାବଳି ମଧ୍ୟ ନଟବରଙ୍କ ଲେଖନୀକୁ ଉନ୍ମାଦିତ କରିଛି । ସର୍ବୋପରି କବିସମ୍ରାଟ ଉପେନ୍ଦ୍ରଭଂଜଙ୍କ ଆଳଙ୍କାରିକତା ମଧ୍ୟ ଅସ୍ପଷ୍ଟ ଭାବରେ କବି ନଟବରଙ୍କର, ଏହି ରଚନାରେ ବାରି ହୋଇପଡ଼େ । ଏ ସବୁ ସତ୍ତ୍ୱେ, କବିଙ୍କର ''ପ୍ରବନ୍ଧ-ପୁଷ୍ପଲତା''ଟି ଅତ୍ୟନ୍ତ ସନ୍ତର୍ପଣରେ ନିଜର ସ୍ୱତନ୍ତ୍ର ସତ୍ତା ବଜାୟ ରଖିପାରିଛି । ନିମ୍ନରେ ପ୍ରଦତ୍ତ କେତେକ ଉଦ୍ଧୃତିରୁ କବି-ପ୍ରତିଭାର ଆକଳନ କରାଯାଇପାରେ ।

ଗୀତ - ୨ (ବନ୍ଦନା)

''ସୁନ୍ଦର-ପୁରନ୍ଦର ହେ
ବିଭୁ କନ୍ଦର ବିହାରୀ
ଖଳକୁଳ - ବିମନ୍ଥନ - ମନ୍ଦର ହେ'

ଗୀତ - ୧୪ (ଶ୍ରୀରାଧାଙ୍କ ପ୍ରତି ଲଳିତା)
''ମନା କରୁଥିଲି ସିନା ଗୋ କିଶୋରୀ
ନଯିବୁ ଯମୁନା ତଟକୁ
କକ୍ଷେ ଧରି ବାରି ଘଟକୁ
ଆସୁଥିଲୁ ଚାହିଁ ବାଟକୁ
x x x x
ହଜାରେ କହିଲେ ଲଜ୍ଜା ଲାଗେ ନାହିଁ
ଧରି ବୁଲେ ତୋ'ର ଫଟକୁ ।''
ଗୀତ - ୧୭ (ଶ୍ରୀରାଧାଙ୍କ ପ୍ରତି ଲଳିତା)
''ପାସୋରି ପାରିବୁ ନାହିଁ ଗୋ କିଶୋରୀ
କାଇଁଚ ମାଳିଆକୁ
ମନ୍ତର ପରାଏ ଅନ୍ତରେ ଶୁଣୁଛୁ
ନୀରଦ କାଳିଆକୁ ।
x x x x
ନଟବର ଚିତ୍ତେ ଚିନ୍ତଇ ନିରତେ
କଦମ୍ବ-ମୂଳିଆକୁ ।''
ଗୀତ - ୭୭ (ଲଳିତା ପ୍ରତି ଶ୍ରୀରାଧା)
''ଥାଉ ଶ୍ୟାମ ଅନୁରାଗ ଗୋ ସଜନି
ଥାଉ ଶ୍ୟାମ ଅନୁରାଗ
ଯୁବତୀ ଜୀବନ ଦଂଶନ କରଇ
ସେ ପବନଖିଆ ନାଗ ଗୋ
ଗୀତ - ୮୦ (ମୂରଲୀ ପ୍ରତି ଶ୍ରୀରାଧା)
'' ତୋ' ଲାଗି ଯମୁନା ମନାରେ କାଳିଆ
ତୋ ଲାଗି ଯମୁନା ମନା
ଅନ୍ତର କରତେ, ମୁଁ ହେଲି ନିରତେ
ଶାଶୁ ନଣନ୍ଦ ବିମନା
କାହିଁକି ନିକୁଞ୍ଜେ ଡାକୁରେ କାଳିଆ
ମୂରଲୀରେ ଧରି ମୋ' ନାଁ ।''
x x x x
ଗୀତ - ୨୬ (ଶ୍ରୀକୃଷ୍ଣଙ୍କ ପ୍ରତି ଲଳିତା)
''ଏ କି ଦଶା କିଶୋରୀର
ଦେଖିଆସ ବଂଶୀଧର ''

ଗୀତ - ୪୯ (ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ)
''ରାଜ ଯୋଷାରେ !
ଆଜି କାହିଁପାଇଁ ବଡ଼ ଘୋଷାରେ ।''
ଗୀତ - ୯୩ (ଶ୍ରୀରାଧା ଶ୍ରୀକୃଷ୍ଣ ମିଳନ)
''ମନୋହର କୁଞ୍ଜେ ଗଜଦନ୍ତ ପଲ୍ୟଙ୍କରେ
ଶ୍ରୀରାଧା ଗୋବିନ୍ଦ ଅତି ପ୍ରମୋଦରେ
ଚନ୍ଦ୍ର ନିଶି ପରିମଳ
ବୃକ୍ଷ ରାଜିରେ ରାଜିତ
ଗଗନ ମଣ୍ଡଳ ।''

ଶ୍ରୀରାଧା ଶ୍ରୀକୃଷ୍ଣ ମିଳନ ସହିତ 'ଭକ୍ତ ପ୍ରାର୍ଥନା', 'ଶ୍ରୀକୃଷ୍ଣଙ୍କ ପ୍ରତି ଭକ୍ତି' ଆଦି ସମୁଦାୟ ୯୬ (ଛୟାନବେ)ଟି ସଂଗୀତର ସମାହାର ହେଉଛି 'ପ୍ରବନ୍ଧ-ପୁଷ୍ପଲତା' ଗ୍ରନ୍ଥଟି । କହିବା ବାହୁଲ୍ୟ ଏଥିରେ ସନ୍ନବେଶିତ ଗୀତଗୁଡ଼ିକ ରୀତିଯୁଗର କବିଗଣଙ୍କ ରଚନା ଶୈଳୀ ଦ୍ୱାରା ପ୍ରଭାବିତ, କବି ସେ ସବୁ ସ୍ପଷ୍ଟ ଭାବରେ ସ୍ୱୀକାର କରିଯାଇଛନ୍ତି ।

କବି ନଟବର ଧଳ ସାମନ୍ତଙ୍କ ସଂପର୍କରେ, ତାଙ୍କର ପ୍ରତିଭା ବିଷୟରେ ବହୁ କିମ୍ବଦନ୍ତୀ ଶୁଣାଯାଏ । ତନ୍ମଧ୍ୟରୁ ମଜ୍ଜା କଥାଟିଏ ଏଠାରେ ଉଦ୍ଧାର, କରାଯାଇପାରେ । କବି ସ୍ନାନ କରିଗଲା ବେଳେ ହାତରେ ଗୋଟାଏ ଗୋଟାଳି ଧରିଥାନ୍ତି । ଅକସ୍ମାତ ସୁନ୍ଦର ଛନ୍ଦାୟିତ ପଦଟିଏ ତାଙ୍କର ମନକୁ ଆନ୍ଦୋଳିତ କଲେ ତତ୍‌କ୍ଷଣାତ୍ ସେ ତା'କୁ ନିଜ କାନ୍ଥ ହେଉ ବା ଅନ୍ୟ କାହାର କାନ୍ଥ ହେଉ ସେଠାରେ ଲେଖିଦିଅନ୍ତି; ପରେ ଭୁଲିଯିବା ଭୟରେ ଅଣ୍ଟାରେ ଗୋଟାଳି ନଥିଲେ, ଗୋଡ଼ି ବା ଅଙ୍ଗାରରେ କାମ ଚଳାଇନିଅନ୍ତି । ନିତ୍ୟକର୍ମ ସମାପନ ପରେ ସେ ସବୁ ସଂଗ୍ରହ କରି ଗ୍ରନ୍ଥରେ ନିବଦ୍ଧ କରନ୍ତି । ଏହି ଗୋଟିଏ ଉଦାହରଣରୁ କବିଙ୍କର ଅହରହ ଛନ୍ଦଛନ୍ଦ କବିତ୍ୱର ପ୍ରମାଣ ମିଳିଥାଏ ।

ସଂପର୍କରେ କବି ମୋ'ର ଅଣଜେଜେ ହୁଅନ୍ତି । ସେହି ମହାନ୍ ପ୍ରତିଭାପ୍ରତି ମୋର ଏଇ ସାମାନ୍ୟ ପ୍ରବନ୍ଧଟି କ୍ଷୁଦ୍ର ଶ୍ରଦ୍ଧାଞ୍ଜଳି ମାତ୍ର । କବିଙ୍କୁ ଶତ ସହସ୍ର ପ୍ରଣାମ ।।



# ଭାଷାରାଜ୍ୟ ପଥଚାରୀ : କୁଞ୍ଜ ବିହାରୀ

*ତ୍ରିନାଥ ପରିଡ଼ା*

+୨ ପ୍ରଥମ ବାଣିଜ୍ୟ ବର୍ଷ

ପ୍ରକୃତି ରାଣୀର ଅପୂର୍ବ ଶୋଭାରାଶି ପରିବେଷ୍ଟିତ ବାଙ୍କୀ ଉପଖଣ୍ଡ ର ଯେଉଁ ମୁଷ୍ଟିମେୟ ମହାନ୍ ପ୍ରତିଭା, ନିଜ ଲେଖନୀର କାଉଁରୀସ୍ପର୍ଶରେ ଓଡ଼ିଆ ସାହିତ୍ୟର ସୁବାସିତ ପୁଷ୍ପ ଉଦ୍ୟାନକୁ ଋଦ୍ଧିମନ୍ତ କରିଥିଲେ, ସେମାନଙ୍କ ମଧ୍ୟରେ ବରୀୟାନ୍ ଶିକ୍ଷାବିତ୍, ଶ୍ରେଷ୍ଠଭାଷାବିତ୍, ସୁଗବେଷକ, ଶଙ୍କାଶୂନ୍ୟ କୃତସଂକଳ୍ପ ଅନୁଶାସନ ପ୍ରିୟ ଅଧ୍ୟାପକ ଏବଂ ସର୍ବୋପରି ଏକ ଧର୍ମଜ୍ଞ ପୁରୋଷତ୍ତମ ବ୍ୟକ୍ତିତ୍ୱର ଦିବଂଗତ ମୂର୍ତ୍ତି ହେଉଛନ୍ତି ଡଃ.କୁଞ୍ଜବିହାରୀ ତ୍ରିପାଠୀ । ସାଧନାରେ ସେ ଜଣେ ନିରଳସ ବ୍ୟକ୍ତିତ୍ୱ । ଓଡ଼ିଆ ଭାଷା, ଲିପି, ଶିଳାଲେଖ ଓ ସାହିତ୍ୟ ଉପରେ ସେ ଯେଉଁ ପୁସ୍ତକ ଓ ସନ୍ଦର୍ଭମାନ ରଚନା କରିଯାଇଛନ୍ତି ତାହା ସାରସ୍ୱତ ଭଣ୍ଡାରରେ ଗୋଟିଏ ଗୋଟିଏ ଉଜ୍ଜ୍ୱଳ ରତ୍ନ । ଦୀର୍ଘଦିନର କଠୋର ସାଧନା ଗବେଷକଙ୍କୁ ସଂପ୍ରତି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ଅପ୍ରତିଦ୍ୱନ୍ଦି ସ୍ରଷ୍ଟା କହିଲେ ଅତ୍ୟୁକ୍ତି ହେବ ନାହିଁ । ବାଙ୍କୀ ଉପଖଣ୍ଡର ପଥୁରୀପଡ଼ା ଅଞ୍ଚଳରେ ୪ ସେପ୍ଟେମ୍ବର ୧୯୧୧ ମସିହାରେ ଏହି ମହାନ୍ ବ୍ୟକ୍ତିଙ୍କର ଜନ୍ମହୁଏ । ପିତା ମହାଦେବ ତ୍ରିପାଠୀ ଓ ମାତା ସୀତାଦେବୀଙ୍କର ସେ ଥିଲେ ଆଜ୍ଞାବହ ଯୋଗ୍ୟ ସନ୍ତାନ । ପିତା ମହାଦେବ ତ୍ରିପାଠୀଙ୍କର ଧୀରସ୍ଥିର ଭାବ ଏବଂ ମାତା ସୀତା ଦେବୀଙ୍କର ସ୍ନେହଶୀଳା ହୃଦୟର ପ୍ରତିଟି ଆବେଗ ଡଃ ତ୍ରିପାଠୀଙ୍କର ସୂକ୍ଷ୍ମ ରକ୍ତବିନ୍ଦୁରେ ଏଭଳି ନିମଜ୍ଜିତ ହୋଇଥିଲା, ତାହା ପରବର୍ତ୍ତୀ ସମୟରେ ତାଙ୍କର ଛାତ୍ରବତ୍ସଳତାରୁ ବେଶ୍ ଅନୁମାନ ହୁଏ ।



ଭାଷାବିତ୍ କୁଞ୍ଜବିହାରୀ ତ୍ରିପାଠୀଙ୍କ ବାସଗୃହ (ପଥୁରୀପଡ଼ା)

ଡଃ ତ୍ରିପାଠୀଙ୍କର ଶିକ୍ଷା ବିକାଶର ପ୍ରାଥମିକ ଅନୁଷ୍ଠାନ ହେଉଛି ପଥୁରୀପଡ଼ା ନିକଟସ୍ଥ ବରପୁଟ ନିମ୍ନ ପ୍ରାଇମେରୀ ବିଦ୍ୟାଳୟ । ୧୯୨୮ ମସିହାରେ ବାଙ୍କୀ ଡମପଡ଼ା ହାଇସ୍କୁଲରୁ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାସ୍ କରିବା, ତାଙ୍କ ଶିକ୍ଷାଜୀବନ ଗଠନର ଭିତିପ୍ରସ୍ତର । ଏହାପରେ ଓଡ଼ିଶାର ଐତିହାସିକ ମହାବିଦ୍ୟାଳୟ ରେଭେନ୍ସା ଥିଲା ଡଃ ତ୍ରିପାଠୀଙ୍କର ପ୍ରତିଭା ବିକାଶର ପ୍ରମୁଖ ସ୍ଥଳୀ । ବି.ଏ. ସଂସ୍କୃତ ଅନର୍ସ ପ୍ରଥମ ଶ୍ରେଣୀରେ ପ୍ରଥମ, ଏମ୍.ଏ. ପ୍ରଥମଶ୍ରେଣୀରେ ପ୍ରଥମ (ପାଟ୍ନା ବିଶ୍ୱବିଦ୍ୟାଳୟ) (୧୯୩୪), ବି.ଏଲ୍‌ରେ ଦ୍ୱିତୀୟ ଶ୍ରେଣୀ (୧୯୩୭) ପିଏଚ୍.ଡ଼ି. ଲଣ୍ଡନ ବିଶ୍ୱବିଦ୍ୟାଳୟ (୧୯୫୩); ଏ ସମସ୍ତ ଥିଲା ସାଧକଙ୍କର ନିରଳସ ସାଧନାର ଗୋଟିଏ ଗୋଟିଏ ମାଇଲି ଖୁଣ୍ଟ । ଜୀବନର ପ୍ରତିଟି ସମୟ କଟାଇ ଦେଇଛନ୍ତି ଅଧ୍ୟାପନା ଓ ଗବେଷଣା ବୃତ୍ତିରେ ।

**ଗବେଷକ ରତ୍ନ :**

ଡଃ. କୁଞ୍ଜବିହାରୀ ତ୍ରିପାଠୀ ନିଜ ଜୀବନ କାଳର ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ ସମୟ କେବଳ ଗବେଷଣାରେ ଉତ୍ସର୍ଗୀକୃତ । ଦେଶ ବିଦେଶରେ ଓଡ଼ିଆ ଶିଳାଲିପି ସମ୍ବନ୍ଧୀୟ ଗବେଷଣା ପାଇଁ ପ୍ରଶଂସିତ ଓ ଆଦୃତ । ପ୍ରାଚୀନ ଓଡ଼ିଆ ଭାଷା ଓ ଲିପିର ବିବର୍ତ୍ତନ ପୁସ୍ତକରେ ମୁଖ୍ୟତଃ ଖ୍ରୀଷ୍ଟାବ୍ଦ ୧୦୭୭ ରୁ ବା ଗଙ୍ଗ ବଂଶ ରାଜତ୍ୱରୁ ଆରମ୍ଭ କରି ରାଜା ମୁକୁନ୍ଦଦେବଙ୍କ ପର୍ଯ୍ୟନ୍ତ ବା ୧୫୬୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପ୍ରାୟପାଞ୍ଚ ଶହ ବର୍ଷର ଓଡ଼ିଆ ଅଭିଲେଖଗୁଡ଼ିକୁ ନେଇ ବିଚାର କରିଛନ୍ତି । ଏଗୁଡ଼ିକ ଓଡ଼ିଆ ଭାଷା ଓ ଲିପି ଉପରେ ଆଲୋକପାତ କରିବା ଛଡ଼ା ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ ମଧ୍ୟ ଏକାଧିକ ଦିଗରୁ ଆଲୋକିତ କରୁଛି । ଡଃ.ତ୍ରିପାଠୀ ଯେପରି ଭାବେ ଏହି ଅଭିଲେଖାଗୁଡ଼ିକର ସମୟ ନିରୂପଣ କରିଛନ୍ତି, ସେଥିରୁ ଓଡ଼ିଶା ଇତିହାସର ଗୌରବଜ୍ଜଳ ପାଞ୍ଚଶତ ବର୍ଷର ଇତିହାସ ଅତି ସୁନିର୍ଦ୍ଦିଷ୍ଟ ଭାବେ ଚିହ୍ନିତ ହୋଇଛି । ଓଡ଼ିଆ ଭାଷାରେ ବିଧିବଦ୍ଧଭାବେ ଅଭିଲେଖ ଲିଖିତ ହେବା ଆରମ୍ଭ ଠାରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ମୁଖ୍ୟତଃ ଚାରୋଟି ପ୍ରକାରର ଲିପି ବ୍ୟବହୃତ ହେବାର ଦେଖାଯାଏ । ଯାହାକୁ ଡଃ. ତ୍ରିପାଠୀ ସମୟାନୁକ୍ରମେ ଏହି ଭାବରେ ବିଭକ୍ତ କରିଛନ୍ତି –

(୧) ଦକ୍ଷିଣ କଳିଙ୍ଗିଲିପି – ୧୧ଶ ଶତାବ୍ଦୀ (ଏହାକୁ ସେ ଦକ୍ଷିଣ ନାଗରୀ ବୋଲି ନାମିତ କରିଛନ୍ତି)

(୨) ପ୍ରାକ୍-ଓଡ଼ିଆଲିପି – ୧୧ଶରୁ ୧୪ ଶ ଶତାବ୍ଦୀ (ପରେ ସେ ଏହାକୁ ପ୍ରାକ୍-ବଙ୍ଗଳା ଲିପି ବୋଲି କହିଛନ୍ତି)

(୩) ପ୍ରାଚୀନ ଓଡ଼ିଆ ଲିପି – ୧୪ଶରୁ ୧୬ଶ ଶତାବ୍ଦୀ

(୪) ଆଧୁନିକ ଓଡ଼ିଆ ଲିପି – ୧୬ଶ ଶତାବ୍ଦୀରୁ ଏପର୍ଯ୍ୟନ୍ତ

'ପ୍ରାଚୀନ ଓଡ଼ିଆ ଅଭିଲେଖ' ପୁସ୍ତକଟି ଡଃ.ତ୍ରିପାଠୀଙ୍କର ଅନ୍ୟଏକ ଅମୂଲ୍ୟ ସୃଷ୍ଟି । ଏହି ପୁସ୍ତକରେ ପ୍ରାଚୀନ ଓଡ଼ିଆ ଅଭିଲେଖ ସମ୍ବନ୍ଧୀୟ ପ୍ରକାଶିତ ବିଭିନ୍ନ ସୁଚିନ୍ତିତ ମତାମତ ।

**ପୋଥି ସଂପାଦନାର ବରେଣ୍ୟ ସ୍ରଷ୍ଟା :**

ଓଡ଼ିଆ ସାହିତ୍ୟର ପ୍ରାଥମିକ ସୃଷ୍ଟି କାବ୍ୟ, ମହାକାବ୍ୟ, ଖଣ୍ଡକାବ୍ୟ, ଗୀତିକାବ୍ୟ ଓ ପୁରାଣ ପ୍ରଭୃତି ଅନେକ ସୃଷ୍ଟି ଲୁଚି ରହିଛି ଗଦାଗଦା ତାଳପତ୍ର ପୋଥି ମଧ୍ୟରେ । ଓଡ଼ିଆ ସାହିତ୍ୟର ପ୍ରଥମ ସମାଲୋଚକ ସ୍ୱର୍ଗତଃ ଆର୍ତ୍ତବଲ୍ଲଭ ମହାନ୍ତି ନିଜର ମୁଷ୍ଟିମେୟ ଛାତ୍ରଙ୍କ ଜରିଆରେ କେତେକ ତାଳପତ୍ର ପୋଥି ସଂଗ୍ରହ ଓ ସଂପାଦନା କରିଥିଲେ । ଯାହାକି ଓଡ଼ିଆ ସାହିତ୍ୟର ସଂପାଦନା କଳାକ୍ଷେତ୍ରରେ ପ୍ରଥମ ପଦକ୍ଷେପ । ଏହି ସୁଯୋଗ୍ୟ ଛାତ୍ରମାନଙ୍କ ମଧ୍ୟରେ ଡଃ. କୁଞ୍ଜବିହାରୀ ତ୍ରିପାଠୀ ଥିଲେ ଜଣେ ଅନନ୍ୟ ପ୍ରତିଭା । ଜଣେ ସୁଗବେଷକ ଭାବେ ଖ୍ୟାତି ଅର୍ଜ୍ଜନ କରିଥିବା ଡଃ.ତ୍ରିପାଠୀ ମହୋଦୟ ପୋଥି ସଂପାଦନା କ୍ଷେତ୍ରରେ ବେଶ୍ ପରିଚିତ । ସଂପାଦନା କ୍ଷେତ୍ରରେ ଅତି ପ୍ରାଞ୍ଜଳ ଏବଂ ପଦଟୀକାଗୁଡ଼ିକରେ ପ୍ରାଚୀନ ପୋଥିଗୁଡ଼ିକ ଲୋକଲୋଚନକୁ ଆଣିପାରିଥିଲେ । ସଂପାଦନା ପୋଥିଗୁଡ଼ିକ ହେଉଛି – ଧର୍ମପଦ, 'କୁମାରସମ୍ଭବମ୍' (୫ମସର୍ଗ), 'ଭାଗବତ ସୂକ୍ତି ମୁକ୍ତାବଳୀ', 'ପ୍ରାଚୀନ ଓଡ଼ିଆ ଗଦ୍ୟ ସଂକଳନ', 'ଉତ୍କଳୀୟ କବିବିଭୂତି' (ନାଗରୀ ଲିପିରେ ଓଡ଼ିଆ କବିତା) ।

ଏତଦ୍ ବ୍ୟତୀତ ଡଃ.ତ୍ରିପାଠୀ ଭାଷା ଓ ଲିପି ସମ୍ବନ୍ଧୀୟ କେତୋଟି ଇଂରାଜୀ ପୁସ୍ତକ ଲେଖିଛନ୍ତି, ଯାହାକି ବିଶ୍ୱଦରବାରରେ ଉଚ୍ଚ ପ୍ରଶଂସିତ । ସେଗୁଡ଼ିକ ହେଉଛି –

The Evolution of Oriya Language And Script.
(Utkal University, Cuttack(1962)
A Brief History of Oriya Literature
(Bijay Book Store, Berhampur(1972)
A Brief Review of History of Oriya Literature
(Sahitya Akademi, New Delhi (1973)

ବାଙ୍କୀ ଉପଖଣ୍ଡର ଏକ ଅବହେଳିତ ଗ୍ରାମ ପଥୁରୀପଡ଼ା ସ୍ୱର୍ଗତ ଡକ୍ଟର୍ କୁଞ୍ଜବିହାରୀଙ୍କ ଜନ୍ମସ୍ଥାନ ହେତୁ ଓଡ଼ିଆ ଜାତିର ଅନ୍ୟତମ ସାରସ୍ୱତ ତୀର୍ଥରେ ପରିଣତ ହୋଇପାରିଛି ।

# ଯଶସ୍ୱୀ ଏକାଙ୍କିକାର : ପ୍ରାଣବନ୍ଧୁ କର

*ସୁନୀତି ତନୟା ସାମନ୍ତରାୟ*
ବରିଷ୍ଠ ଅଧ୍ୟାପିକା - ଓଡ଼ିଆ ବିଭାଗ

କାଳୀଚରଣଙ୍କ ପରେ ଅର୍ଥାତ୍ ଯୁଦ୍ଧୋତ୍ତର ଓ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ନାଟକର ଅଭାବ ଓ ଦୋଷତ୍ରୁଟି ଯେଉଁ କେତେକ ଉଦୀୟମାନ, ଲବ୍ଧପ୍ରତିଷ୍ଠ ନାଟ୍ୟକାରଙ୍କ ଦ୍ୱାରା ଦୂରୀଭୂତ ଓ ପରିମାର୍ଜିତ ହୋଇଛି; ସେମାନଙ୍କ ମଧ୍ୟରେ ଅନ୍ୟତମ ସ୍ରଷ୍ଟା ଅଧ୍ୟାପକ ପ୍ରାଣବନ୍ଧୁ କର । ଆଧୁନିକ ଓଡ଼ିଆ ସାହିତ୍ୟରେ ଜଣେ ଯଥସ୍ୱୀ ଲେଖକ ଭାବରେ ସ୍ୱର୍ଗତ କର ସୁପ୍ରତିଷ୍ଠିତ । ପ୍ରାକ୍ ସ୍ୱାଧୀନତା କାଳରୁ ସେ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଥିଲେ । ଏହି ପ୍ରତିଭାଧର ଶିଳ୍ପୀଙ୍କର ଜନ୍ମ ୧୯୧୪ ମସିହାରେ କଟକ ଜିଲ୍ଲା ଅନ୍ତର୍ଗତ ବାଙ୍କୀ ଉପଖଣ୍ଡର ଡମପଡ଼ାରେ ୧୯୪୧ ମସିହାରୁ ସେ ଓଡ଼ିଶାର ଶିକ୍ଷା ବିଭାଗର ଯୋଗଦେଇ ଅଧ୍ୟାପନା ବୃତ୍ତି କରିବା ସଂଗେ ସଂଗେ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ମଧ ମନୋନିବେଶ କରିଆସିଥିଲେ । ସେ ଏକାଧାରାରେ ଜଣେ ଗାଳ୍ପିକ, ନାଟ୍ୟକାର ଓ ଏକାଂକିକା ରଚୟିତା ।



ଏକାଙ୍କିକାକାର ପ୍ରାଣବଂଧୁ କରଙ୍କ ବାସଗୃହ (ଡମପଡ଼ା)

ପ୍ରାଣବନ୍ଧୁ କରଙ୍କର ସୃଷ୍ଟିସଂଭାର ପରିମାଣାତ୍ମକ ଦୃଷ୍ଟିରୁ ଅଙ୍ଗୁଳିମେୟ ହେଲେ ହେଁ ଗୁଣାତ୍ମକ ଦୃଷ୍ଟିରୁ ଏହାର ମୂଲ୍ୟାୟନ କରିବା ସହଜସାଧ୍ୟ ବ୍ୟାପାର ନୁହେଁ । ସେ ଯେପରି ପୂର୍ଣ୍ଣାଙ୍ଗ ନାଟକମାନ ରଚନା କରି ଆଧୁନିକ ମଣିଷର ଜଟିଳ ମାନସିକତାର ରହସ୍ୟ ଉନ୍ମୋଚନ କରିଅଛନ୍ତି । ସେହିପରି ବହୁ ଏକାଙ୍କିକା ରଚନା କରି ଆଧୁନିକ ବ୍ୟସ୍ତ ମଣିଷର ଖଣ୍ଡିତ ଜୀବନର ବହୁବିଧ ଭାବାନୁଭୂତିକୁ ଚକିତ ଉଦ୍‌ଭାସିତ କରିଅଛନ୍ତି । ୧୯୬୮ ମସିହାରେ କେନ୍ଦ୍ର ସଂଗୀତ ନାଟକ ଏକାଡ଼େମୀ ଦ୍ୱାରା ତାଙ୍କର 'ଆଶାନ୍ତ' ନାଟକଟି ଶ୍ରେଷ୍ଠ ପାଣ୍ଡୁଲିପି ଭାବରେ ପୁରସ୍କାର ଲାଭ କରିଥିଲା । 'ଅଶାନ୍ତ' ନାଟକଟି ଯେପରି ବୁଦ୍ଧିଦୀପ୍ତ, ସେହିପରି ସରସ ଓ ସାର୍ଥକ । 'ଶ୍ୱେତପଦ୍ମା' ମଧ୍ୟ ତାଙ୍କର ଆଉ ଏକ ବିଶିଷ୍ଟ କଳାକୃତି । ଓଡ଼ିଆ ନାଟ୍ୟସାହିତ୍ୟରେ କାହିଁକି ସର୍ବଭାରତୀୟ ସ୍ତରରେ ସୁଦ୍ଧା ତାଙ୍କର ଏକାଂକୀ ନାଟକ 'ଶ୍ୱେତପଦ୍ମା' ଏକଦା ଆଲୋଡ଼ନ ସୃଷ୍ଟି କରିଥିଲା । ଓଡ଼ିଆ ନାଟ୍ୟସାହିତ୍ୟରେ ଯେଉଁ କେତେଜଣ ନାଟ୍ୟକାର ପ୍ରତିଷ୍ଠିତ ଉପନ୍ୟାସଗୁଡ଼ିକୁ ନାଟ୍ୟରୂପ ପ୍ରଦାନ କରିଅଛନ୍ତି ସେମାନଙ୍କ ମଧ୍ୟରେ ପ୍ରାଣବନ୍ଧୁ କର ଅନ୍ୟତମ । ସେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର 'ମାଟିର ମଣିଷ' ଉପନ୍ୟାସକୁ ସଫଳ ନାଟ୍ୟରୂପ ପ୍ରଦାନ କରିଅଛନ୍ତି ।

ପ୍ରାଣବନ୍ଧୁ କରଙ୍କର ପ୍ରତିଭା ବହୁମୁଖୀ ହେଲେ ହେଁ ଏକାଙ୍କିକାରେ ତାଙ୍କର କୃତିତ୍ୱ ବୋଧହୁଏ ସର୍ବାପେକ୍ଷା ଅଧିକ । ସାଂପ୍ରତିକତା ତାଙ୍କର

ଏକାଂକିକାର ମୂଳ ପରିଚୟ ବହନ କରେ । ଚଳନ୍ତି କାଳର ବହୁ ଘଟଣା ଦୁର୍ଘଟଣା ସହିତ ମଣିଷ ମନୋରାଜ୍ୟରେ ସଂଘଟିତ ବହୁ ବିରୋଧାତ୍ମକ ଚିନ୍ତାଧାରାର ପ୍ରତିଲିପି ତାଙ୍କର ପ୍ରତ୍ୟେକଟି ଏକାଙ୍କିକା । ମନେହୁଏ, କାଳୀଚରଣ ପଟ୍ଟନାୟକ, ହରେକୃଷ୍ଣ ମହତାବ, ମନୋରଂଜନ ଦାସଙ୍କ ପରେ ଓଡ଼ିଆ ସାହିତ୍ୟର ଏହି ସ୍ୱତନ୍ତ୍ର ବିଭାଗଟି ଅଧିକ ସମୃଦ୍ଧ ଓ ଋଦ୍ଧିମନ୍ତ ହେବାପାଇଁ ବୋଧହୁଏ ଅପେକ୍ଷା କରି ରହିଥିଲା ପ୍ରାଣବନ୍ଧୁଙ୍କର ଲେଖନୀକୁ । ତାଙ୍କର ଏକାଙ୍କିକାଗୁଡ଼ିକରେ ଲଘୁ ହାସ୍ୟରସ ମାଧ୍ୟମରେ ପ୍ରଚ୍ଛନ୍ନ ବ୍ୟଙ୍ଗ ଓ ବିଦ୍ରୂପର ଅବତାରଣା କରାଯାଇଛି । ଚରିତ୍ରର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଓ ବିକାଶ ମାଧ୍ୟମରେ କାହାଣୀକୁ ଅଧ୍ୟାପକ କର ଗତିଶୀଳ କରାଇଛନ୍ତି । ତାଙ୍କର 'ନିଶିପଦ୍ମ' ଓ 'ଅଶାନ୍ତଗ୍ରହ' କେବଳ ଓଡ଼ିଶାରେ ନୁହେଁ, ଓଡ଼ିଶା ବାହାରେ ମଧ୍ୟ ଅଭିନୀତ ହୋଇ ଅନ୍ୟ ଭାଷାଭାଷୀମାନଙ୍କର ଦୃଷ୍ଟିକୁ ଆକର୍ଷଣ କରିବାରେ ସମର୍ଥ ହୋଇପାରିଛି ।

ଆଜି ଜୀବନ କ୍ରମେ ଜଟିଳ ହୋଇପଡୁଛି । ଜୀବନର ସେହି କ୍ରମବର୍ଦ୍ଧିଷ୍ଣୁ ଜଟିଳତା ମଧ୍ୟରେ ମଣିଷମନ କ୍ରମେ ଜଟିଳତର ହୋଇପଡୁଛି । ତେଣୁ ଆଜି ମନର ଏହି ଜଟିଳ ବଳୟକୁ ଭାଙ୍ଗି ତା'ର ଦିଗନ୍ତ ଭିତରେ ପ୍ରବେଶ କରିବାକୁ ହେଲେ ନାଟ୍ୟ ରଚନା ଓ ଆଙ୍ଗିକରେ ଏକ ବିପୁଳ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ଏକଥା ବୁଝିଥିଲେ ସ୍ରଷ୍ଟା ପ୍ରାଣବନ୍ଧୁ । ତେଣୁ ତାଙ୍କର ରଚିତ ଏକାଙ୍କିକା ସବୁରେ କାହାଣୀ ଯେତିକି ବଳିଷ୍ଠ, ଚରିତ୍ର ସେତିକି ବାସ୍ତବାଭିମୁଖୀ । ଯଥାର୍ଥରେ ''ପ୍ରାଣବନ୍ଧୁ କର ଓଡ଼ିଆ ଏକାଙ୍କିକା କ୍ଷେତ୍ରରେ ଏକ ସ୍ମରଣୀୟ ନାମ । ତାଙ୍କ ରଚନାର ଲଘୁସ୍ୱରଟି ସହଜରେ ଦର୍ଶକ ଏବଂ ପାଠକ ଉଭୟଙ୍କୁ ପ୍ରଭାବିତ କରିଥାଏ । ଗ୍ରାମ୍ୟ ଓ ନଗର ଉଭୟ ପରିବେଶ ତାଙ୍କର ଏକାଂକିକାଗୁଡ଼ିକରେ ସାର୍ଥକ ଭାବରେ ରୂପାୟିତ ହୋଇଛି । ବିଷୟବସ୍ତୁ ନିର୍ବାଚନରେ ଅଭିନବତ୍ୱ ତାଙ୍କର ଲୋକପ୍ରିୟତାର ଏକ ପ୍ରଧାନ କାରଣ । ତାଙ୍କର ଏକାଙ୍କିକା ସଂକଳନରେ 'ଦୂରପାହାଡ଼', 'ଶିଶୁ' ପ୍ରଭୃତି ଏକାଙ୍କିକା, ଚରିତ୍ରଚିତ୍ରଣର ନବୀକରଣରେ ତଥା ନାଟକୀୟ ସଂଳାପର ଅପୂର୍ବ ବିନ୍ୟାସରେ ଅନବଦ୍ୟ । ବିଶେଷ ଭାବେ ଦୁର୍ଗମ ମଣିଷ ମନର ସ୍ୱରୂପ ବିଶ୍ଳେଷଣରେ ଓଡ଼ିଆ ନାଟକ କ୍ଷେତ୍ରରେ କେବଳ ମନୋରଂଜନ ଦାସଙ୍କ ସହିତ ହିଁ ତାଙ୍କୁ ତୁଳନା କରାଯାଇପାରେ ।

(–ଅଧ୍ୟାପକ ହେମନ୍ତକୁମାର ଦାସ)

''ସୁପ୍ରତିଷ୍ଠିତ ଏକାଙ୍କିକା ଲେଖକ ପ୍ରାଣବନ୍ଧୁ କରଙ୍କର ପ୍ରାୟ ସମସ୍ତ ଏକାଙ୍କିକାରେ ବାସ୍ତବବାଦର ସ୍ପର୍ଶ ସ୍ପଷ୍ଟ । ବିଷୟବସ୍ତୁ ଓ ଚରିତ୍ର ନିର୍ବାଚନରେ ସେ ଯେପରି କୁଶଳୀ ସେହିପରି ବାସ୍ତବଧର୍ମୀ । ଦ୍ୱନ୍ଦ୍ୱରେ ଅବତାରଣା ଓ ଚରିତ୍ରମୁଖୀ ସଂଳାପ ଦେବାରେ ସେ ଆଶାନୁରୂପ ନାଟକ ପ୍ରଦର୍ଶନ କରିଅଛନ୍ତି । ତାଙ୍କର ଅଧିକାଂଶ ଲେଖା ଅନୁଭୂତି ରସାଣିତ, ତେଣୁ ପାଠକ କିମ୍ବା ଶ୍ରୋତା ନିକଟରେ ତାହା ଜୀବନ୍ତ ।''

(– ବୀରକିଶୋର ଦାସ, ଯୁଗେ ଯୁଗେ ନାଟ୍ୟସାହିତ୍ୟ)

ଓଡ଼ିଆ ସାହିତ୍ୟର ଲବ୍ଧ ପ୍ରତିଷ୍ଠିତ ନାଟ୍ୟକାର ଅଦ୍ୱୈତ ଚନ୍ଦ୍ର ମହାନ୍ତି ପ୍ରାଣବନ୍ଧୁଙ୍କର ଏକାଙ୍କିକା ସଂକଳନରେ ମୁଖବନ୍ଧରେ ଲେଖିଛନ୍ତି –''ଦିନକର ଗୋଟିଏ ଛୋଟଘଟଣା କି ମୁହୂର୍ତ୍ତକର ଗୋଟିଏ ଛୋଟଭାବନା ଯାହାକୁ କି ଆମେ ପ୍ରାୟ ମନେରଖୁ ନାହିଁ, ତାକୁ ସବୁ ନାଟକୀୟ ଢ଼ଙ୍ଗରେ ଆମ ଆଗରେ ସ୍ପଷ୍ଟ କରିଥିଅନ୍ତି ଏକାଙ୍କିକାର ଲେଖକ । ଅର୍ଥାତ୍ ପୂର୍ଣ୍ଣାଙ୍ଗ ନାଟକରେ ବିଭିନ୍ନ ବିଭାଗ ତହିଁରେ ଖୋଜିଲେ ମିଳେନାହିଁ । ଏହା କମ୍ ବାହାଦୂରୀ ନୁହେଁ । ରଙ୍ଗମଞ୍ଚ ଏଙ୍କାକିକାକୁ ଗ୍ରହଣ ନ କରିପାରେ, ହେଲେ ଏହାକୁ ଗ୍ରହଣ କରିଥାଏ ଆମ ମନ । ସେଥିପାଇଁ ମୁଁ କହିବି ସାର୍ଥକ ଏକାଙ୍କିକା ଏକ ଅଭିନବ ସୃଷ୍ଟି । ଆଉ ଗୋଟିଏ କଥା – ଛୋଟ ଭାବନା ତ ଚଳିବ, ଯେବେ ଯେଉଁ ଭାବନାର ଚେରଥିବ, ଆମର ସବୁଦିନିଆ ମଣିଷଙ୍କ ଭିତରେ ସେଇ ଭାବନାର ଏକ ଅତି ଛୋଟ ଅଂଶ ମଧ୍ୟ ଆମମାନଙ୍କୁ ଦୋହଲେଇ ଦେବ । ସେହିପରି

ଜୀବନରେ ଘଟଣା ତ ଘଟିଥାଏ କେତେ – କିଏ ଅପ୍ରତ୍ୟାଶିତ କିନ୍ତୁ ଅଦ୍ଭୁତ କିନ୍ତୁ ବଡ଼ ଘଟଣାରେ ଢ଼ଙ୍କା ପଡ଼ିଥିବା ଗୋଟିଏ ଅତି ଦେହସୁ ଆ ଛୋଟିଆ ଘଟଣାକୁ ପୁଣି ଥରେ କେହି ମନେ ପକାଇ ଦେଲେ ଆମ ମନ କହେ – 'ଆରେ' । କଥା ଅଟକିଯାଏ, ମନ ଭିତରେ ଉଠେ ଢ଼େଉ । ପ୍ରାଣବନ୍ଧୁଙ୍କ ଏକାଙ୍କିକାରେ ସେଇ 'ଢ଼େଉ'ର ଅନୁଭୂତି ମିଳିଥାଏ ।''

ଏଥିରୁ ପ୍ରତିପାଦିତ ହୁଏ ପ୍ରାଣବନ୍ଧୁଙ୍କ ଏକାଙ୍କିକାଗୁଡ଼ିକ ଯେପରି ନାଟକୀୟ, କଳାମଣ୍ଡିତ, ସେହିପରି ଜୀବନର ଖଣ୍ଡାଂଶର ଭାବ-ସଂପଦରେ ସମୃଦ୍ଧ । 'ମହ୍ୟା', 'ଶୋଭାବର୍ଦ୍ଧନ', 'ବାସ୍ତବ', 'ପାଗଳ ଜନତାର ବାହାରେ', 'ଦର୍ଶବର୍ଷ ପରେ', 'ପ୍ରବୀର ଦାସ', 'ଶିଳ୍ପୀର ମୃତ୍ୟୁ', 'କିଛି ନାହିଁ ସେଥିରେ', 'ସଂଧ୍ୟା ଆସରର ଭୂତ', 'ଶିଶୁ', 'ଦୂର ପାହାଡ଼', 'ରାମଚନ୍ଦ୍ରର ସାଧନା' ଆଦି ବିଭିନ୍ନ ଏକାଙ୍କିକା ସବୁ ପ୍ରାଣବନ୍ଧୁଙ୍କ ନାଟ୍ୟପ୍ରତିଭାର ଯଥାର୍ଥ ନିଦର୍ଶନ ପ୍ରଦାନ କରିଥାଆନ୍ତି ।

''ପ୍ରାଣବନ୍ଧୁଙ୍କର ରଚନାକୃତିରେ ପାତ୍ର-ପ୍ରାତ୍ରୀମାନଙ୍କର ମନୋବିଶ୍ଳେଷଣ ଓ ଫ୍ରୟେଡ଼ିୟାନ୍ ମନୋବିଶ୍ଳେଷଣର ଆଶ୍ରୟରେ ତାଙ୍କର ଗଳ୍ପ ଓ ଏକାଙ୍କିକାଗୁଡ଼ିକ ନୂତନ ରୁଚିର ଆସ୍ୱାଦ ବହନ କରିଥାଏ । ଭାଷାର ସହଜ-ସରଳ-ସ୍ୱାଭାବିକତା ଓ ବର୍ଣ୍ଣନାର ନିପୁଣ ଆଲେଖ୍ୟ ଅଙ୍କନରେ ତାଙ୍କର ତୀର୍ଯ୍ୟକ୍ ପ୍ରକାଶଭଙ୍ଗୀ ପାଠକକୁ ଅନେକତ୍ର ବିମୋହିତ କରିଥାଏ ।''

(– ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ, ଡଃ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ ,ପୃ -୨୬୮)

'ସଂଧ୍ୟା ଆସରର ଭୂତ' ତାଙ୍କ ରଚିତ ଏକ ଅବିସ୍ମରଣୀୟ ଏକାଙ୍କିକା । ଏହାର କାହାଣୀରୂପ ସର୍ବପ୍ରଥମେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା ଏବଂ ଏହାର ଲୋକପ୍ରିୟତା ହିଁ ଏହାକୁ ନାଟକରୂପ ଦେବାକୁ ନାଟ୍ୟକାରଙ୍କୁ ଉତ୍ସାହିତ କରିଥିଲା । ରହସ୍ୟମୟୀ ନାରୀର ମନ ଗହନର କାହାଣୀ ହିଁ ଏହି ନାଟିକାଟିରେ ବିଶ୍ଳେଷିତ କରାଯାଇଛି । ପରିବେଶର ଚାପରେ ମରମତଳର ଆକାଂକ୍ଷା କିଭଳି ଅନେକ କ୍ଷେତ୍ରରେ ପ୍ରକାଶିତ ହୋଇପାରେ ନାହିଁ, ଫଳରେ ମନୁଷ୍ୟ ଜୀବନରେ କିଭଳି ନାନା ପ୍ରକାର ଜଟିଳତାର ସୃଷ୍ଟି ହୋଇଥାଏ, ତାହା ହିଁ ଏହି ନାଟିକାଟିର ନାୟକ ନାୟିକା ଉଭୟଙ୍କର ଜୀବନରେ ପ୍ରମାଣିତ ହୋଇଛି । ଫ୍ରଏଡ଼ୀୟ ତତ୍ତ୍ୱର ବିଶ୍ଳେଷଣ ନାଟ୍ୟକାର ସ୍ତ୍ରୀ ଚରିତ୍ର ମାଧ୍ୟମରେ କରିଛନ୍ତି ।

'ଲଛମା', 'ମାମୁ', 'ଛମାଣ ଆଠଗୁଣ୍ଠ', 'ମାଟିର ମଣିଷ' ଉପନ୍ୟାସକୁ ସଫଳ ନାଟ୍ୟରୂପ ଦେଇ ସେ ଯଥେଷ୍ଟ ଖ୍ୟାତି ମଧ୍ୟ ଅର୍ଜନ କରିଛନ୍ତି । ତାଙ୍କର ସର୍ବଶ୍ରେଷ୍ଠ ନାଟକୀୟକୃତି 'ଅଶାନ୍ତ' ଗୋଟିଏ ମାତ୍ର ଦୃଶ୍ୟପଟ୍ଟ ଉପରେ ଅଧାରିତ । ଏଥିରେ ନାହିଁ ବିରତି କିମ୍ବା ଅଙ୍ଗସଜ୍ଜାର ଅବକାଶ । ଜଣେ କଳାକାରର ଜୀବନ ଉପରେ ଏହା ଆଧାରିତ । ଯଥାର୍ଥରେ ବହୁ ଏକାଙ୍କିକା ରଚନା କରି ପ୍ରାଣବନ୍ଧୁ କର ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ବାସ୍ତବତଃ ସେ ହିଁ ଓଡ଼ିଆ ଏକାଙ୍କିକାରରେ ବୈପ୍ଳବିକ ପରିବର୍ତ୍ତନ ସୃଷ୍ଟି କରିଥିଲେ । ତେବେ ଶୈଳୀ ସଂଯୋଜନା ଦୃଷ୍ଟିରୁ ନାଟ୍ୟକାର ଚେଷ୍ଟା କରିଛନ୍ତି ନିଜକୁ ପରଂପରାର ଗଡ୍‌ଡାଳିକା ପ୍ରବାହରୁ ମୁକ୍ତ କରି ନୂତନତ୍ୱ ପ୍ରଦର୍ଶନ ଲାଗି ।

କଳାର ମାନଦଣ୍ଡରେ ପ୍ରାଣବନ୍ଧୁଙ୍କର ନାଟକ ସବୁ ଯେ ସାର୍ଥକତାର ବାର୍ତ୍ତାବହ, ଏଥିରେ କାହାରି କିଛି କହିବାର ନାହିଁ । ଭାଷାର ସହଜ ସରଳ ସ୍ୱାଭାବିକତା ଓ ବର୍ଣ୍ଣନାର ନିପୁଣ ଆଲେଖ୍ୟ, ଅଙ୍କନରେ ତାଙ୍କର ତୀର୍ଯ୍ୟକ୍ ପ୍ରକାଶଭଙ୍ଗୀ ପାଠକକୁ ବିମୋହିତ କରିଥାଏ । ଶ୍ରୀ କରଙ୍କର ଅମର ଲେଖନୀ ଓଡ଼ିଆ ସାହିତ୍ୟକୁ ଯଥେଷ୍ଟ ଋଦ୍ଧିମନ୍ତ ଯେ କରିଛି, ଏଥିରେ ସଂଦେହର ଅବକାଶ ନାହିଁ ।



# ସେବାର ଭୂମି ବାଙ୍କୀ

ବଳରାମ ମହାପାତ୍ର
+୩ କଳା ପ୍ରଥମ ବର୍ଷ (ଶିକ୍ଷା ସମ୍ମାନ)

ଦାରିଦ୍ର୍ୟ ସହ ଜଡ଼ିତ ବିଭିନ୍ନ ସମସ୍ୟାର ସମାଧାନ ଦିଗରେ ଜନସାଧାରଣଙ୍କ ଭାଗୀଦାରିକୁ ସୁନିଶ୍ଚିତ କରିବା, ଉନ୍ନତ ଜୀବନଧାରଣ ପାଇଁ ଜନସଚେତନତା ସୃଷ୍ଟି କରିବା ଏବଂ ସ୍ଥାନୀୟ ସମସ୍ୟା ତଥା ଉନ୍ନୟନ ଦିଗରେ ଆଗେଇ ଯିବା ଆଦି କାର୍ଯ୍ୟକ୍ରମକୁ ସମାଜ କଲ୍ୟାଣ ବୋଲି କୁହାଯାଇପାରେ । ତେଣୁ ସେବା ମନୋବୃତ୍ତିସମ୍ପନ୍ନ ଆଭିମୁଖ୍ୟ ନେଇ କାର୍ଯ୍ୟ କରିବା ଦ୍ୱାରା ଦାରିଦ୍ର୍ୟ ଉନ୍ମୂଳନ କାର୍ଯ୍ୟକ୍ରମ ସଫଳ ହୋଇପାରିବ । ଏହି ଆଭିମୁଖ୍ୟ ଗ୍ରହଣ କ୍ଷେତ୍ରରେ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର କେତେକ ନିର୍ଦ୍ଦିଷ୍ଟ ନୀତି ଓ ଆଦର୍ଶ ରହିଛି । ସେମାନଙ୍କର ସାମାଜିକ କାର୍ଯ୍ୟ କରିବାର ଦାୟିତ୍ୱବୋଧ ଏବଂ ନିର୍ମଳ ଚରିତ୍ର ରହିବା ସହିତ ମାନସିକ ସ୍ତରରେ ଏହି ସବୁ କାର୍ଯ୍ୟ କରିବାର ଦାୟିତ୍ୱବୋଧ ଏବଂ ନିର୍ମଳ ଚରିତ୍ର ରହିବା ସହିତ ମାନସିକ ସ୍ତରରେ ଏହି ସବୁ କାର୍ଯ୍ୟ କରିବାକୁ ଭଗବାନ୍ ମୋତେ ପଠାଇଛନ୍ତି ବୋଲି ସେମାନଙ୍କୁ ଭାବିବାକୁ ପଡ଼ିବ । ସ୍ୱେଚ୍ଛାସେବୀମାନେ ଅନୁଷ୍ଠାନ ସହ ଜଡ଼ିତ ରହି ଯେକୌଣସି ପରିସ୍ଥିତି ମଧ୍ୟରେ କାର୍ଯ୍ୟ କରିବାର ମନନଶୀଳତା ରଖିବା ଆବଶ୍ୟକ । କାର୍ଯ୍ୟ କ୍ଷେତ୍ରରେ ଘଟୁଥିବା ଏବଂ ଘଟିବାକୁ ଥିବା ସମସ୍ୟା ସମୂହକୁ ମୁକାବିଲା କରିବା ପାଇଁ ସକ୍ଷମ ହେବା ଆବଶ୍ୟକ । ଦେଶ ତଥା ରାଜ୍ୟରେ ଘଟୁଥିବା ଦୈବୀଦୁର୍ବିପାକ ଯଥା ବନ୍ୟା, ବାତ୍ୟା, ମରୁଡ଼ି, ମହାମାରୀ, ଭୂମିକମ୍ପ ଓ ଘରପୋଡ଼ି ଆଦି ବିପର୍ଯ୍ୟୟ ବେଳେ ତୁରନ୍ତ ସେବା ଲୋକମାନଙ୍କୁ ଯୋଗାଇ ଦେବାପାଇଁ ଆଗେଇ ଆସିବା ଏବଂ ଆବଶ୍ୟକସ୍ଥଳେ ସେବା କାର୍ଯ୍ୟ କରିବା ବ୍ୟତୀତ ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ବାଳ ଆଶ୍ରମ, କୁଷ୍ଠ ଆଶ୍ରମ, ଜରାନିବାସ, ସେବାଶ୍ରମ, କନ୍ୟାଶ୍ରମ, ବିଧବା ସେବା ପ୍ରତିଷ୍ଠାନ, ଶିଶୁଶ୍ରମିକ ଶିକ୍ଷାକେନ୍ଦ୍ର ଓ ବୃକ୍ଷରୋପଣ ଆଦି ଅନେକ କାର୍ଯ୍ୟକ୍ରମ ପରିଚାଳନା କରିଥା'ନ୍ତି । ଏହିସବୁ କାର୍ଯ୍ୟ କରିବାପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ସରକାରଙ୍କଠାରୁ ଅନୁଦାନ ପାଇଥା'ନ୍ତି । ସେବା ପାଇଁ ଅନେକ ବ୍ୟକ୍ତି ବିଶେଷ ମଧ୍ୟ ସାହାଯ୍ୟ ଦିଅନ୍ତି । ଆମ ଭାରତବର୍ଷରେ ଏହି ସବୁ ଆଦର୍ଶରେ ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କ ମଧ୍ୟରେ ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ, ରାମକୃଷ୍ଣ ମିଶନ୍ ଆଶ୍ରମ, ବାବା ଆମେତଙ୍କ ପରିବେଶ ସୁରକ୍ଷା ପ୍ରତିଷ୍ଠାନ ଆଦି କାର୍ଯ୍ୟ ଜାରି ରଖିଛନ୍ତି ।

ଏହି ପରିପ୍ରେକ୍ଷୀରେ ଆମ ବାଙ୍କୀ ଅଞ୍ଚଳର ଅନେକଗୁଡ଼ିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଦୀର୍ଘଦିନ ଧରି ସେବା କାର୍ଯ୍ୟ କରିଆସୁଛନ୍ତି । ପୁଣ୍ୟତୋୟା ମହାନଦୀ କୂଳରେ କଟକ ଜିଲ୍ଲାର ବାଙ୍କୀ ଏକ ଛୋଟ ଉପଖଣ୍ଡ । ବାଙ୍କୀର ଚତୁଃସୀମା ବକ୍ର ଥିବାରୁ ଓ ବାଙ୍କୀର ଆରାଧ୍ୟା ଦେବୀ ''ବକ୍ରେଶ୍ୱରୀ'' ଅଧିଷ୍ଠିତ ଥିବାରୁ ଏହାର ନାମ 'ବାଙ୍କୀ' ବୋଲି ପରିଚିତ । ଦୁଇଟି ବ୍ଲକ୍‌ର ୩୪ଟି ଗ୍ରାମପଞ୍ଚାୟତ ଏବଂ ଗୋଟିଏ ଅଧିସୂଚିତ କ୍ଷେତ୍ର ପରିଷଦର ୧୬୬ ଗୋଟି ରାଜସ୍ୱ ଗ୍ରାମକୁ ନେଇ ବାଙ୍କୀ ଗଠିତ । ଦେଶ ସ୍ୱାଧୀନ ହେବା ପରେ ପରେ ବାଙ୍କୀରେ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ୧୮୮୦ ମସିହାର ''ସୋସାଇଟ୍ ରେଜିଷ୍ଟ୍ରେସନ୍'' ଆଇନ୍‌ର ଧାରା ୨୧ ଅନୁସାରେ ଅନୁବନ୍ଧିତ ହୋଇ କାର୍ଯ୍ୟ କରୁଛନ୍ତି । ୧୯୫୦ ମସିହାଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ ବାଙ୍କୀରେ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠିତ ହୋଇ କାର୍ଯ୍ୟ ଆରମ୍ଭ କଲେ । ବାଙ୍କୀ ରାମଚନ୍ଦ୍ରପୁର

ଗ୍ରାମରେ ପ୍ରଥମେ ପ୍ରତିଷ୍ଠିତ ହେଲା ''କୃଷକ ସେବା ଲାଇବ୍ରେରୀ'' ନାମକ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ । ଉକ୍ତ ଅନୁଷ୍ଠାନର ମୁଖ୍ୟ କାର୍ଯ୍ୟ ଥିଲା, କୃଷି ଓ କୃଷକର ବିକାଶ, ଗ୍ରାମାଞ୍ଚଳରେ କୃଷକ କଲ୍ୟାଣମୂଳକ ଯୋଜନାର ସଚେତନତା ବୃଦ୍ଧି ଓ ସାଂସ୍କୃତିକ କାର୍ଯ୍ୟକ୍ରମ । ଏହି ଅନୁଷ୍ଠାନକୁ ପରିଚାଳନା କରୁଥିଲେ ସର୍ବଶ୍ରୀ ହଳଧର ମହାପାତ୍ର, ପୁରନ୍ଦର ଗୋଚ୍ଛି ଓ ନରହରି ଛାଟୋଇ ଆଦି ଅନେକ ସ୍ୱେଚ୍ଛାସେବୀଗଣ । ସେହିପରି ବାଙ୍ଗୀ ଶିମିଳିପୁର ଗ୍ରାମରେ ପ୍ରତିଷ୍ଠିତ ହେଲା ''ପଲ୍ଲୀ ବିକାଶ'' ନାମକ ଏକ ସଙ୍ଗଠନ । ଶ୍ରୀ ଶ୍ୟାମସୁନ୍ଦର ସାହୁ ଓ ସୁଦାମ ଚରଣ ନାୟକଙ୍କ ନେତୃତ୍ୱରେ ଗଠିତ ଉକ୍ତ ଅନୁଷ୍ଠାନ କୃଷକ କଲ୍ୟାଣ, ବୃକ୍ଷରୋପଣ ଆଦି ଅନେକ ଗୁଡ଼ିଏ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ । ପଣ୍ଡାଳମରେ ପଲ୍ଲୀମଙ୍ଗଳ ଯୁବକ ସଂଘ, ତାଳବସ୍ତରେ ଏକ ନାଟ୍ୟ ସଂସଦ, ଘାସିପୁଟଠାରେ ଚର୍ଚ୍ଚିକା ଶିଶୁ ସେବା ସଦନ ଓ ବାଙ୍କୀ ଟାଉନ୍ କ୍ଲବ୍ ଆଦି ଅନେକ ସ୍ୱେଚ୍ଛାସେବୀ ସଙ୍ଗଠନ ସେହି ସମୟରେ ସେବା କାର୍ଯ୍ୟକ୍ରମ କରୁଥିଲେ ।

୧୯୭୦ ମସିହା ପରେ ବାଙ୍କୀର ପୁରପଲ୍ଲୀରେ ଅନେକଗୁଡ଼ିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠନ ହୋଇପାରିଛି । ସେମାନଙ୍କ ମଧ୍ୟରୁ କେତେକଙ୍କ ନାମ ଓ କାର୍ଯ୍ୟକ୍ରମ ସମ୍ବନ୍ଧରେ ଏଠାରେ ଆଲୋକପାତ କରାଯାଉଛି । ବାଙ୍କୀ ବ୍ଲକ୍‌ର ବ୍ରହ୍ମପୁରା ଗ୍ରାମରେ 'ଆମରି ଗାଁ ଯୁବ ପରିଷଦ ।' ମା' ସାରଳା ଯୁବ କ୍ଲବ୍, ଜନ କଲ୍ୟାଣ କ୍ଲବ୍, ନେହେରୁ ଯୁବ ପରିଷଦ, ନେତାଜୀ ଯୁବ ସଂଗଠନ, ନବଜ୍ୟୋତି ଯୁବ ସଙ୍ଗଠନ, ଗ୍ରାମ୍ୟ କଲ୍ୟାଣ ଯୁବ ସଂଗଠନ, ରମାଦେବୀ ମହିଳା ସମିତି ଓ ବିବେକାନନ୍ଦ ଯୁବ ଆସୋସିଏସନ, କିଆପଲ୍ଲୀ ଗ୍ରାମରେ ପଲ୍ଲୀ ପ୍ରଗତି କ୍ଲବ୍ ଓ ନବଜ୍ୟୋତି କ୍ଲବ୍, ନୂଆଗାଁରେ ବୀଣାପାଣି କ୍ଲବ୍ ଓ ଶିବଶକ୍ତି କ୍ଲବ୍, କୁମୁସରରେ ପଲ୍ଲୀ ପ୍ରଗତି କ୍ଲବ୍, ନରଣପୁରରେ ପଲ୍ଲୀବିକାଶ କ୍ଲବ୍ ଓ ରାଣୀ ଶୁକଦେଈ କ୍ଲବ୍, ଢେଙ୍ଗାଆମ୍ବଠାରେ ଆଦିବାସୀ ମହିଳା ସମିତି, ପଣ୍ଡାଳମଠାରେ ପଲ୍ଲୀମଙ୍ଗଳ ଯୁବକ ସଂଘ, ରତ୍ନରେଖା ଯୁବକ ସଂଘ, ସତ୍ୟ ଶାନ୍ତି କ୍ଲବ୍, ପଲ୍ଲୀମଙ୍ଗଳ ପାଠାଗାର ଓ ଉଗ୍ରତାରା ପାଠାଗାର, ପାଣିକୋଇଲ୍ ଗ୍ରାମରେ ମା'ଭୂଆଷୁଣୀ କ୍ଲବ୍ ଓ ଗୋପବନ୍ଧୁ କ୍ଲବ୍, ଗହିରିଗାଡ଼ିଆ ଗ୍ରାମରେ ଆଦିଶକ୍ତି ଆଦିବାସୀ କ୍ଲବ୍, ଜୟଦୁର୍ଗା ଆଦିବାସୀ କ୍ଲବ୍ ଓ ମା' ଜଗତ ଜନନୀ କ୍ଲବ୍, ବରପୁଟ ଗ୍ରାମରେ ପଲ୍ଲିଶ୍ରୀ ଯୁବଚକ୍ର, ପଲ୍ଲିଶ୍ରୀ ପାଠାଗାର, ବିବେକାନ୍ଦ ସାଂସ୍କୃତିକ ପରିଷଦ ଓ ଆଞ୍ଚଳିକ ଜନକଲ୍ୟାଣ ମହିଳା ସମିତି, ପାଥପୁର ଗ୍ରାମରେ ତ୍ରିନାଥ କ୍ଲବ୍, ପଶାଣିଆଁ ଗ୍ରାମରେ ବିଶ୍ୱତରଙ୍ଗ କ୍ଲବ ମହାତ୍ମା କ୍ଲବ୍, ପଥୁରୀପଡ଼ାରେ ବାଲୁଙ୍କେଶ୍ୱର ମହିଳା ସମିତି ଓ ଦିବ୍ୟଜ୍ୟୋତି କ୍ଲବ୍, କାଳିପୋଇ ଗ୍ରାମରେ ନୃସିଂହନାଥ କ୍ଲବ୍, ଖଜୁରୀପଦାରେ ନେତାଜୀ କ୍ଲବ୍, କରଡ଼ାପଲ୍ଲୀରେ ଜୟ ମା ଭବାନୀ ମହିଳା ସମିତି ଓ ଜଗବନ୍ଧୁ ପାଠାଗାର, କଳାପଥର ଗ୍ରାମରେ ଚନ୍ଦ୍ରଶେଖର କ୍ଲବ୍ ଓ ନେତାଜୀ ଛାତ୍ର ସଂସଦ, କୃଷ୍ଣପଲ୍ଲୀରେ ନେତାଜୀ କ୍ଲବ୍, ଲେମ୍ଭେରୀ ଗ୍ରାମରେ ବିବେକାନନ୍ଦ ଯୁବକ ସଂଘ ଓ ମିନତି ମହିଳା ସମିତି । ମଧୁଆପଲ୍ଲୀରେ ମା' ବରଡାଳିଆ ଯୁବକ ସଂଘ, ଖଳିପଲ୍ଲୀରେ ଶ୍ରୀ ଶ୍ରୀ ନୀଳକଣ୍ଠ ଦେବ କିଶୋର କ୍ଲବ୍, ଗୁରେଇପଲ୍ଲୀରେ କ୍ରିଷ୍ଣା କ୍ଲବ୍, କୁରୁମ ଚୈନିରେ ନବଜ୍ୟୋତି କ୍ଲବ୍, ଅନ୍ଧାରୁଆରେ ଜାତୁମୟ କ୍ଲବ୍, ସାଁପୁରରେ ମା' ଚୌରାଶିଆ ଦିଗ୍‌ବିଜୟୀ କ୍ଲବ୍ ଓ ତ୍ରିନାଥ କ୍ଲବ୍, ରଜୀବରେ ମା'ଭବାନୀ ଜନସେବା କ୍ଲବ୍ ଓ ମା' ଭଗବତୀ ଡାଇମଣ୍ଡ୍ କ୍ଲବ୍, ଗୋଳାଗଣ୍ଡରେ ଜୟପ୍ରକାଶ ନାରାୟଣ କ୍ଲବ୍, ବାଇଗଣିରେ ମହାଲକ୍ଷ୍ମୀ ମହିଳା ସମିତି, ସାତଖଣ୍ଡରେ ମା' ଆଦିଶକ୍ତି ଜନସେବା କ୍ଲବ୍, ଅନୁଆରୀରେ ପଶ୍ଚିମବାଙ୍କୀ କ୍ରୀଡ଼ା ଓ ସାଂସ୍କୃତିକ ପରିଷଦ, ବୈଦେଶ୍ୱରରେ କ୍ଲବ୍ ଶ୍ରୀ ଜଗନ୍ନାଥ ଓ ଗୋପୀନାଥ ଦେବ ଯୁବକ୍ଲବ୍, ଇଛାପୁରରେ ପଲ୍ଲୀମଙ୍ଗଳ କ୍ଲବ୍, ନାଟେରୀରେ ଦିଗ୍‌ବିଜୟୀ କ୍ଲବ୍, କୁରୁମପଡ଼ାରେ ମା' ବ୍ରହ୍ମେଇଁ ଦେବୀ କ୍ଲବ୍, ମାଳବିହାରପୁରରେ ଶ୍ରୀ ଶ୍ରୀ ବୈଦେଶ୍ୱରୀ ଦେବୀ ଯୁବ କ୍ଲବ୍, ବଳଭଦ୍ରପୁର ଗ୍ରାମରେ ଜୟଦୁର୍ଗା ଯୁବ ସଂସଦ, ଗୋପୀନାଥପୁରରେ ଜୟ ମା' କାଳିକା କ୍ଲବ୍, କେନ୍ଦୁପଲ୍ଲୀରେ ରତ୍ନେଶ୍ୱର ଯୁବ କ୍ଲବ୍, ମାନପୁରରେ ସିଂହଭବାନୀ କ୍ଲବ୍, ବାଲିପାହାଡ଼ରେ ନବଜ୍ୟୋତି କ୍ଲବ୍, ବଘେଇରେ ମା' ଚର୍ଚ୍ଚିକା ମହିଳା ସମିତି,

ଖଇରୀପଙ୍ଗୀରେ ଜୟ ମା' ଧବଳେଶ୍ୱରୀ କ୍ଲବ୍, ଓସ୍ତିଆରେ ଆନନ୍ଦ ଯୁବ କ୍ଲବ୍ ଓ ଦଧିବାବନ ଯୁବ ସଂଘ, ନୂଆ ଓସ୍ତିଆରେ ମିନର୍ଭା କ୍ଲବ୍, ମିଳିତ ଅଂଶୁପା ଯୁବ କଲ୍ୟାଣ କମିଟି ଓ ୟୁନିକ୍ ଗ୍ରାଜୁଏଟ୍ କ୍ଲବ୍, କଦଳୀବାଡ଼ିରେ ଗୋପବନ୍ଧୁ ଯୁବକ ସଂଘ, ଫୁଲବାଡ଼ିରେ ରଘୁନାଥଜିଉ ଯୁବ ପରିଷଦ, ମାଳବିହାରପୁରରେ ନନ୍ଦିଘୋଷ ଯୁବ ସଂସଦ, ବିଷ୍ଣୁପୁରରେ ସୁଚେତା ମହିଳା ଖଦି ଓ ଗ୍ରାମୋଦୟ ସମିତି, ଘୋଳପୁରରେ ପ୍ରଗତି ଯୁବକ ସଂଘ, କଛପହଁରାରେ ମଦର ଟେରେସା ମହିଳା ସଂସଦ; ବନ୍ଦଲୋରେ ଚକାଡ଼ୋଳା ଯୁବକ ସଂଘ, ବରପାଟଣାରେ ଜନକଲ୍ୟାଣ ଯୁବକ ସଂଘ, ବାଉଁଶପୁଟରେ ତ୍ରିନାଥ ଯୁବକ ସଂଘ ଓ ଶ୍ରୀ ସିଦ୍ଧେଶ୍ୱର ଯୁବ କ୍ଲବ୍, ତେନ୍ତୁଳିଆରେ କଳ୍ପତରୁ ଯୁବକ ସଂଘ, କେଉଟ ପାଟଣାରେ ବିଜୟଲକ୍ଷ୍ମୀ ମହିଳା ସମିତି, ଗୋପାଳପୁରରେ ଉତ୍କଳମଣି ଯୁବକ ସଂଘ, ସୁବର୍ଣ୍ଣପୁରରେ ସାମାଜିକ ଶିକ୍ଷା କେନ୍ଦ୍ର, ଦେବଜ୍ୟୋତି କ୍ଲବ୍, ଗ୍ରାଜୁଏଟ୍ କ୍ଲବ୍ ଓ ଆଦିଶକ୍ତି କ୍ଲବ୍, ସହଙ୍ଗ ଗୋପାଳପୁରର ଶ୍ରୀ ଗୋପାଳ ପ୍ରିୟ କ୍ଲବ୍ ଏବଂ ରତାଗଡ଼ରେ ସାମାଜିକ ଗ୍ରାମ୍ୟ ଉନ୍ନୟନ ସମିତି ଆଦି କାର୍ଯ୍ୟରତ ।

ସେହିପରି ବାଙ୍କୀ-ଡମପଡ଼ା ବ୍ଲକ୍‌ର ରାମଚନ୍ଦ୍ରପୁର ଗ୍ରାମରେ ଶେଷ । ଓ ଚର୍ଚ୍ଚିକା କଲ୍ୟାଣ ମଣ୍ଡପ, ଦୁର୍ଗାପୁରରେ ମା' ମଙ୍ଗଳା କ୍ଲବ୍, ରଗଡ଼ିରେ ଆଲୋକ ଯୁବକ ସଂଘ ଓ ମହିମାମଣି କ୍ଲବ୍, ପାଟପୁରରେ ଲୋକନାୟକ କ୍ଲବ୍ ଓ ଭୂମିପୁତ୍ର କ୍ଲବ୍, ଗୋପାଳପୁରରେ ରତ୍ନେଶ୍ୱରୀ କ୍ଲବ୍, ଢ଼ଁସରରେ ବିବେକାନନ୍ଦ କ୍ଲବ୍, ମା' ବେଳାବେଳୀ ମହିଳା ସମିତି ଓ ଜୀବନଜ୍ୟୋତି ପରିଷଦ, ତୁଳସୀପୁରରେ ଚୈତନ୍ୟଦେବ କ୍ଲବ୍, ନରଗାଙ୍ଗରେ ଗ୍ରାମ୍ୟ ମହିଳା ବିକାଶ ସମିତି ଓ ମୁନ୍‌ଲାଇଟ୍ କ୍ଲବ୍, ବିଲିପଡ଼ାରେ ମହର୍ଷି ଦୟାନନ୍ଦ କ୍ଲବ୍, ସରଧାପୁରରେ ରାମକୃଷ୍ଣ ପରମହଂସ କ୍ଲବ୍, ହରିରାଜପୁରରେ ଗାନ୍ଧିଜୀ କ୍ଲବ୍, ରତ୍ନେଶ୍ୱରୀ କ୍ଲବ୍ ଓ ଆମ୍ବେଦକର ହରିଜନ ଯୁବ ପରିଷଦ, ଶିମିଳିପୁରରେ ପଲ୍ଲୀ ବିକାଶ କ୍ଲବ୍, ମକୁନ୍ଦପୁରରେ ପଲ୍ଲୀମଙ୍ଗଳ କ୍ଲବ୍ । କରବରରେ ସାମାଜିକ କାର୍ଯ୍ୟ ଓ ଗବେଷଣା କେନ୍ଦ୍ର, ଘାସିପୁଟରେ ପଲ୍ଲୀଶ୍ରୀ ଓ ଜନସେବା ସ୍ୱେଚ୍ଛାସେବୀ ସଂଘ, କୁସପଙ୍ଗୀରେ ଦିବ୍ୟଦ୍ରଷ୍ଟା କ୍ଲବ୍, ଛାତମୁଣ୍ଡିଆରେ ପ୍ରଗତି ଯୁବ ସଂସଦ, ଡମପଡ଼ାରେ ଠାକୁର କ୍ଲବ୍, ମଦନ ମୋହନ ମିଳିତ ଯୁବକ ସଂଘ ଓ ଗୋପୀନାଥ ମହିଳା ସମିତି, ବାଘୁଆରେ ଜୟଦୁର୍ଗା ଆଦିବାସୀ ଯୁବକ ସଂଘ, ଇନ୍ଦୁମତୀ ପାଟଣାରେ ନେପୋଲିଅନ୍ ଯୁବକ ସଂଘ ହଳଦୀପଦାରେ ତ୍ରିଦେବ ଜନସେବା କ୍ଲବ୍, ତାଳବସ୍ତରେ ଜନଶ୍ରୀ ପାଠାଗାର, ସାମନ୍ତ ରାପୁରରେ ନବଜ୍ୟୋତି ସାଂସ୍କୃତିକ ଯୁବ ପରିଷଦ, ପୁରରେ ବାପୁଜୀ କ୍ଲବ୍ ଓ ବ୍ରାଇଟ୍ ଯୁବ କ୍ଲବ୍, ଗୋବିନ୍ଦପୁରରେ ଜୟ ଜବାନ୍ ଜୟ କିଷାନ୍ କ୍ଲବ୍ । ପଦନପୁରରେ ମିଳିତ ଯୁବକ କ୍ଲବ୍, ଚମ୍ପତିପୁରରେ ରୋଡ୍, ପାଥପୁରରେ ଆହୁତି, ମା' ଭରଦେଇ କ୍ଲବ୍ ଓ କ୍ଲବ୍ ମାନବସେବା, କଇଁମୁଣ୍ଡିରେ ଗ୍ରାମ୍ୟ ବିକାଶ କ୍ଲବ୍, ବାଆଁରାରେ ଆମ ଗାଁ ଯୁବ ସଂଗଠନ ଓ ଫ୍ରେଣ୍ଡସ୍ କ୍ଲବ୍, ଭଗୀପୁରରେ ଜୟଶ୍ରୀ ଦ୍ୱାରିକା ଦାସ ସ୍ୱାଗତିକା କ୍ଲବ୍, ରାମଚଣ୍ଡୀରେ ଲାଲ ବାହାଦୂର ଯୁବ ପରିଷଦ, କୁଅମଡ଼ାରେ ସ୍ୱାମୀ ବିବେକାନନ୍ଦ କ୍ଲବ୍ ଆଦି କାର୍ଯ୍ୟରତ ଅଛନ୍ତି ।

ସମତାଳରେ ବାଙ୍କୀ ବିଜ୍ଞାପିତ ପରିଷଦରେ ମଧ୍ୟ କଲେଜ୍ ରୋଡ୍‌ରେ ସବୁଜଶାନ୍ତି କ୍ଲବ୍ ଓ ବଙ୍କିମା ସାରସ୍ୱତ ପରିଷଦ, ଖମାରଙ୍ଗରେ ବାଙ୍କୀ ଆଞ୍ଚଳିକ ହରିଜନ ଓ ଆଦିବାସୀ କଲ୍ୟାଣ ପରିଷଦ, ବେଦପୁରରେ କବିଚନ୍ଦ୍ର ସ୍ମୃତି ସଂସଦ, ଶିଶୁଆରେ ମା'ମଙ୍ଗଳା କ୍ଲବ୍, ବାଲିସାହିରେ ଦି ଆପେକ୍ସ ଓ ଯୋଗେଶ କ୍ଲବ୍, ସାହାଡ଼ାପଦାରେ ମା'ଆଦିମାତା କ୍ଲବ୍ ଓ ମା' ବ୍ରହ୍ମେଇଁ କ୍ଲବ୍, ବାଙ୍କୀ ଚର୍ଚ୍ଚିକା ତଥା ଟାଉନ୍‌ରେ କଳା, ସାହିତ୍ୟ ଓ ସଂସ୍କୃତି ପରିଷଦ, ନିସିଡ୍, ବାଙ୍କୀ ଟାଉନ୍ କ୍ଲବ୍, ବାପୁଜୀ ସେବା ସଂଘ ଓ ବାଙ୍କୀ ଆଥଲେଟିକ୍ ଆସୋସିଏସନ୍ ପ୍ରଭୃତି ଅନେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ କାର୍ଯ୍ୟରତ । ଏତଦ୍‌ଭିନ୍ନ ଆହୁରି ଅନେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ବାଙ୍କୀର ପୁରପଲ୍ଲୀରେ କାର୍ଯ୍ୟ କରୁଛନ୍ତି ।

ଯେଉଁ କେତେକ ପ୍ରମୁଖ ସ୍ୱେଚ୍ଛାସେବୀ ଅନୁଷ୍ଠାନ ରାଜ୍ୟସ୍ତରରେ ଓ ଜିଲ୍ଲାସ୍ତରରେ କାର୍ଯ୍ୟ କରୁଛନ୍ତି ସେମାନଙ୍କ ମଧ୍ୟରେ ଲୋକନାୟକ କ୍ଲବ୍, ଶେଷା, ପଲ୍ଲିଶ୍ରୀ, ବାଙ୍କୀ ଆଞ୍ଚଳିକ ହରିଜନ ଓ ଆଦିବାସୀ କଲ୍ୟାଣ ପରିଷଦ, ବାଙ୍କୀ ଆଥ୍‌ଲେଟିକ୍ ଆସୋସିଏସନ୍ ଓ କବିଚନ୍ଦ୍ର ସ୍ମୃତି ସଂସଦ ଆଦି ଅନ୍ୟତମ । ଲୋକନାୟକ କ୍ଲବ୍ ତତ୍ତ୍ୱାବଧାନରେ ଜରାନିବାସ, ବାଳାଶ୍ରମ, ପରିବାର ପରାମର୍ଶ କେନ୍ଦ୍ର, ଶିଶୁଶ୍ରମିକ ବିଦ୍ୟାଳୟ ଓ ଯୁବ କେନ୍ଦ୍ର ଆଦି କାର୍ଯ୍ୟକ୍ରମ ଚାଲୁରହିଛି । ବାଙ୍କୀ ଆଞ୍ଚଳିକ ହରିଜନ ଓ ଆଦିବାସୀ କଲ୍ୟାଣ ପରିଷଦ ଦ୍ୱାରା ଆଦିବାସୀ ଛାତ୍ରାବାସ, ସିଲେଇ ଓ ଟାଇପ୍ କେନ୍ଦ୍ର, ଶିଶୁଶ୍ରମିକ ବିଦ୍ୟାଳୟ, କ୍ରେଚ୍ ସେଣ୍ଟର୍ ଓ ସ୍ୱୟଂ ସହାୟକ ଗୋଷ୍ଠୀ ପରିଚାଳନା ଆଦି ଚାଲୁରହିଛି । ସେହିପରି ଶେଷା ଅନୁଷ୍ଠାନ ଦ୍ୱାରା ଶିଶୁଶ୍ରମିକ ବିଦ୍ୟାଳୟ, ଯୁବ ବିକାଶ କେନ୍ଦ୍ର, ସ୍ୱୟଂ ସହାୟକ ଗୋଷ୍ଠୀ, ବିଜ୍ଞାନଭିତ୍ତିକ କାର୍ଯ୍ୟକ୍ରମ ଓ ଚିଲିକା ହ୍ରଦ ଉନ୍ନୟନ, ନିସିଡ୍ ଦ୍ୱାରା ନିଶା ନିବାରଣ କେନ୍ଦ୍ର, ପଲ୍ଲୀମଙ୍ଗଳ କ୍ଲବ୍ ଦ୍ୱାରା ଗ୍ରାମାଞ୍ଚଳରେ ଚୂଲ୍ଲୀ ନିର୍ମାଣ ଓ କ୍ଲବ୍ ଶ୍ରୀ ଜଗନ୍ନାଥ ଦ୍ୱାରା କ୍ରେଚ୍ ସେଣ୍ଟର ଆଦି ଅନେକଗୁଡ଼ିଏ ଲୋକହିତକର କାର୍ଯ୍ୟକ୍ରମ ଚାଲୁରହିଛି । ବାଙ୍କୀ ଆଥ୍‌ଲେଟିକ୍ ଆସୋସିଏସନ୍ ଆନୁକୂଲ୍ୟରେ ପ୍ରତିବର୍ଷ ଅନେକ ଉପଖଣ୍ଡସ୍ତରୀୟ କ୍ରୀଡ଼ା ପ୍ରତିଯୋଗିତା ସହ ରାଜ୍ୟସ୍ତରୀୟ ଫୁଟ୍‌ବଲ୍ ପ୍ରତିଯୋଗିତା ମଧ୍ୟ ଅନୁଷ୍ଠିତ ହୋଇଥାଏ । କବିଚନ୍ଦ୍ର ସ୍ମୃତି ସଂସଦ, କବିଚନ୍ଦ୍ରଙ୍କର ଜନ୍ମ ଉତ୍ସବରେ ଓଡ଼ିଶାର ପ୍ରଖ୍ୟାତ କଳାକାର, ସଂଗୀତକାର, ଗୀତିକାର ତଥା ଚିତ୍ରଶିଳ୍ପୀମାନଙ୍କୁ କବିଚନ୍ଦ୍ର ପୁରସ୍କାରରେ ସମ୍ମାନିତ କରିବା ସହ କବିଚନ୍ଦ୍ର ସମ୍ପର୍କୀୟ ନାଟକ ପ୍ରସ୍ତୁତ କରି ଦୂରଦର୍ଶନରେ ପ୍ରସାରିତ କରାଏ ।

ଯେଉଁ ପ୍ରମୁଖ ବ୍ୟକ୍ତି ବିଶେଷଗଣ ସ୍ୱେଚ୍ଛାସେବୀ ହିସାବରେ ସେମାନଙ୍କର ସୁନାମ ରହିଛି, ସେମାନେ ହେଲେ ପାଟପୁରର ଶରତ ଚନ୍ଦ୍ର ମହାପାତ୍ର, ନିରଞ୍ଜନ ସ୍ୱାଇଁ ଓ ପ୍ରହ୍ଲାଦ ସ୍ୱାଇଁ, ରାମଚନ୍ଦ୍ରପୁରର ମନୋଜ କୁମାର ମହାପାତ୍ର, ସୀତାରାମ ଛାଟୋଇ ଓ ବାସନ୍ତୀ ମନ୍ତ୍ରୀ, ଘାସିପୁଟର ଦୁର୍ଗାଚରଣ ଦାସ, ଖମାରଙ୍ଗର କେଶବ ଚନ୍ଦ୍ର ବେହେରା, ରଣପୁରର ଗୁରୁବାରୀ ବେହେରା, ଶ୍ରୀଚନ୍ଦନପୁରର ପ୍ରଶାନ୍ତ ମହାପାତ୍ର ଓ ସୀତାକାନ୍ତ ପ୍ରତାପସିଂହ, ବାଙ୍କୀ ଚର୍ଚ୍ଚିକାର ଧର୍ମପ୍ରସାଦ ମଙ୍ଗରାଜ, ରାମଚନ୍ଦ୍ର ପ୍ରତାପ ସିଂହ ଓ ବୃନ୍ଦାବନ ପ୍ରଧାନ, ଶିଶୁଆର ଲିଙ୍ଗରାଜ ରାଉତ, ଡମପଡ଼ାର ଜାନକୀ ମଞ୍ଜରୀ ଜେନା, ଦୋଲଣାପୁରର ବନମାଳୀ ରାଉତ, ତାଳବସ୍ତର ପ୍ରଫୁଲ୍ଲ ପାଲ୍, ସିଂହନାଥପୁରର ବନବିହାରୀ ପଟ୍ଟନାୟକ, ଢ଼ୁଁସରର ସଦାଶିବ ସାହୁ ଓ ବିଜୟଲକ୍ଷ୍ମୀ ସାମନ୍ତରାୟ, ମକୁନ୍ଦପୁରର ସୁରେଶ ରାଉତ, କରବରର ସିଦ୍ଧେଶ୍ୱର ନନ୍ଦ, ନରଗାଙ୍ଗର ମୀନକେତନ ଶ୍ରୀଚନ୍ଦନ ଓ ଗଣେଶ୍ୱର ସ୍ୱାଇଁ, ପଣ୍ଡାଳମର ଗଙ୍ଗାଧର ଦାଶ ଓ ସୁରେଶ୍ ଚନ୍ଦ୍ର ପଟ୍ଟନାୟକ, ବୈଦେଶ୍ୱରର କାମଦେବ ମହାପାତ୍ର, ବାଆଁରାର ଗୌରାଙ୍ଗ ରାଉତ, ହରିରାଜପୁରର ସନ୍ତୋଷ ମହାପାତ୍ର, କୁସପଙ୍ଗୀର ପ୍ରକାଶ ବେଉରା ଓ ରତିକାନ୍ତ ବେଉରା, ଅରପୁରର ସୁରଥ ପ୍ରଧାନ, ବିଲିପଡ଼ାର ସଚ୍ଚିଦାନନ୍ଦ ମନ୍ତ୍ରୀ, ଶିମିଳିପୁରର ମଦନମୋହନ ବେହେରା, ହଳଦୀପଦାର କ୍ଷେତ୍ରବାସୀ ମଲ୍ଲିକ୍, ବ୍ରହ୍ମପୁରାର ବେଣୁଧର ଦେବତା, ବରପୁଟର ଉପେନ୍ଦ୍ର ପଣ୍ଡା, ପଦନପୁରର ସୁରେଶ ମହାପାତ୍ର, ଲେମ୍ବେଇରାର ମେଘନାଦ ଜେନା ପଥୁରୀପଡ଼ାର କୁନ୍ତଳା ସାହୁ ।

ଆମ ଦେଶର ସରକାର ଓ ବ୍ୟକ୍ତିବିଶେଷ ସ୍ୱେଚ୍ଛାସେବୀମାନଙ୍କୁ ପ୍ରତ୍ୟେକ କାର୍ଯ୍ୟରେ ଉତ୍ସାହିତ କରି, ନିର୍ମଳ ଭାବମୂର୍ତ୍ତିସମ୍ପନ୍ନ ଅନୁଷ୍ଠାନମାନଙ୍କୁ ମାନସିକ, ଆର୍ଥିକ ଓ ଆଇନଗତ ସ୍ତରରେ ସବୁପ୍ରକାର ସାହାଯ୍ୟ କରିପାରିଲେ ସମାଜରେ ଘଟୁଥିବା ଆକସ୍ମିକ ବିପତ୍ତି ଏବଂ ସାମାଜିକ ସ୍ଖଳନର ଗତିଶୀଳତାକୁ ରୋକାଯିବା ସହ, ସାମାଜିକ ଓ ସାଂସ୍କୃତିକ ଉନ୍ନତି ମଧ୍ୟ ସମ୍ଭବପର ହୋଇପାରନ୍ତା । ଆମକୁ ମନେରଖିବାକୁ ହେବ ଯେ ବ୍ୟକ୍ତି ସ୍ୱାର୍ଥ ନିଜସ୍ୱ; ସାମାଜିକ ସ୍ୱାର୍ଥ ସବୁର ଉର୍ଦ୍ଧ୍ୱରେ । ଏଥିପାଇଁ ସମସ୍ତେ ଆଗେଇ ଆସିବା ସହିତ ସମାଜର ପ୍ରଗତିରେ ଭାଗନେବା ଆବଶ୍ୟକ ।



# ଚିକିତ୍ସା ଜଗତର ବିସ୍ମୟ : ବାଙ୍କୀର ମିଶ୍ର ଭ୍ରାତୃଦ୍ୱୟ

ସ୍ମିତାମୟୀ ତ୍ରିପାଠୀ
+ ୨ କଳା ପ୍ରଥମବର୍ଷ

## ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର

ଚାହୁଁ ଚାହୁଁ ଏକୋଇଶଟି ବର୍ଷ ବିତି ଯାଇଛି । ତଥାପି ମଧ୍ୟ ସେହି ସାଧୁ ପୁରୁଷଙ୍କ ଜୀବନ-ଚର୍ଯ୍ୟା ଓ ସରଳ ମଧୁର ବଚନ ଅନେକ ଉତ୍କଳବାସୀଙ୍କ ହୃଦୟରେ ଏବେବି ପ୍ରତିଧ୍ୱନିତ ହେଉଛି ଓ ଚିରଦିନ ହେଉଥିବ ।

ଯେ ଅକୁଣ୍ଠ ଚିତ୍ତରେ, ନିଷ୍କାମ ଭାବରେ ଜନତାର ସେବା କରି ଆମ୍ଭମାନଙ୍କ ଆଗରେ ଏକ ମହନୀୟ ଆଦର୍ଶ ରଖି ଯାଇଛନ୍ତି ଓ ସଂସାର ମଧ୍ୟରେ ଅନାସକ୍ତ ଯୋଗୀଭାବେ ଜୀବନଯାପନ କରି ଶେଷରେ ସେହି ଯୋଗୀଋଷିମାନଙ୍କ ପରି ଦେହ ତ୍ୟାଗ କରିଛନ୍ତି; ସେହି ଦେବୋପମ ବ୍ୟକ୍ତି ହେଉଛନ୍ତି ଓଡ଼ିଶାର ଭୂତପୂର୍ବ ପ୍ରଖ୍ୟାତ ଚକ୍ଷୁରୋଗ ବିଶେଷଜ୍ଞ ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର । ସେ ଥିଲେ ଗରିବଙ୍କ ପାଇଁ ପ୍ରେରଣାର ପ୍ରତିମୂର୍ତ୍ତି ଓ ସମ୍ବେଦନଶୀଳ ବ୍ୟକ୍ତି । ସମାଜର ଦରିଦ୍ର, ଅବାଞ୍ଛିତ ଲୋକଙ୍କ ଦୁଃଖ ଯନ୍ତ୍ରଣା ଓ ଦୁର୍ଦ୍ଦଶା ପ୍ରତି ସେ ସଦାସର୍ବଦା ସଚେତନ ଥିଲେ ।

ସ୍ୱର୍ଗତ ଶତାୟୁ ପୁରୁଷ ତଥା ଦୈନିକ 'ସମାଜର ପୂର୍ବତନ ସମ୍ପାଦକ ଡକ୍ଟର ରାଧାନାଥ ରଥ ଡାକ୍ତର ମିଶ୍ରଙ୍କର ଦେହାନ୍ତରେ କହିଥିଲେ - ''ସ୍ୱର୍ଗତ ମହେନ୍ଦ୍ର ବାବୁଙ୍କର ସରଳ, ସାଧୁ, ନିରାଡ଼ମ୍ବର ଜୀବନଚର୍ଯ୍ୟା, ନିଷ୍କଳଙ୍କ ଆନୁଗତ୍ୟଯୋଗୁଁ ସେ ଜୀବନନରେ ବହୁ ବନ୍ଧୁ ଓ ପ୍ରଶଂସକ ସୃଷ୍ଟି କରି ପାରିଥିଲେ । ସେ ଜଣେ ଉଚ୍ଚସ୍ତରର ଜନହିତୈଷୀ ଓ ଅନ୍ତରର ଗଭୀରତମ ପ୍ରଦେଶର ସଚ୍ଚାମାନବବାଦୀ ଥିଲେ ।''

ଏକ ଭିନ୍ନ ତନ୍ତୁରେ ଗଢ଼ା ମଣିଷ ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର ଚାକିରୀ ଜୀବନର ପରିସମାପ୍ତି ପରେ ବାର୍ଦ୍ଧକ୍ୟ ଅବସ୍ଥାରେ ସଦା ସର୍ବଦା ଲୋକସେବା ପାଇଁ ସକ୍ରିୟ ଥିଲେ । ସମାଜ ଓ ବ୍ୟକ୍ତିଗତ ଜୀବନରେ ଯାହା କିଛି ସୁନ୍ଦର ଓ ବିଶୁଦ୍ଧ, ସେ ଥିଲେ ତା'ର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କର ସ୍ମୃତି ଓ ଦୃଷ୍ଟାନ୍ତ ଆମ ସମସ୍ତଙ୍କ ପାଇଁ ସଦାବେଳେ ପ୍ରେରଣାର ଉତ୍ସହୋଇ ରହିବ ।

ଓଡ଼ିଶାର ପ୍ରସିଦ୍ଧ ତନ୍ତ୍ରପୀଠ ମା'ଚର୍ଚ୍ଚିକାଙ୍କର ମନ୍ଦିର ସଂଲଗ୍ନ ଚର୍ଚ୍ଚିକା ଗ୍ରାମର ସ୍ୱର୍ଗତ ପଣ୍ଡିତ ଦାମୋଦର ମିଶ୍ରଙ୍କର ଜ୍ୟେଷ୍ଠ ପୁତ୍ର ରୂପେ ୧୯୦୮ ମସିହାରେ ଡାକ୍ତର ମିଶ୍ର ଜନ୍ମଗ୍ରହଣ କରିଥିଲେ । ପିତାଙ୍କର ଧର୍ମଶାସ୍ତ୍ର, ବେଦ ପୁରାଣରେ ଅଗାଧ ପାଣ୍ଡିତ୍ୟ ଥିଲା ଓ ସେ ତତ୍‌କାଳୀନ ତାଳଚେର ଯୁବରାଜଙ୍କର ସହପାଠୀ ଥିବାରୁ ପରବର୍ତ୍ତୀ ସମୟରେ ପଣ୍ଡିତ ମିଶ୍ରଙ୍କୁ ତାଳଚେର ରାଜ ପ୍ରାସାଦ କାର୍ଯ୍ୟାଳୟରେ ଦେଓ୍ୱାନ ଚାକରୀ ମିଳିଥିଲା । ପିତାଙ୍କ ଆଦର୍ଶର ପ୍ରଭାବ ପିଲାବେଳୁ ଡାକ୍ତର ମିଶ୍ରଙ୍କ ଉପରେ ପଡ଼ିଥିଲା ।

ତାଙ୍କର ସାନଭାଇ ଡାକ୍ତର ଶରତଚନ୍ଦ୍ର ମିଶ୍ର, ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ମଧ୍ୟ ପିତାଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ।

ଗାଁ ଚାହାଳୀ ପାଠ ପରେ ଚର୍ଚ୍ଚିକା ସ୍କୁଲରୁ ମାଇନର ଶିକ୍ଷା ସମାପ୍ତ କରି ରେଭେନ୍‌ସା କଲିଜିଏଟ୍ ସ୍କୁଲରୁ ୧୯୨୭ରେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାସ୍ କରିଥିଲେ । ୧୯୨୯ ମସିହାରେ ରେଭେନ୍‌ସା କଲେଜରୁ ଆଇ.ଏସ୍.ସି. ପାସକରି ପାଟନା ମେଡ଼ିକାଲ କଲେଜରେ ଏମ୍.ବି.ବି.ଏସ୍. ପାଠ୍ୟକ୍ରମରେ ନାମ ଲେଖାଇ ଶରୀରତତ୍ତ୍ୱ ଏବଂ କ୍ଲିନିକାଲ ପାଠ୍ୟକ୍ରମର ରୋଗ ନିଦାନତତ୍ତ୍ୱ ଓ ଫରେନ୍‌ସିକ୍ ମେଡ଼ିସିନ୍‌ରେ ଅନର୍ସ ସହିତ ପାସ୍ କରି ପାଟନା ବିଶ୍ୱବିଦ୍ୟାଳୟରେ ଏକ ନୂତନ ରେକର୍ଡ଼ ସୃଷ୍ଟି କରିଥିଲେ ।

୧୯୩୬ ମସିହାରେ ଓଡ଼ିଶା ମେଡ଼ିକାଲ ସର୍ଭିସରେ ଆସିଷ୍ଟାଣ୍ଟ ସର୍ଜନ ଭାବେ ଯୋଗଦେଇ ୪ ବର୍ଷପରେ ଓଡ଼ିଶା ମେଡ଼ିକାଲ ସ୍କୁଲରେ ଶରୀରତତ୍ତ୍ୱ ଅଧ୍ୟାପକ ଓ ଚକ୍ଷୁବିଭାଗ ଦାୟୀତ୍ୱରେ ରହିଥିଲେ । ୧୯୪୮ ମସିହାରେ ଲଣ୍ଡନ ବିଶ୍ୱ ବିଦ୍ୟାଳୟରୁ ଚକ୍ଷୁ ରୋଗରେ ଡି.ଓ.ଏମ୍.ଏସ୍. କରି ଭାରତ ଫେରି ଆସି ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଚକ୍ଷୁ ବିଭାଗର ସହକାରୀ ଅଧ୍ୟାପକ ଭାବରେ ଯୋଗଦେଲେ ଓ ପରବର୍ତ୍ତୀ ସମୟରେ ପ୍ରଫେସର ରୂପେ କାର୍ଯ୍ୟଭାର ତୁଲାଇ ଥିଲେ । ୧୯୩୬ରୁ ୧୯୬୮ ମସିହା ପର୍ଯ୍ୟନ୍ତ ଶ୍ରୀରାମ ଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ହାସ୍‌ପାତାଳରେ ସୁପରିନ୍‌ଟେଣ୍ଡେଣ୍ଟ ରୂପେ କାର୍ଯ୍ୟଭାର ତୁଲାଇ ଥିଲେ ।

ଭାରତୀୟ ମେଡ଼ିକାଲ କାଉନ୍‌ସିଲରେ ଉତ୍କଳ ବିଶ୍ୱବିଦ୍ୟାଳର ପ୍ରତିନିଧି ଭାବେ ଡାକ୍ତର ମିଶ୍ର ବହୁ ବର୍ଷ କାର୍ଯ୍ୟଭାର ତୁଲାଇ ଥିଲେ ଓ ବିଶ୍ୱହିନ୍ଦୁ ପରିଷଦର ସକ୍ରିୟ ସଦସ୍ୟ ଥିଲେ । ଚାକିରୀରୁ ଅବସର ନେବାପରେ ସେ ବହୁ ଶିକ୍ଷା, ସାଂସ୍କୃତିକ, ବୈଜ୍ଞାନିକ ଓ ଧାର୍ମିକ ସଂସ୍ଥାସହ ସଂଶ୍ଳିଷ୍ଟ ଥିଲେ । ତନ୍ମଧ୍ୟରୁ ଖ୍ରୀଷ୍ଟ କଲେଜ, ମାରୱାଡ଼ି ହାଇସ୍କୁଲ, ଇମର୍ତ୍ତୀଦେବୀ ବାଳିକା ହାଇସ୍କୁଲ । ଜହୁରୀମଲ୍ଲ ଦାତବ୍ୟ ଚିକିତ୍ସାଳୟ, ଉର୍ଦ୍ଦୁ ଲାଇବ୍ରେରୀ ପ୍ରଭୃତି ଅନେକ ଅନୁଷ୍ଠାନ ସହିତ ଓତପ୍ରୋତଃ ଭାବେ ଜଡ଼ିତଥିଲେ । ଭାରତର ବିଭିନ୍ନ ବିଶ୍ୱ ବିଦ୍ୟାଳୟରେ ସେ ଚକ୍ଷୁରୋଗ ବିଷୟରେ ପରୀକ୍ଷକ ଥିଲେ । ବିଜ୍ଞାନ ପ୍ରଚାର ସମିତିର ସେ ପ୍ରତିଷ୍ଠାତା ସଦସ୍ୟ ଓ ଚିନ୍ମୟ ମିଶନର ଜଣେ ସକ୍ରିୟ ସଦସ୍ୟ ହିସାବରେ ଅନେକ କାମ କରିଥିଲେ । ଦୀନ, ଦରିଦ୍ର, ଅସମର୍ଥ ତଥା ଗରିବ ଛାତ୍ରମାନଙ୍କୁ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କରୁଥିଲେ । ତାଙ୍କର ଡାହାଣ ହାତର ସାହାଯ୍ୟ କଥା ବାମ ହାତ ଜାଣି ପାରୁନଥିଲା ।

୧୯୮୨ ମସିହା ବାଙ୍କୀ ତଥା ସମଗ୍ର ଦେଶ ପାଇଁ ଥିଲା ଏକ ସଂକଟ ଓ ଦୁଃଖଦାୟକ ବର୍ଷ । ୧୯୮୨ ମସିହା ଫେବୃୟାରୀ ୬ ତାରିଖ ଦିବା ୧୧ଟା ସମୟରେ ରୋଗୀମାନଙ୍କର ସେବାରେ ଥାଇ ଡାକ୍ତର ମିଶ୍ର ହଠାତ୍ ଛାତିରେ ଯନ୍ତ୍ରଣା ଅନୁଭବ କଲେ ଓ ଆଖି ପିଛୁଳାକେ ତାଙ୍କର ହୃତ୍‌ସ୍ପନ୍ଦନ ବନ୍ଦ ହୋଇଗଲା । ସେ ସ୍ଥିର ହୋଇ ସବୁଦିନ ପାଇଁ ଶୋଇଗଲେ । ସବୁ ନିସ୍ପନ୍ଦ ହୋଇଗଲା ।

ଚିକିତ୍ସା ଜଗତର ବିସ୍ମୟ ତଥା ଶ୍ରୀରାମ ଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ହାସପାତାଳର ଭୂତପୂର୍ବ ସୁପରିନ୍‌ଟେଣ୍ଡେଣ୍ଟ ଚକ୍ଷୁ ବିଭାଗର ଅଧକ୍ଷ ଓ ମୁଖ୍ୟ ଅଧ୍ୟାପକ ଦେବୋପମ ଧର୍ମପ୍ରାଣ ଚିକିତ୍ସାବିତ୍‌ଙ୍କ ଦେହାନ୍ତ ଖବର କ୍ଷଣକ ମଧ୍ୟରେ ଉତ୍କଳବାସୀଙ୍କୁ ଦୁଃଖରେ ମ୍ରିୟମାଣ କରିଦେଲା ।

ତାଙ୍କପରି ଉଦାରମନା, ସରଳ, ସାଧୁ, ମାନବପ୍ରେମୀ, ରୋଗୀ ବତ୍ସଳ, ନିରହଂକାର ସେବକ, ନିଷ୍କଳଙ୍କ ଚରିତ୍ର, ନିର୍ଲୋଭ ଜୀବନ ଦୟାଳୁ ଏବଂ ସ୍ନେହଶୀଳ ବନ୍ଧୁ ରୂପେ ସେ ସର୍ବସାଧାରଣରେ ପ୍ରିୟ ଭକ୍ତିଭାଜନ ଥିଲେ ।

ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ରଙ୍କ କର୍ମମୟ ଜୀବନ କଥା ଚିନ୍ତା କଲାବେଳେ ଗୀତାର ଧ୍ୟାନଯୋଗ ୨୯ର ବର୍ଣ୍ଣନା ସ୍ୱତଃ ଭାବେ ମନକୁ ଆସି ଯାଉଛି :—

''ସର୍ବ ଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।
ଈକ୍ଷତେ ଯୋଗ ଯୁକ୍ତାତ୍ମା, ସର୍ବତ୍ର ସମଦର୍ଶନଃ ।''

ସେ ସବୁ ମଣିଷରେ ସେଇ ବିଶ୍ୱାତ୍ମାର ପ୍ରକାଶ ଅନୁଭବ କରିବାକୁ ଉଦ୍ୟମ କରିଥିଲେ । ମାନବ ସେବା ମାଧ୍ୟମରେ ସେ ଏହା ଅନୁଭବ କରି ପାରିଥିଲେ । ତେଣୁ ତାଙ୍କର ଅନାବିଳ ସ୍ନେହ ଓ କରୁଣା ନିଜ ପରିବାର ମଧ୍ୟରେ ସୀମିତ ନହୋଇ ଜାତିଧର୍ମ, ବର୍ଣ୍ଣ ଓ ଲିଙ୍ଗ ନିର୍ବିଶେଷରେ ସମସ୍ତଙ୍କୁ ସ୍ପର୍ଶ କରିଥିଲା । ଜୀବନ ବ୍ୟାପି ସାଧନା ଓ ସଂଯମ ବଳରେ ଏହା ସମ୍ଭବ ହୋଇ ପାରିଥିଲା ।

## ଡାକ୍ତର ଶରତ ଚନ୍ଦ୍ର ମିଶ୍ର

ଡାକ୍ତର ଶରତ ଚନ୍ଦ୍ର ମିଶ୍ର ଥିଲେ ଆତ୍ମପ୍ରକାଶରେ ଶାରଦୀୟ ଶୁଭ୍ରଜ୍ୟୋତ୍ସ୍ନାର ଆଲୋକ ପରି ସ୍ୱଚ୍ଛ ଓ ଜୀବନ୍ମୟ ସ୍ୱପ୍ନର ଶସ୍ୟମୟ ସବୁଜିମା । ତାଙ୍କ ହୃଦୟରେ ସୃଜନଶୀଳ ମମତା ପ୍ରବାହ ସାନିଧ୍ୟରେ ଥିବା ପ୍ରତ୍ୟେକ ମଣିଷର ନୈରାଶ୍ୟ ଓ ବିମୂଢ଼ତା ଦୂର କରିବା ସହିତ ଜୀବନ ପ୍ରତି ଆଶା ଓ ବିଶ୍ୱାସ ସଞ୍ଚାର କରୁଥିଲା ।

ଜୀବନ ସାରା ଚିକିତ୍ସା ବିଦ୍ୟାକୁ ସେ ସାଧନା, ବ୍ରତ ଓ ତପସ୍ୟା ରୂପେ ଗ୍ରହଣ କରି ବହୁ ରୋଗ ପୀଡ଼ିତ ବ୍ୟକ୍ତିଙ୍କର ଚିକିତ୍ସା କରିଥିଲେ । ରୋଗୀଙ୍କ ହତାଶ ପ୍ରାଣରେ ଆଶା ଓ ଭରସା ସଞ୍ଚାର କରାଇ ପାରୁଥିଲେ । ତାଙ୍କ ଆମାୟିକ ଅମୃତବାଣୀ ରୁଗ୍ଣ ବ୍ୟକ୍ତିପ୍ରାଣରେ ରୋଗ ମୁକ୍ତିର ନିର୍ଭରତା ଓ ପ୍ରତ୍ୟୟ ଆଣି ଦେଉଥିଲା ।

ସେ ଥିଲେ ପରମ ଈଶ୍ୱରଭକ୍ତ, ତ୍ୟାଗଶୀଳ, ନିରହଙ୍କାର, କର୍ତ୍ତବ୍ୟପରାୟଣ, ଶ୍ରଦ୍ଧାଶୀଳ ଓ ମଧୁରଭାଷୀ ବ୍ୟକ୍ତି ବିଶେଷ । ସେ ଭଳି ମଣିଷଟିଏ ଏ ସମାଜରେ ଦୁର୍ଲଭ । ରୋଗୀମାନେ ସେହି ମହାମାନବଙ୍କୁ ରକ୍ତ ମାଂସର ଜୀବନ୍ତ ଈଶ୍ୱର ଭାବରେ ଗଣନା କରୁଥିଲେ । ସେହି ଦେବୋପମ ସ୍ୱନାମଧନ୍ୟ ଶିଶୁରୋଗ ବିଶେଷଜ୍ଞ ସ୍ୱର୍ଗତ ଡାକ୍ତର ଶରତ ଚନ୍ଦ୍ର ମିଶ୍ର ୧୯୧୦ ମସିହା ସେପ୍ଟେମ୍ବର ମାସ ୧୦ ତାରିଖ ଭାଦ୍ରବ ପୂର୍ଣ୍ଣିମାରେ ପୂର୍ଣ୍ଣଚାନ୍ଦ ପରି ବାଙ୍କୀର ଚର୍ଚ୍ଚିକା ଗ୍ରାମରେ ଜନ୍ମଲାଭ କରିଥିଲେ । ପଣ୍ଡିତ ଦାମୋଦର ମିଶ୍ରଙ୍କର ସେ ଥିଲେ ଦ୍ୱିତୀୟ ସନ୍ତାନ । ପିତା ତତ୍‌କାଳୀନ ତାଳଚେର ରାଜାଙ୍କର ଦେୱାନ୍ ଥିବାରୁ ତାଳଚେରରେ ହିଁ ତାଙ୍କର ଶିକ୍ଷା ଆରମ୍ଭ ହୋଇଥିଲା ।

୧୯୨୮ ମସିହାରେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କରି ସେ ଏଲ୍.ଏମ୍.ପି. ପଢ଼ି ୧୯୩୨ ମସିହାରେ ସବୁବିଷୟରେ ସ୍ୱର୍ଣ୍ଣପଦକ ପାଇଁ କୃତିତ୍ୱର ସହ ପାଶ୍ କରିଥିଲେ । କିଛି ଦିନ ଚାକିରି କରିବା ପରେ ପୁନର୍ବାର ଏମ୍.ବି.ବି.ଏସ୍. ପଢ଼ିବା ପାଇଁ ପାଟନା ଯାଇଥିଲେ । ୧୯୪୬ ମସିହାରେ ପ୍ରଥମ ଶ୍ରେଣୀରେ ପାଶ୍ କରି ୧୯୪୬ରୁ ୧୯୬୮ ଯାଏ କଟକ ମେଡ଼ିକାଲ କଲେଜରେ କାର୍ଯ୍ୟ କରିଥିଲେ । ତା' ମଧ୍ୟରେ ସେ ବିଲାତ ଯାଇ ସ୍ନାତକୋତ୍ତର ଶିକ୍ଷାଲାଭ କରିଥିଲେ ।

ଶ୍ରୀଯୁକ୍ତ ଆନନ୍ଦ ଚନ୍ଦ୍ର ମିଶ୍ର କୁହନ୍ତି – ଶରତବାବୁ ନିଜର କର୍ତ୍ତବ୍ୟପରାୟଣତା, ବୃତ୍ତିରେ ସାଧୁତା ଏବଂ ଆନ୍ତରିକତା ବଳରେ ହିଁ ସମଗ୍ର ଓଡ଼ିଶାରେ ଜଣେ ବିଶିଷ୍ଟ ଚିକିତ୍ସକର ଗୌରବ ଲାଭ କରି ପାରିଥିଲେ । ଯାହା ହୁଏତ ଖୁବ୍ କମ୍ ସଂଖ୍ୟକ ବ୍ୟକ୍ତିଙ୍କ ଜୀବନରେ ଦେଖା ଯାଇଥାଏ ।

ଅତି ସାଧାରଣ ତାଙ୍କର ବେଶଭୂଷା – ଧଳା ପ୍ୟାଣ୍ଟ ଓ ଧଳାଢ଼ିଲା ପୂରାଜାମା ଥିଲା ତାଙ୍କର ପରିଧାନ । ପାଦରେ କଳା ଜୋତା, ହାତରେ ଷ୍ଟେଥୋ ଓ ପ୍ରଶସ୍ତ ଲଲାଟରେ ଚନ୍ଦନଟୀକା, ମୁଖମଣ୍ଡଳରେ ସର୍ବଦା ପ୍ରସନ୍ନତାର ଜ୍ୟୋତି ଓ ମୃଦୁହାସ୍ୟର ଅଭିବ୍ୟକ୍ତି । କର୍ତ୍ତବ୍ୟର ଅନୁରୋଧରେ ସେ ଚିକିତ୍ସା ବିଜ୍ଞାନରେ ମନୋନିବେଶ କରିଥିଲେ ସତ; ମାତ୍ର ହୃଦୟର ଅନ୍ତହୀନ ପ୍ରେରଣା ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା ଗୀତା, ଉପନିଷଦ, ଭାଗବତ, ରାମାୟଣ ଓ ମହାଭାରତ ଭିତରେ ଆତ୍ମବିସ୍ମୃତ ହେବା ପାଇଁ । ବସ୍ତୁଜଗତରେ ଥାଇ ମଧ୍ୟ ସେତେଯେପରି ଭାବଜଗତରେ ସେଥିଲେ ଏକ ଅକମ୍ପିତ ପ୍ରଦୀପ ।

ସମଗ୍ରମାନବୀୟ ବିଶ୍ୱର ମଙ୍ଗଳକର ଚିନ୍ତାର ବାସ୍ତବ ରୂପାୟନ ଅତ୍ୟନ୍ତ ଅଳ୍ପ ସଂଖ୍ୟକ ମଣିଷଙ୍କ ଠାରେ ଦୃଷ୍ଟିଗୋଚର ହୋଇଛି । ଯେଉଁମାନଙ୍କ ଠାରେ

ପରିଦୃଷ୍ଟ ହୋଇଛି । ସେମାନେ ଆଦର୍ଶ ଓ ଅନୁସରଣୀୟ ବ୍ୟକ୍ତି ଭାବେ ବହୁକାଳ ଧରି ଭବିଷ୍ୟତ ପିଢ଼ି ନିମନ୍ତେ ଆଲୋକ ବର୍ତ୍ତିକା ହୋଇ ରହିଛନ୍ତି । ଡାକ୍ତର ଶରତ ଚନ୍ଦ୍ର ମିଶ୍ର ସେହି ପରି ଜଣେ ମହନୀୟ ବ୍ୟକ୍ତି ଥିଲେ, ଯାହାଙ୍କ ସାନିଧ ଲାଭ କରିଥିବା ଲୋକମାନେ ତାଙ୍କର ଆକର୍ଷଣୀୟ ଶୁଦ୍ଧ ଜୀବନର ପ୍ରଭାବକୁ ଏପର୍ଯ୍ୟନ୍ତ ସାଇତି ରଖିଛନ୍ତି ସ୍ୱୀୟ ସ୍ମୃତିର ସଂପାଦନାରେ ଓ ଚିନ୍ତାର ଆବର୍ତ୍ତ ମଧ୍ୟରେ ।

ଜଣେ ସୁଦକ୍ଷ ଚିକିତ୍ସକ ହିସାବରେ ପରିଚୟ ତାଙ୍କ ଜୀବନର ଏକ ସୀମିତାଂଶ ମାତ୍ର । ସେ ଜଣେ ଆଦର୍ଶ ସମାଜସେବୀ ଥିଲେ । ମନୁଷ୍ୟର ସେବାହିଁ ଭଗବାନଙ୍କର ସେବା - ଏହି ଆଦର୍ଶକୁ ନିଜ ଭିତରେ ଉଜ୍ଜୀବିତ କରି ରଖିବାରେ ତାଙ୍କ ଚିକିତ୍ସକ ଜୀବନ ତାଙ୍କୁ ଯଥେଷ୍ଟ ସହାୟତା କରିଥିଲା ।

ସାମାଜିକ କ୍ଷେତ୍ରରେ ସେ କୌଣସି ଗୋଷ୍ଠୀ ବା ସମ୍ପ୍ରଦାୟର ସଙ୍କୁଚିତ ପରିସରରେ ନିଜକୁ ଶ୍ୱାସରୁଦ୍ଧ କରିନଥିଲେ । ପକ୍ଷାନ୍ତରରେ ଜାତି, ଧର୍ମ, ଗୋଷ୍ଠୀ ନିର୍ବିଶେଷରେ ଡାକ୍ତର ମିଶ୍ର ମଣିଷ ଜାତିର ସେବା କରି ଆସିଥିଲେ । ବିଭିନ୍ନ ଧର୍ମସମ୍ପ୍ରଦାୟର କଲ୍ୟାଣକର ଅନୁଷ୍ଠାନରେ ସେ ସ୍କୃତି ପରିଷଦ ଓ ଉତ୍କଳ ଜ୍ୟୋତି ବିଜ୍ଞାନୀ ପରିଷଦର ସେ ଯେପରି ଥିଲେ ଅନ୍ୟତମ କର୍ମକର୍ତ୍ତା, ସେହିପରି ସେ ମଧ ଥିଲେ ଓଡ଼ିଶା ଉର୍ଦ୍ଦୁ ଲାଇବ୍ରେରୀରେ ଉପ-ସଭାପତି ।

ଡାକ୍ତର ମିଶ୍ର ଉତ୍କଳ ବ୍ରହ୍ମବିଦ୍ୟା ସଂଘର ଜ୍ଞାନାଭିଷିକ୍ତ ସ୍ଥିତିରେ ସର୍ବଦା ରହିଥିଲେ । ବ୍ରହ୍ମବିଦ୍ୟାର ତତ୍ତ୍ୱ ସମୂହକୁ ବିଶ୍ଳେଷଣ କରି ସାଧାରଣ ମଣିଷର ମାନସିକ ସ୍ଥିତିରେ ସୁବୋଧ୍ୟ ହେବା ପରି ସେ ଉପସ୍ଥାପନ କରୁଥିଲେ । ପୁରାତନ ପ୍ରଜ୍ଞାର ଅନିର୍ବାଣ ଦୀପ୍ତିକୁ ସ୍ୱୀୟ ଭାଷଣରେ ବ୍ୟାଖ୍ୟା ଓ ବିନ୍ୟାସ କଲାବେଳେ ସେ ନିଜେ ସେ ଦୀପ୍ତିରେ ଉଦ୍‌ଭାସିତ ହୋଇ ଯାଇଥିବା ପରି ମନେ ହେଉଥିଲା । ବ୍ରହ୍ମବିଦ୍ୟା ବିଷୟରେ ସେ ଯେଉଁସବୁ ପୁସ୍ତକ ପୁସ୍ତିକା ରଚନା କରିଛନ୍ତି ତନ୍ମଧ୍ୟରୁ ''ମୁଁ ର ସ୍ୱରୂପ'' ପୁସ୍ତକଟି ସର୍ବୋତ୍ତମ ତହିଁରେ ଜୀବ, ଜୀବାତ୍ମା, ଆତ୍ମା ଓ ପରମାତ୍ମା ସମ୍ପର୍କରେ ବହୁ ତତ୍ତ୍ୱ ସହିତ ମଣିଷର ମନ, ବୁଦ୍ଧି ଓ ଆତ୍ମାର କ୍ରିୟାଶୀଳତା ଗତିର ଉପସ୍ଥାପନା କରାଯାଇଛି ।

ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଅମୃତବାଣୀ – ''ମଣିଷ ଜୀବନ ନୁହଇ କେବଳ ବର୍ଷମାସ ଦିନ ଦଣ୍ଡ, କର୍ମେ ଜୀଏଁ ନର, କର୍ମ ଏକାତା'ର ଜୀବନର ମାନଦଣ୍ଡ'' ସେହି ମହାନ୍ ବ୍ୟକ୍ତିଙ୍କର ଜୀବନରେ ସମ୍ପୂର୍ଣ୍ଣ ପ୍ରତିଫଳିତ ହୋଇ ପାରିଥିଲା ।

ସେହି ଜୀବନ୍ତ ଈଶ୍ୱରଙ୍କର ଦେହାନ୍ତ ହେଲା ତା.୧୫-୧୨-୨୦୦୧ ମାର୍ଗଶୀର ମାସ ଶୁକ୍ଳପକ୍ଷ ପ୍ରତିପଦା ଦିନ ୩ଟାରେ । ଇତିହାସ ପୃଷ୍ଠାରେ ଏହି ମହାମାନବଙ୍କ ମହାନ ବ୍ୟକ୍ତିତ୍ୱର ମହିମାମୟ ଜୀବନ ଗାଥା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଲା ।

ଜୀବନର ସାଧନାକୁ ସାର୍ଥକ, ନିପୁଣ ଓ ଧନ୍ୟ କରିଥିବା ଗଭୀର ଈଶ୍ୱରବିଶ୍ୱାସୀ, ମାନବ କଲ୍ୟାଣକାମୀ, ଉଦାରଚେତା, ଦେବପ୍ରତିମ ଡାକ୍ତର ଶରତ ଚନ୍ଦ୍ର ମିଶ୍ର ଓଡ଼ିଶାର ଜଣେ ବରପୁତ୍ର, ଆଦର୍ଶ ସ୍ଥାନୀୟ ପୂର୍ଣ୍ଣ ମନୁଷ୍ୟ ।



# ବାଲିପାହାଡ଼ର ବାଲ୍ମୀକୀ : ବାଣୀଭୂଷଣ ରଘୁନାଥ

*ପ୍ରଶାନ୍ତ ରଣା*
+୩ କଳା ପ୍ରଥମ ବର୍ଷ

କଟକ ଜିଲ୍ଲାର ବାଙ୍କୀ ସବ୍‌ଡ଼ିଭିଜନ୍ ଅନ୍ତର୍ଗତ ବାଲିପାହାଡ଼ ଗାଁ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ସେହି ଗ୍ରାମର ଜନୈକ ତୈଳିକ ସତ୍ୟବାଦୀ ପୃଷ୍ଟିଙ୍କ ଔରସରୁ ୧୮୭୨ ସାଲ୍‌ରେ ଜନ୍ମଗ୍ରହଣ କରିଥିଲେ ବାଣୀଭୂଷଣ ରଘୁନାଥ ପୃଷ୍ଟି । ରଘୁନାଥଙ୍କର ଶିକ୍ଷାଗତ ଯୋଗ୍ୟତା ଥିଲା ମାତ୍ର ସେ କାଳର ମିଡ଼ିଲ୍ ଭର୍ଣ୍ଣାକୁଲାର୍ ପର୍ଯ୍ୟନ୍ତ । ମାତ୍ର ସେ ବିଦ୍ୟାଳୟ ପ୍ରବୀଣ ହୋଇ ପାରିଥିଲେ ।

ବାଣୀଭୂଷଣ ରଘୁନାଥ କଟକରେ କିଛି କାଳ ଅବସ୍ଥାନ ମଧ୍ୟରେ ତାଙ୍କର ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଥିଲା ଭାଷାକୋଷ ପ୍ରଣେତା ଗୋପାଳ ପ୍ରହରାଜଙ୍କ ପିତା ନରସିଂହ ପ୍ରହରାଜଙ୍କ ସହିତ । ସେହିପରି ଆଜି ବକ୍ସିବଜାରର ମଣିସାହୁ ଛକଟି ଯେଉଁ ମହାଶୟଙ୍କ ନାମରେ ନାମିତ, ସେହି ମଣିସାହୁ ମଧ ଥିଲେ ରଘୁନାଥଙ୍କର ପରମ ସୁହୃଦ୍ । ବାଙ୍କୀର ପଣ୍ଡିତ ଗୋବିନ୍ଦ ରଥ ସେତେବେଳକୁ କଟକରେ ଜଣେ ପ୍ରତିଷ୍ଠିତ ବିଶିଷ୍ଟ ବ୍ୟକ୍ତି ତଥା ପୁସ୍ତକ ପ୍ରକାଶକ । ବାଙ୍କୀର ବାସିନ୍ଦା ଭାବରେ ରଘୁନାଥ ମଧ ତାଙ୍କର ଜୀବନଧାରାପ୍ରତି ଆକୃଷ୍ଟ ହେବା ସହିତ ସମ୍ୟକ୍ ପ୍ରଭାବିତ ମଧ ହୋଇଥିଲେ ।

ବ୍ରହ୍ମପୁରର ଶାରଦା ପ୍ରେସ୍ ଏବଂ ପୁରୀର ଜଗନ୍ନାଥ ପ୍ରେସ୍‌ରେ କିଛି କାଳ କାର୍ଯ୍ୟକଳାପରେ, ସେ ପୁସ୍ତକ ବ୍ୟବସାୟ ଦିଗରେ ମନୋନିବେଶ କରିଥିଲେ । ଏଇ ଅବକାଶରେ ତା'ଙ୍କ ଭିତରେ ସୃଜନ ସ୍ୱପ୍ନ ସୃଷ୍ଟି ହୋଇଥିଲା । ତାଙ୍କ ଲେଖନୀରୁ ନିର୍ଗତ ହେଲା – 'ରସନା ସାରସଂଗ୍ରହ', 'ଭାବପ୍ରକାଶ', 'ସୁଭଦ୍ରା ହରଣ ସୁଆଙ୍ଗ', 'ଲକ୍ଷ୍ମୀପୁରାଣ ସୁଆଙ୍ଗ', 'ରଥଯାତ୍ରା ଭିଡ଼ରେ ବିଜେ', 'ପ୍ରବନ୍ଧ ମଞ୍ଜରୀ' ଆଦି ପୁସ୍ତିକାମାନ । ଏହି ସବୁ କ୍ଷୁଦ୍ର ପୁସ୍ତିକା ମଧ୍ୟରେ ରଘୁନାଥଙ୍କର ସାରସ୍ୱତ ସାଧନର ସ୍ୱାକ୍ଷର ପରିଲକ୍ଷିତ ହୁଏ ।

ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ପରି ସେ ବାଙ୍କୀ ଭୂଖଣ୍ଡରୁ ସୁଦୂର ପଶ୍ଚିମ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳରେ, ସଂପ୍ରତି ମଧ୍ୟପ୍ରଦେଶର ବିଳାସପୁର ଜିଲ୍ଲା ଅନ୍ତର୍ଗତ ତିତିଲଠାରେ ଓଡ଼ିଆ ପୁସ୍ତକର ବ୍ୟବସାୟ, ପ୍ରଚ୍ଛନ୍ନରେ ଓଡ଼ିଆ ଭାଷାର ସୁରକ୍ଷା ସିହତ ପ୍ରଚାର ଓ ପ୍ରସାର ନିମିତ୍ତ ଏକ ବହିଦୋକାନ୍ ଖୋଲିଥିଲେ – ଯାହାର ନାମ ଥିଲା 'ରାଧାଗୋବିନ୍ଦ ପୁସ୍ତକାଳୟ' । କବି ରଘୁନାଥ ତାଙ୍କ ଡାଏରୀରେ ଉଲ୍ଲେଖ କରିଛନ୍ତି, 'ପ୍ରାନ୍ତୀୟ ମୋଫସଲ୍ ଗାଁ ଛତିଶଗଡ଼ର ଓଡ଼ିଆମାନଙ୍କୁ ରାମାୟଣ, ମହାଭାରତ, ନୃସିଂହ ପୁରାଣ, ଭାଗବତାଦି ସେଟ୍ ନେଇ ଯେଉଁମାନଙ୍କୁ ଦେଇଥିଲି, ସେମାନଙ୍କ ଘରେ ଅତିଥିପ୍ରାୟ ଉଆଭାତ ଡାଲମା ଖାଇବା ସହିତ ନୂଆ ଧୋବଲୁଗା ମଧ ପିନ୍ଧୁଥିଲୁ ତଥା ପୁସ୍ତିକାର ମୂଲ୍ୟ ଆଣୁଥିଲୁ । ଏ ଯୁଗକୁ ଏହା ହାସ୍ୟାସ୍ପଦର ଘଟଣାବୋଧ ହେବାକୁ ଲାଗୁଅଛି ।

ସୁ-ପ୍ରତିଷ୍ଠିତ ରାଧାଗୋବିନ୍ଦ ପୁସ୍ତକାଳୟର ପ୍ରଚାର ପ୍ରସାର ନିମିତ୍ତ ୧୯୨୦ ସାଲ୍ ବେଳକୁ ସେ ଗାଡ଼ି ମଟର୍ ନଥିବା ଯୁଗରେ ପାଦରେ ଚାଲିଚାଲି ମଧ୍ୟପ୍ରଦେଶର ଭୋପାଳଠାରୁ ବମ୍ବେର ବହୁ ପୁସ୍ତକ ବ୍ୟବସାୟ ସଂସ୍ଥାସହ ଯୋଗସୂତ୍ର ସ୍ଥାପନ କରିପାରିଥିଲେ । ଏପରିକି ବନାରସର 'ଭେଙ୍କଟେଶ୍ୱର ପ୍ରେସ୍', ନିର୍ଣ୍ଣୟ ସାଗର ପ୍ରେସ୍ ସହ ମଧ ସେ ସଂପର୍କ ରକ୍ଷା କରିଥିଲେ ।

୧୯୨୫ ମସିହାରେ ତାଙ୍କର ଏକ ପୁସ୍ତିକା ପ୍ରକାଶ ପାଇଥିଲା; ଯାହାର ନାମ ଥିଲା 'ଭାବି ନବ ଯୁଗାରମ୍ଭ' । 'ରଘୁନାଥ ବିଳାସ' ନାମକ ଏକ ଅସଂପୂର୍ଣ୍ଣ

କାବ୍ୟ ମଧ ତାଙ୍କର ରହିଛି । 'ପାଟ ପୁଷ୍ପାଞ୍ଜଳି', 'ରାଧାଗୋବିନ୍ଦ ଚୌତିଶା', 'ନଳ ଦମୟନ୍ତୀ' ଆଦି ପୁସ୍ତିକାମାନ ମଧ ସେହି ବିଚ୍ଛିନ୍ନାଞ୍ଚଳରେ ଅବସ୍ଥାନପରେ ହିଁ ସେ ରଚନା କରିଥିଲେ । ଏହି ଆଲୋଚନାରେ କବିଙ୍କର 'ନଳ ଦମୟନ୍ତୀ' ପୁସ୍ତିକାରୁ ଦି'ପଦ ସ୍ମରଣ କରାଯାଉ :-

''ଏଥୁ ଅନ୍ତରେ ଶୁଣ ସୁଧୀରେ
ବିଦର୍ଭେ ଦମୟନ୍ତୀ
ହଂସ-ବାରତା ସ୍ମରି ଦୁଃଖିତା
ନଳଙ୍କୁ ମନେ ଚିନ୍ତି ।
ତେଜି ଅଶନ ବାସ ଭୂଷଣ
ଶରୀର ବିଷର୍ଣ୍ଣତା'
ଇକ୍ଷଣେ ଆଳି ଅନ୍ତରେ ଭାଳି
ବାରଣ ଦେଲେ ମା'ତା ।।''

(ବାଗ୍ମୀ ଶ୍ରୀଯୁକ୍ତ ଧନେଶ୍ୱର ତ୍ରିପାଠୀଙ୍କଠାରୁ ସଂଗୃହିତ)

ହଂସ-ଦୂତ ମାଧ୍ୟମରେ ନଳ ଦମୟନ୍ତୀ ମଧ୍ୟରେ ପୂର୍ବରାଗ ପ୍ରେମ ଓ ପ୍ରଣୟ ସମ୍ପର୍କ ବାଣୀଭୂଷଣ ରଘୁନାଥଙ୍କ ଲେଖନୀରେ ଅପୂର୍ବ ହୋଇ ଉଠିଛି । ସଖୀମେଳରେ ଦମୟନ୍ତୀର ସ୍ନାନ ଦୃଶ୍ୟ ମଧ ମୁଗ୍ଧକର ହୋଇଛି 'ନଳଦମୟନ୍ତୀ' ପୁସ୍ତିକାରେ । ପ୍ରାଚୀନ ବିଷୟବସ୍ତୁରେ କବି ଅଭିନବ ଭାବ ବର୍ଣ୍ଣାଳୀ ସୃଷ୍ଟିକରିଛନ୍ତି । କାବ୍ୟର ଶେଷ ଭାଗରେ ସେ ମଞ୍ଜିରୁ ତେଲ ବାହାର କରିବା ଯାହାର କୁଳ ବେଉସା, ସେ କିପରି ଭାଷା ମନ୍ଥନ କରି କାବ୍ୟ-ରସ ସୃଷ୍ଟି କରିପାରିଛନ୍ତି, ତାହାର ସୂଚନା ଦେଇଛନ୍ତି । ପୂର୍ବରୁ କୁହାଯାଇଛି, କବିଥିଲେ ତୈଳିକ-ବଂଶଜ ।

''ଯା' ମର୍ଦ୍ଦନେ ପ୍ରଭଞ୍ଜନ-ନାଶେ ହୃଦୁଁ ଅଭିମାନ
ଇଦୃଶି ପଦ ନିର୍ମାଣେ-ଜୀବିକା ଯା'ର
ସେ ବଂଶୁ ସମ୍ଭୂତ ଉପାଧି
ବାଣୀଭୂଷଣ ପଞ୍ଚାଶ ପଦେ ସମ୍ପାଦି ।''

୧୯୨୦ ସାଲ୍‌ରେ ବନାରସ୍‌ର ହିନ୍ଦୁ ବିଶ୍ୱବିଦ୍ୟାଳୟର ଅଧକ୍ଷ ମହୋଦୟଙ୍କ ପକ୍ଷରୁ କବି ରଘୁନାଥଙ୍କୁ 'ବାଣୀଭୂଷଣ' ଉପାଧିପ୍ରଦାନ କରାଯାଇଥିଲା ।

କବିଙ୍କର ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ସହିତ ସଂପର୍କର କଥା ସେ ତାଙ୍କ ଡାଏରୀରେ ଉଲ୍ଲେଖ କରି ଯାଇଛନ୍ତି । ସେ' ଲେଖିଛନ୍ତି, ତା ୧୬-୦୨-୧୯୪୦ ମସିହା ମାଘଶୁକ୍ଳ ଅଷ୍ଟମୀ ଭୀଷ୍ମାଷ୍ଟମୀ ଅମୃତ ଯୋଗରେ ଭୂପାଳ ରହଣିରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ହେଲା । ସେଠାରେ ସେ ପ୍ରତି ଶୁକ୍ରବାରେ ମହାତ୍ମାଗାନ୍ଧୀଙ୍କ ଦର୍ଶନରେ ଦେଶ ଓ ଦେଶର ଭାଷାର ଉଦ୍ଧାର ବିଷୟରେ କଥାବାର୍ତ୍ତା ହେଉଥିଲା । ତାଙ୍କ ଡାଏରୀର ୨୦୦ ପୃଷ୍ଠାରେ ଉଲ୍ଲେଖ ରହିଛି, ସେ ମହାତ୍ମାଜୀଙ୍କ ସ୍ୱହସ୍ତ କମଳରେ ଟ ୦।୯ (ସାତଅଣା) ମାତ୍ର ଦର୍ଶନୀ ଭେଟି ଅର୍ପଣ କରି ତହିଁର ରସିଦ ଆଣିଥିଲେ ଏବଂ କୃତାର୍ଥ ହୋଇଥିଲେ ।

ବାଙ୍କୀର ଏକ ଅଖ୍ୟାତ ଗ୍ରାମରୁ ସୁଦୂର ମଧପ୍ରଦେଶ ଓ ଛତିଶଗଡ଼ରେ ଯାଇ ବିଗତ ଶତାବ୍ଦୀରେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରସାର ପାଇଁ ନିରଳସ ଉଦ୍ୟମ କରିଥିବା ଏହି କବିଙ୍କୁ ଆଜି ଓଡ଼ିଶା କାହିଁକି, ବାଙ୍କୀ ଅଞ୍ଚଳର ମଧ ବହୁତ କମ୍ ଲୋକ ଜାଣନ୍ତି । ପଣ୍ଡିତ ଗୋବିନ୍ଦ ରଥ, ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ପରି ମା' ଚର୍ଚ୍ଚିକାର ଆଶୀର୍ବାଦରେ ସତେଯେପରି ବାଣୀଭୂଷଣ ରଘୁନାଥ ଜନ୍ମଭୂମିଠାରୁ ସୁଦୂର ଅଞ୍ଚଳରେ ଯାଇ ମାତୃଭାଷାର ମର୍ଯ୍ୟାଦା ରକ୍ଷା ନିମନ୍ତେ ସାରସ୍ୱତ ସାଧନା କରିଯାଇଛନ୍ତି । ଅର୍ଣ୍ଣାବାତ ରୋଗରେ ପୀଡ଼ିତ ହୋଇ ତାଙ୍କର ତିରୋଧାନ ଘଟିଥିଲା ୧୯୪୦ ସାଲ୍‌ରେ ମଧପ୍ରଦେଶର ରାୟଗଡ଼ ଅନ୍ତର୍ଗତ ତିତଲା ଗାଁରେ । ତାଙ୍କର ତିରୋଧାନ ସହିତ, ତାଙ୍କ ଦ୍ୱାରା ସେଠାରେ ପ୍ରତିଷ୍ଠିତ 'ରାଧାଗୋବିନ୍ଦ ପୁସ୍ତକାଳୟ'ଟି ମଧ ବିଲୁପ୍ତ ହୋଇଗଲା । ଆଜି ଓଡ଼ିଆ ଜାତି, ବିଶେଷକରି ବାଙ୍କୀବାସୀଙ୍କ ପକ୍ଷରୁ ସେହି ବାଲିପାହାଡ଼ ଗ୍ରାମର ବାଲ୍ମୀକୀଙ୍କୁ ବିସ୍ମୃତ ପ୍ରାୟ ଉଇହୁଙ୍କା ମଧରୁ ପୁନରୁଦ୍ଧାର କରିବା ଏକ ସାମୂହିକ ଉଦ୍ୟମ ହେବ ଆବଶ୍ୟକ ।



# ଜଣାଏ ସଭିଙ୍କୁ ଅଭିନନ୍ଦନ କ୍ରାନ୍ତିର ଅନୁରାଗୀ

*ଅଧ୍ୟାପକ ଶ୍ରୀ ପ୍ରଫୁଲ୍ଲ କୁମାର ସୁବୁଦ୍ଧି*
ଇଂରାଜୀ ବିଭାଗ

ପ୍ରଣୟ ବିଭୋର କ୍ରୌଞ୍ଚ ମିଥୁନ
ସେ ଦିନ ତମସା ତୀରେ
ରଚିଥିଲା ତା'ର ଯୁଗଳ ମିଳନ
ରମ୍ୟ ପ୍ରକୃତି କୋଳେ ।
ନିଷ୍ଠୁର ବ୍ୟାଧ ଆଗ୍ନେୟତୀର
ଭେଦିଲା ପୁରୁଷବକ୍ଷ
ଭୂଲୁଣ୍ଠିତ ହେଲା ନିମିଷ ଅନ୍ତରେ
ନିଥର ତାହାର ପକ୍ଷ ।
କ୍ରୌଞ୍ଚ ବିରହେ କ୍ରୌଞ୍ଚ ପକ୍ଷିଣୀ
ନୟନୁ ଅଶ୍ରୁଧାର
ଝରିପଡ଼ିଥିଲା ବନାନୀ ବୁକୁରେ
ଉଚ୍ଚାଟ ହାହା କାର ।
ସହସା ସେ ଚିତ୍ର ମହର୍ଷି ବାଲ୍ମିକୀ
ଦୃଷ୍ଟିରେ ଗଲା ଛାପି
ବିଗଳିତ କଲା କଠୋର ହୃଦୟ
ବେଦନାର ପ୍ରତିଲିପି
ତାପସ ବାଲ୍ମିକୀ କ୍ରୁଦ୍ଧ ହୃଦୟୁ
ଅଭିଶାପ ଗଲା ଝରି
''ମୂର୍ଖ ନିଷାଦ କାଳେ କାଳେ ତୁହି
ଅପଯଶ ନେବୁ ବରି'',
ଋଷି ଅନ୍ତରର ବିଗଳିତ ବାଣୀ
କବିତାର ଆଦିମନ୍ତ୍ର,
ଯୁଗେ ଯୁଗେ ତାହା ଅଭିବନ୍ଦିତ
ମାନବିକତାର ସ୍ତୋତ୍ର
ଜୀବନ ବେଦୀର ପୁଣ୍ୟ ପୁରୋଧା
ଆଦ୍ୟ ଓଁକାର ଧ୍ୱନି
ସିକ୍ତ କରିଲା ସୃଷ୍ଟିର ଗାନ
କରୁଣାର ମନ୍ଦାକିନୀ

ଅଭିମନ୍ତ୍ରିତ କବି କଳାକାର
ଲେଖନୀ ଓ ତୁଳୀ ଧରି
ସର୍ଜ୍ଜନାକଲେ ଜୀବନର ଛବି
ଯୁଗ ଯୁଗ ଅନୁସରି ।
ଚଉପାଶେ ଆଜି ହିଂସାର ଧ୍ୱନି
କରୁଣା ହୋଇଛି ମ୍ଳାନ
ବାଲ୍ମିକୀ ବଂଶ ବିଲୟ ହେଲାଣି
ବ୍ୟାଧ ବଂଶ ଉତ୍‌ଥାନ
ଜୀବନବେଦୀର ମନ୍ତ୍ର ହୋଇଛି
ଆଦିମ ବର୍ବରତା
ଅପସଂସ୍କୃତି ଜୁଇରେ ଜଳୁଛି
ମାନବିକତାର ଚିତା
ସଂସ୍କୃତିର ଏ ସନ୍ଧିକ୍ଷଣରେ
ହେ ମୋର ତରୁଣ କବି ।
ଲେଖନୀରେ କେଉଁ ଛନ୍ଦ ତୋଳିବ
ଫୁଟାଇ ଜୀବନ୍ ଛବି ?
ବେସୁରା ଜୀବନ ଯଜ୍ଞବେଦୀରେ
ଶାଶ୍ୱତ ସାମଗାନ
ବାଢ଼ିକି ପାରିବ, ହୃଦୁର ଶୋଣିତ
ତିଳ ତିଳ କରି ଦାନ ।
ହିଂସା, ଦ୍ୱେଷ ଏ ସମାଜର ବୁକେ
ମୈତ୍ରୀର ସୁରଧୂନୀ
ତୋଳି କି ପାରିବ ଜୀବନ ବୀଣାରେ
ନୂତନ ସଂଜିବନୀ
ତେବେ ଏ ପ୍ରୟାସ ସାର୍ଥକ ହେବ
ଆଗାମୀ ସକାଳ ଲାଗି
ଜଣାଏ ସଭିଙ୍କୁ ଅଭିନନ୍ଦନ
କ୍ରାନ୍ତିର ଅନୁରାଗୀ



# ମା' ପରି କିଏ ହେବ

ଉଷାରାଣୀ ସାମଲ
+୨ କଳା ଦ୍ୱିତୀୟ ବର୍ଷ

ମା' ପରି କିଏ ହେବ ?
ପାଠପଢ଼ା ସାରି ଫେରିଲା ବେଳକୁ
ଘରେ ଚାହିଁ ବସିଥିବ ।
ମା' ପରି କିଏ ହେବ ?
ଘରେ ପଶୁ ପଶୁ କହିବ ଦେଖିଲେ
ପେଟ ପିଠି ତୋର ପଶି ଗଲାଣିରେ
ନିଜେ ସେ ଉପାସ ଥିବ ।
ମା' କରି କିଏ ହେବ ?
ଯେତେ କଟୁ କଥା କହିଲେ ବି ସିଏ
ପଣତେ କୋଳେଇ ନେବ ।
ମା' ପରି କିଏ ହେବ ?
ନିଜେ ପିନ୍ଧୁଥିବ ଚିରାକନା ପଛେ
ତୋତେ ନୂଆ ପିନ୍ଧାଇବ ।
ମା' ପରି କିଏ ହେବ ?
ରୋଗ ଶଯ୍ୟାରେ ପଡ଼ିଥିଲାବେଳେ
ମନ ମାରି କାନ୍ଦୁଥିବ
ଈଶ୍ୱରଙ୍କୁ ଡାକୁଥିବ
ମା' ପରି କିଏ ହେବ ???



# କ'ଣ କହନ୍ତି କିଏ !

ପ୍ରଭାସ ରଞ୍ଜନ ମହାପାତ୍ର
+୨ କଳା ଦ୍ୱିତୀୟ ବର୍ଷ

ବାପାତ କହନ୍ତି
ଉଡ଼ିବୁ ଉଚ୍ଚରେ ଆକାଶେ ଯେମନ୍ତେ ପାରା
ମାଆ ତ କହନ୍ତି
ଲୋକ ଦେଖିଚାହିଁ କଥା କହୁଥିବୁ ପରା ।
ଗୁରୁ କହିଛନ୍ତି
ମଲା ପରିଯନ୍ତେ ସମସ୍ତେ ପଢ଼ିବ ପାଠ
ଯେତେ ଘଷୁଥିବ ସେତେ ବାସୁଥିବ ପାଠତ ଚନ୍ଦନ କାଠ ।
କଅଁଳ ବଚନ କହି
ସଭିଙ୍କୁ ତୋଷିବ ଖର୍ଚ୍ଚ ହେଉନି ପଇସାତ ସେଥିପାଇଁ ?
ଭାଇତ କହନ୍ତି - କଷ୍ଟ ସହିଲେ କୃଷ୍ଣ ମିଳଇ ହସି
ବାନ୍ଧିଜାଣିଲେ ମଥା ସୁନ୍ଦର ଭାଉଜ କହନ୍ତି ହସି
ବୁଢ଼ୀ ମାଆ କହେ ମଣିଷ ଦିଶଇ ପାଠପଢ଼ି ଦାଉଦାଉ
ଆଇ ବୁଢ଼ୀ କହେ ନାତିରେ ଆଣିବୁ ଶୁଆନାକୀ ସୁନାବୋହୂ
ତମାଳି କରନ୍ତି ଅଜା
ପ୍ରେମ କରିବତ ଡରିବ କାହିଁକି କଥାଗୁଡ଼ା ଭାରି ମଜା ।
ଶ୍ୱଶୁର କହନ୍ତି ବିଲାତ ଯିବାକୁ ଚାକିରୀ ଲୋଡ଼ନ୍ତି ଶାଶୁ
ବେଶ୍ ଭଲ ଆଜି ଦିଶୁଚ ଭାଇନା ଶାଳୀ କହେ ଆସୁ ଆସୁ ।
ସାନ, ଭଉଣୀଟି ସରଗେ କହଇ, ଭାରିଭଲ ମୋର ଭାଇ
ମୋର ଭାଇପରି ଏତେ ଭଲ ଆଉ ଦୁନିଆରେ କେହି ନାହିଁ
ଚୁପି କହେ ଘରବାଲୀ
ଭାରିଭଲ ଲାଗେ ଯେତେବେଳେ ପ୍ରିୟ
ଡାକିଦିଅ ରାଣୀ ବୋଲି ।



# ବାସ୍ନା ଏକ ଫେରାର୍ ଗୋଲାପର

*ପ୍ରଶାନ୍ତ କୁମାର ସ୍ୱାଇଁ*
+୩ ବିଜ୍ଞାନ ଦ୍ୱିତୀୟ ବର୍ଷ (ପଦାର୍ଥ ବିଜ୍ଞାନ ସମ୍ମାନ)

ରାତ୍ରିର ଗଭୀରତା ମଧ୍ୟରେ ମୁଁ ବୁଲୁଥିଲି
ଏକ ଲକ୍ଷ୍ୟଶୂନ୍ୟ  ନିଶାଚର ଭଳି
ଆଉ ଉନ୍ମାଦିତ ହେଉଥିଲି ଗନ୍ଧ ପାଇ
ଏକ ଅପୂର୍ବ ଶିହରଣର,
ନିଦ୍ରିତ ବସନ୍ତର ମୃଦୁ ମଳୟ ସହିତ ତାଳଦେଇ
ସେହି ବାସ୍ନାଟା ଝଙ୍କୃତ କରୁଥିଲା ମୋ ହୃଦୟକୁ
ଏକ ନୈସର୍ଗିକ  ସ୍ୱରରାଗିଣୀରେ,
ହେଲେ ଅନ୍ଧାରୀ ରାକ୍ଷସଟା ମୋତେ ପ୍ରତିରୋଧ କରିବାର
ପ୍ରଚେଷ୍ଟାରେ ଥିଲା
ମୁଁ କିନ୍ତୁ ମାଡ଼ି ଚାଲିଥିଲି ଆଗକୁ ଆଗକୁ
କାରିଗିଲ୍‌ରେ ଯୁଦ୍ଧରତ ଯବାନ ପରି,
ପ୍ରତିସ୍ପର୍ଦ୍ଧିତ ନୟନ ଦୁଇଟି ମୋର
ବିଶ୍ରାମ ନେବା ପାଇଁ  ଜିଗର୍ କରୁନଥିଲେ ।
ମସ୍ତିଷ୍କର ସ୍ନାୟୁଗୁଡ଼ିକ ମଧ୍ୟ ଅଭିପ୍ରାୟକୁ ଅଧିକାର କରିବା
ପାଇଁ ପାଗଳ ହୋଇ ଉଠୁଥିଲେ
ତଥାପି ଜାଣି ପାରୁନଥିଲେ ସେମାନେ
ଏହି ବାସ୍ନାଟ ହେଉଛି
ଏକ ଫେରାର୍ ଗୋଲାପର.....



# ହରହର ମହାଦେବ

*ସର୍ବେଶ୍ୱର ଦାଶ*
+୩  ଶେଷ ବର୍ଷ ବାଣିଜ୍ୟ (ସମ୍ମାନ)

ଦେବ ଦେବ ମହାଦେବ
ନୀଳକଣ୍ଠ ତୁମେ ଶିବ
ତ୍ରିନେତ୍ର, ତ୍ରିଶୂଳଧାରୀ
ବୃଷଭ ବାହନ ତୁମ୍ଭ ।
ଜଟେ ତୁମ ଶୋହେ ଗଙ୍ଗା
ଗଳେ ତୁମ ନାଗରାଜ
ବ୍ୟାଘ୍ର ଚର୍ମ ଦ୍ୱାରା ତୁମେ
ହୋଇଥାଅ ସଜବାଜ ।
ସମୁଦ୍ର ମନ୍ଥନେ ତୁମେ
ପାନ କରିଥିଲ ବିଷ
ଭକ୍ତ ଉପରେ ଥାଏ ସଦା
ତୁମ କୃପା ଓ ଆଶିଷ ।
ବାର ମଧ୍ୟେ ତୁମ୍ଭ  ପ୍ରିୟ
ସୋମ ଏବଂ ଶନିବାର
ତିଥି ମଧ୍ୟେ ଏକାଦଶୀ
ମନସ୍କାମ ପୂର୍ଣ୍ଣ କର ।
ବେଲ ପତ୍ର, ଚନ୍ଦନରେ
ତୁମେ ପରସନ୍ନ  ହୁଅ
ଶତବାର ଜପ କଲେ
ପାପତା'ର ଧୋଇ ଦିଅ ।
ବିପଦ ଆପଦେ ସଦା
ହୋଇଥାଅ ତୁମେ ସାହା
ବିପଦରେ ସ୍ମରି ଦେଲେ
ଆଗେ ଆସି ହୁଅ ଠିଆ ।
ନମିଷକ ମଧ୍ୟେ ତୁମେ
ସଙ୍କଟ ମୋଚନ କର
ଶିବଶଙ୍କର ହେ ପ୍ରଭୁ
ସକଳ ଯାତନା ହର ।।



# ଦେବଦାସ

*ସୁଶ୍ରୁତ ମହାପାତ୍ର*
+୩ ଦ୍ୱିତୀୟ ବର୍ଷ (ଇଂରାଜୀ ସମ୍ମାନ)

ନାଳି ପାଣି, ଚନ୍ଦ୍ରମୁଖୀ, ପାରୋ.....
ହଠାତ୍ ଫିକ୍‌କିନା ହସିଦେଲା ସେ
କିଛି ବୁଝି ପାରିଲିନି
ତା'ଠାରୁ ଏଭଳି ପ୍ରତ୍ୟୁତ୍ତର ପାଇ
ମଳିନ ଆଖିର ଗଭୀରତା ଅଧା ଝରା ଲୁହ
ମୋତେ ସଚେତନ କରାଇ ଦେଲା
ତା' ଅମା ଅନ୍ଧକାର ଭର୍ତ୍ତି ଜୀବନ ବିଷୟରେ
ପଚାରିଥିବ ଗୋଟିଏ ପ୍ରଶ୍ନ ?
ଉତ୍ତର ଥିଲା ।

୧- ଶେଫାଳୀ
୨- ଦୁଦୁରା ଓ
୩- ଅଧାଖୋଲା ଜୀବନ ଫାଟକ



# ଶୂନ୍ୟତା

*ରତିକାନ୍ତ ନାୟକ*
+୩ ଦ୍ୱିତୀୟ ବର୍ଷ (ପଦାର୍ଥ ବିଜ୍ଞାନ ସମ୍ମାନ)

ଶୂନ୍ୟତା
ଶୂନ୍ୟତା ବୋଲି ଯେ,
ଅବସ୍ଥାନ ନୁହେଁ ତୁମ ମହାଶୂନ୍ୟରେ
ସ୍ଥାନିତ ଯେ,
ନିବିଡ଼ତାର ପୃଥିବୀରେ ।
ଅର୍ଥହୀନ ତା' ପାଇଁ
ଦିନର ସଞ୍ଚାର ଆଲୋକ
ସନ୍ଧ୍ୟା ରାତ୍ରୀର ଆରମ୍ଭ
ଗଛ ଓ ତା'ର ପତ୍ରର ସଂପର୍କ
କାରଣ ଚିନ୍ତା ଟାର ସ୍ଥାନ ଫାଙ୍କା
ହୃଦୟ ଆଉ ମସ୍ତିଷ୍କରେ ।
ଅନ୍ତର ଯେବେ ଆବେଗ ଶୂନ୍ୟ
ନା ସେଠି ପହଞ୍ଚି ପାରେ
ପ୍ରକୃତି କି ପ୍ରାଣର ସ୍ପନ୍ଦନ
ଯେଉଁଠି ତୁମେ ରାଜୁତି କର
ଅଚେତନ, ନିଷ୍ପ୍ରାଣ ଓ ଗତିହୀନ
ଗୋଟିଏ କାନ୍ଥ ପରି ।
କିଛି ତ ଦେଲନି
ଲୋକମାନେ ବାଣ୍ଟି ନେଉଥିବା ଦୁଃଖରୁ
ଛୋଟ ଭାଗଟେ ବି ନୁହେଁ ;
ଓଃ ଏଥିପାଇଁ ବୋଧେ
ହତାଶ, କିଛି ନ ପାଇବାର ବଳିଷ୍ଠ ଅନୁଭୂତି
ତୁମ ସାମ୍ରାଜ୍ୟକୁ ପଶିଯିବ ବୋଲି ।
ସାବଧାନ,
ନ ହେଲେ ହୁଏତ
ଉଦ୍ଦେଶ୍ୟ ସ୍ରଷ୍ଟାର ଗାଣିତିକ ଫଳନ ଟା
ଭୁଲ ହୋଇଯିବ ।
ଯେବେ ଅଭିପ୍ରାୟଟା
ବିଚ୍ଛିନ୍ନ ହେବ ସୃଷ୍ଟିଠାରୁ ।।



# ଆକ୍ଷେପିତ, ଅଭିସାର ମୋର !

*କାମାକ୍ଷୀ ପ୍ରସାଦ ଦାସ*
+୩ ଦ୍ୱିତୀୟ ବର୍ଷ (ପ୍ରାଣୀବିଜ୍ଞାନ ସମ୍ମାନ)

ହେ ସମାଜ,
ତୁମର ସେ ସନ୍ଦେହ ସଂଶ୍ଳିଷ୍ଟ
ବୁମେରାଂ ଆଘାତ
ସାଜିଛି ଅଗ୍ରଦୂତ
ମୋତେ କରିବାରେ
ରକ୍ତାକ୍ତ, ରକ୍ତସିକ୍ତ
ଧାବମାନ ଶିକାର ।
ମୋ' ସଂପର୍କକୁ ଦୁର୍ବିସହ କରି
ତୁମେ ଫୁଟାଇଛ ପ୍ରଶ୍ନ ଫୁଲଝରୀ
ଆଉ ତା'ର ତତଲା ଶିହରଣେ
ଜୀବନ ନନ୍ଦିଘୋଷ ମର୍ମାହତ ଯାହା
ସାର୍ଥକ ସାରଥୀ ମୋର ।
ତୁମ କଳୁଷିତ ଆଖିରେ
କଳଙ୍କିତ କଜ୍ଜଳର ଲେପ
ଜୟଦ୍ରଥ ପୌରୁଷ ସ୍ୱରୂପ
ହେଲେ ତୁମର ସେ ଅଭେଦ୍ୟ ପ୍ରହରୀକୁ
ବିଜୟ କରିଛି କୁରୁ ଚକ୍ରବ୍ୟୂହ ।
ହେଲେ ଫେରିବାର ବାଟ ନାହିଁ
ହଜିଛି, ହଜେଇଛି ସବୁ କିଛି
ଗଡ଼େଇଛି ପ୍ରତି ରକ୍ତବିନ୍ଦୁ ମୋ ପାଇଁ
ତା'ପରେ ଆମିବା ଆକୃତି ଜୀବନ ମୋ
ଆହତ ଅସହାୟ ସୁପ୍ତନୀରବ ସୈନିକ
ଆଉ ବାଟ କମା ଅଳ୍ପ ମୁହୂର୍ତ୍ତର ।



# ପିତା ମାତା

*ରଶ୍ମି ରଥ*
+୩ ଦ୍ୱିତୀୟ ବର୍ଷ (ମନସ୍ତତ୍ୱ ସମ୍ମାନ)

ଯେବେ ଏକୀଭୂତ
ପାଦତଳ ମାଟି
ଆକାଶର ଧ୍ରୁବ
ସ୍ଥିର, ଅବିଚଳ, ବିସ୍ତୀର୍ଣ୍ଣ 'ସାହାରା' ପାଲଟେ
ସେ ଆଜନ୍ମ ସାହାରା ସାଜନ୍ତି
'ପିତା' ନାମେ ନିଜ ହାତେ
ଭାଗ୍ୟ ରଶ୍ମି ସେ ଟାଣନ୍ତି
ଆମରି ଲଲାଟେ

x x x

ସବୁକିଛି ସହିଯିବାକୁ
ଯେବେ ପ୍ରତିଶ୍ରୁତି ଲୋଡ଼ା ହୁଏ
ଢ଼ଳଢ଼ଳ ପଦ୍ମପତ୍ରର ଆବରଣେ
ଆଶ୍ରା ଖୋଜାହୁଏ
ମନେପଡ଼େ 'ମା' ଶବ୍ଦ,
ମା'ର ପଣତ,
ଯା'ର ସ୍ନେହ ଆଗେ
ହାର ମାନେ
ପାର୍ଥିବ ସମୃଦ୍ଧି
ସ୍ୱର୍ଗର ଅମୃତ



## ଜାଗିଉଠ ଆହେ ବୀର ସନ୍ତାନ

*ଜ୍ଞାନରଞ୍ଜନ ମିଶ୍ର*
+୨ବିଜ୍ଞାନ ପ୍ରଥମ ବର୍ଷ

ଜାଗିଉଠ ଆହେ ବୀରସନ୍ତାନ
ବୀରତ୍ୱର ଭାବ ନେଇ
ଦୂର କରିଦେବା ଦେଶରୁ ଆତଙ୍କ
ସର୍ବେ ଏକତ୍ରିତ ହୋଇ
ଦେଶସେବା ପାଇଁ ଜୀବନକୁ ଆମେ
ଦୀପଭଳି ଜାଳିଦେବା,
ନିଜେ ଜଳି ଆମେ ଭାରତମାତାର
ସୁଖ ଶାନ୍ତି ଫେରାଇବା
ଦୀର୍ଘଦିନ ଧରି ବିଦେଶୀ କବଳେ
ବନ୍ଦୀ ଥିଲା ଆମ ଦେଶ
ଅହିଂସାର ବଳେ ଗାନ୍ଧିଜୀ ହେ ତୁମେ
ରଖିଥିଲ ମାଆ ଯଶ ।
ସୁଭାଷ ବୋଷ ହେ କାହିଁ ଚାଲିଗଲ
ମାଆ କୋଳ ଶୂନ୍ୟ କରି,
ଆଜି ମଧ ସେହି ମାଆ କାନ୍ଦୁଅଛି
ତୁମ ସ୍ମୃତି ଝୁରି ଝୁରି
ସୁପ୍ତ ଭାବରେ ଭାରତୀୟମାନେ
ଯାଇଛନ୍ତି ଆଜି ଶୋଇ
ଅଧୁନାଯୁଗର ମନ୍ତ୍ରୀଯନ୍ତ୍ରୀ ଗଣ
ରାଜକୋଷ ଯା'ନ୍ତି ଖାଇ
ବୀର ସନ୍ତାନ ହେ ଜାଗିଉଠ ସର୍ବେ
ତେଜି ଏ ଆଳସ୍ୟ ପଣ,
ଏକତା ବଳରେ ଆଗେଇ ଯିବାରେ
ଶତ୍ରୁ ସହ କରି ରଣ ।



## ପ୍ରିୟତମା

*ଜିତେନ୍ଦ୍ର କୁମାର ସାହୁ*
+୩ ଦ୍ୱିତୀୟ ବର୍ଷ (ଶିକ୍ଷା ସମ୍ମାନ)

ଖୋଲା ରଖିଥା....
ହୃଦୟର ଦ୍ୱାର......
ଯେକୌଣସି ଅବସ୍ଥାରେ
ଯେକୌଣସି ମୁହୂର୍ତ୍ତରେ
ମୁଁ ପହଞ୍ଚିଯିବି
ତୋ...... ଠାରେ ।
ତୋଳିଦେବି
ଆମ ଲାଖି ଏକାମ୍ର ନଅର ।
ସଜାଇବି ପ୍ରୀତିରତ୍ନପୁର !!
ସେଠି ; ସବୁବେଳେ
ଜହ୍ନ ଥିବ ମନ ଥିବ
ଥିବ ବି, ଫୁଲ ଓ ଫଗୁଣ ।
ମଳୟର ମଧୁ-ରୋମାଞ୍ଚ କମ୍ପନ ।
ଗଳ୍ପ କବିତାର
ରୁଣୁଝୁଣୁ ଅସଂଖ୍ୟ ତୋରଣ !!



# ମା' ସବୁଠାରୁ ବଡ଼

*ସୁଶାନ୍ତ କୁମାର ମହାପାତ୍ର*
+୩ ପ୍ରଥମ ବର୍ଷ (ସଂସ୍କୃତ ସମ୍ମାନ)

ସଭିଏଁ କହନ୍ତି ମା' ମା' ବୋଲି
ମା' କଥା କିଏ ବୁଝେ ।
ସୁଆଦ ଜିନିଷ ଖାଇଲା ବେଳକୁ
ମା'କୁ କିଏ ବା ଖୋଜେ....
ନିଜେ ପିନ୍ଧୁ ପରା ଦାମିକା ପୋଷାକ
ମା' ପିନ୍ଧେ ଚିରା କନା
ଆମେ ଶୋଇଯାଉ ପଲଙ୍କଗଦିରେ
ମା' ଶେଯ ଭୂଇଁ ସିନା.....
କେତେ କଟୁ କଥା କହିଲୁ ମା'କୁ
ମାରିଛୁ ଗୋଇଠା ମାଡ଼
କେବେ ବି ଭାବିଛୁ ଏପିଲା ବୟସେ
ମା' ସବୁଠାରୁ ବଡ଼.....
ଭୁଲ୍ କଲେ ଆମେ ଆମ ଉପରେ
ବାପା ଯେ ରାଗନ୍ତି କେତେ
ବାପାଙ୍କୁ ବୁଝାଇ ମା'ଯେ ପାଆନ୍ତି
ଦୁଃଖ ଦୁର୍ଦ୍ଦଶା ଯେତେ.....
ପେଟେ ଓଦାକନା ଦେଇ ସିଏ ଶୁଏ
ଖାଏ ଲୁଣ ଶାଗ ଭାତ
ଆମ ପାଇଁ ରାନ୍ଧେ ଆମ ପାଇଁ କାନ୍ଦେ
କିଏ ସେ ଭାବିଛ ସତ..... ।



# ସେଇ ମୋ ମାତୃଭାଷା

*ବିଜୟ କୁମାର ବାରିକ*
+୩ ପ୍ରଥମ ବର୍ଷ (ମନସ୍ତତ୍ତ୍ୱ ବିଜ୍ଞାନ ସମ୍ମାନ)

ଜନମ ଯିଏ ଦେଇଛି ମୋତେ
ନାଆଁଟି ତା'ର ମାଆ
ମୋ ସୁଖେ ହସେ ଦୁଃଖରେ କାନ୍ଦେ
ବିପଦେ କରେ ଆହା ।
ଏଡ଼େ ଟିକରୁ ହେଲି ମୁଁ ବଡ଼
ମମତା ପାଇଁ ତା'ର
ମମତାଭରା ସଂସାର ଆମ
ସତେ ସରଗ ପୁର ।
ଯେଉଁଠି ମୁହିଁ ହେଲିଜନମ
ନାଆଁ ତା' ମାତୃଭୂମି
କୋଳରେ ତା'ର ବଢ଼ିଲି ମୁହିଁ
ସେଇ ମୋ କର୍ମଭୂମି ।
ତା' ମାଟି, ପାଣି, ପବନେ ସତେ
ବିତଇ ଦିନ ମୋର
ତାହାରି ଦେହୁ ପାଇଲି ଖାଦ୍ୟ
ଗଛରୁ ମିଠା ଫଳ ।
କଅଁଳ ଓଠେ କହିଲି ଯାହା
ମାଆଠୁ ଶିଖି ଭାଷା
କେତେ ଆପଣା ଲାଗଇ ସାତେ
ସେଇ ମୋ ମାତୃଭାଷା ।
'ମାଆ' ବୋଲି ମୁଁ ଡାକିଲି ଯେବେ
ଦରୋଟି ଭାଷେ ମୋର
ଓଠରେ ତା'ର ଖେଳିଲା ହସ
ଭରିଲା ଛାତି ତା'ର ।
ମାଆ ଯେମିତି ଅତି ନିଜର
ସେମିତି ମାତୃଭୂମି
ମାତୃଭାଷା ବି, ମହାନ ସତେ
ଯା' ଲାଗି ହେଉ ଜ୍ଞାନୀ
ଦେଶରେ ରାଜା ପାଏତ ପୂଜା
ଜ୍ଞାନୀ ସବୁରି ଠାରେ,
ମାତୃଭାଷାର ଉନ୍ନତି ପାଇଁ
ଲାଗିବା ପ୍ରାଣ ଭରେ ।

# ଆଶା

*ରାମଚନ୍ଦ୍ର ଖୁଣ୍ଟିଆ*
+୩ ବିଜ୍ଞାନ ପ୍ରଥମ ବର୍ଷ

ଚାହିଁଥିଲି କିଛି, ପାଇଗଲି ଅନ୍ୟ କିଛି
ମାଗିଥିଲି କିଛି, ମିଳିଗଲା ଅନ୍ୟ କିଛି
ଭାବିଥିଲି କିଛି, ଘଟିଗଲା ଅନ୍ୟ କିଛି
ଏ ଚାହିଁବା, ମାଗିବା, ଭାବିବା ମଧ୍ୟରେ
କ'ଣ ଏତେ ଫରକ ?
ସୁଖ ବଦଳରେ ଦୁଃଖ, ହସ ବଦଳରେ ଲୁହ,
ଆଶା ଭିତରେ ନିରାଶା.....
ପୂର୍ଣ୍ଣିମା ରାତିରେ ଅମା ଅନ୍ଧକାର ଘଟିଗଲା ଭଳି
ସବୁକିଛି କଳ୍ପନା, କଳ୍ପନାରେ ହିଁ ରହିଗଲା....
ବାସ୍ ! ଆଉ ପାଇବାର କୌଣସି ମୋହ ହିଁ ନାହିଁ ॥



# ଟଙ୍କା

*ସୁଶାନ୍ତ କୁମାର ମହାରଣା*
+୩ ବାଣିଜ୍ୟ ତୃତୀୟ ବର୍ଷ (ବାଣିଜ୍ୟ ସମ୍ମାନ)

ଟଙ୍କା ଗଢ଼ିଦିଏ ସୁନ୍ଦର ପଣିଆ
ଟଙ୍କା କରିଦିଏ ବାବୁ,
ଟଙ୍କା ଅଭାବରେ ବଙ୍କା ପଡ଼ିଯାଏ
ସମସ୍ତେ କରନ୍ତି କାବୁ
ଟଙ୍କା ଆଣିଦିଏ ଅସଂଖ୍ୟ ବାନ୍ଧବ
ଟଙ୍କା କିଣିଦିଏ ବୁଦ୍ଧି,
ଟଙ୍କା ଟଙ୍କା ଭଜ ଆହେ ସାଧୁଜନ
କିଏ କହେ ହୀନ ବୁଦ୍ଧି ।



# ନେତା ଓ ଜନତା

*ତ୍ରିଲୋଚନ ଜେନା*
+୩ କଳା ପ୍ରଥମ ବର୍ଷ

ଦେଖିଛ କି କେବେ ନେତା
ହାତରେ ଧରିଛି ସେ ଛତା
ଉଡ଼ାନ୍ତି କେତେ ପତାକା ।
ମୁଣ୍ଡେ ଗାନ୍ଧୀ ଟୋପି ତୁଣ୍ଡେ ମିଛ ଥୋପି
କହୁଥାନ୍ତି ନାନା କଥା
ଦେହରେ ତାଙ୍କର ଧଳା କୁରୁତା ଯେ
ମୁଣ୍ଡରେ ତାଙ୍କର ଚିତା ।

ପିନ୍ଧିଥାନ୍ତି ଧୋତି ଧଳା ରଙ୍ଗର ଯେ
ପଛେ କଛା ଲୋଚା କୋଚା
ଆସେ ନିର୍ବାଚନ ହୋଇ ଛନ ଛନ
କହନ୍ତି ମୁଁ ଗୋଟେ ନେତା ।
କାଟି ଦିଅ ପଛେ ତାଙ୍କ କଛା କାନି
ମଉନେ କହନ୍ତି କଥା
ନୋଟ ଦେଇକି ଭୋଟ ନିଅନ୍ତି
କହି ମୋ ଚିହ୍ନ ମନେରଖିଥା ।
ନିର୍ବାଚନ ଶେଷ, ଧାଏଁ ଯେ ବିଶ୍ୱାସେ
ଘରେ ତ ନ ଥାନ୍ତି ନେତା
ଦେଖିଲା ବେଳେକୁ ବନ୍ଧା ହୋଇ ଅଛି
ଦାଣ୍ଡେ ଗୋଟେ ବଡ଼ କୁତା ।



# ପିଲେ ତୁମେ ପଢ଼ି ଯା'

*ଅଭିଜିତ୍ ଦାଶ*
+୩ ଦ୍ୱିତୀୟ ବର୍ଷ (ପଦାର୍ଥ ବିଜ୍ଞାନ ସମ୍ମାନ)

ପିଲେ ତୁମେ ପଢ଼ିଯା'
ପଢ଼ି ପଢ଼ି ଗଢ଼ିଯା
ପାଠ ପଢ଼ି ଦୁନିଆରେ
ଉପରକୁ ଚଢ଼ିଯା ।
ଶୁଣରେ ଧଡ଼ିଆ
ପାଠ ବଡ଼ ବଢ଼ିଆ
ନ ପଢ଼ିଲେ ଜାଣିଥାରେ
ହେବ ସବୁ ଅଡୁଆ
ଆଜିଠାରୁ ଲାଗିଯା
ମନେ ମନେ ଜାଗିଜା
ଗୁରୁଠାରୁ ଭକତିରେ
ପାଠ ତୁମେ ମାଗିଯା
ପାଠ ପଢ଼େ ଯିଏରେ
ଭଲ ପିଲା ସିଏରେ
ନ ପଢ଼େ ଯେ ତାଆ ପରି
ମୁରୁଖଟି କିଏ ରେ ?



# ସମର୍ପଣ

*ଗୋପୀନାଥ ବେହେରା*
+୩ ପ୍ରଥମ ବର୍ଷ (ରାଜନୀତି ବିଜ୍ଞାନ ସମ୍ମାନ)

କେହି ଦୁଃଖ କରନି ମୋ ପାଇଁ
ମୁଁ ଠିକ୍ ଥିଲି, ଠିକ୍ ଅଛି
ସବୁଦିନ ଏହିପରି ।
ଯାହା ସବୁ ଦେଖୁଛ ଏଠାରେ
ସବୁ ମୋର
ଆଗରେ ଯେତେ ଘାସ ଗାଲିଚା
ଧାନ, ମୁଗ, ଗହମ କ୍ଷେତ ନଈବାଲି
ସବୁ ମୋର ।
ବୃଥା କାନ୍ଦନି
ସାଙ୍ଗରେ କିଛି ନେବି ନାହିଁ
ସ୍ତ୍ରୀ, ପୁତ୍ର, ଧନ, ରତ୍ନ
ହିଂସା, ଦ୍ୱେଷ, ଲୋଭ, ମୋହ ଓ ସ୍ୱାର୍ଥ
ସବୁକିଛି ଦେଇଯିବି ତୁମକୁ
ମୋର ଆର ଜନ୍ମ ପର୍ଯ୍ୟନ୍ତ ।
କିନ୍ତୁ ଇଚ୍ଛା ନାହିଁ କରିବାକୁ ସମର୍ପଣ ।
ଯେତେ ଦୁଃଖ ଯନ୍ତ୍ରଣା ଆଉ ଅବଶୋଷ ।



# ଦୃଷ୍ଟି

ରଶ୍ମିରଂଜନ ଖୁଣ୍ଟିଆ
+୩ ତୃତୀୟ ବର୍ଷ (ପଦାର୍ଥ ବିଜ୍ଞାନ ସମ୍ମାନ)

କିଛି ନ ଥିଲା ମୋର
କାଠ ଚେୟାର୍ ଖଣ୍ଡେ ବି
ଅଥଚ
ହଠାତ୍ ଅସମ୍ଭବ ଧନୀଟିଏ ହୋଇଗଲି ମୁଁ,
ସେଇଦିନ ଠାରୁ
ଯେଉଦିନ
ଆଖିରେ ଆଖିଏ ଲୁହ ପରି
ଲଙ୍ଗଳା ଛୁଆଟିଏ
ଦଶ ପଇସିଟିଏ ପାଇଁ
ହାତ ବଢ଼େଇ ଦେଲା ମୋ ଆଡ଼େ ।



# ମାତୃ ରୂପିଣୀ ଧରଣୀ

ସସ୍ମିତା ହୋତା
+୩ ତୃତୀୟ ବର୍ଷ (ବାଣିଜ୍ୟ ସମ୍ମାନ)

ମୁଁ (ଧରଣୀ) ଭଲ ପାଇଛି
ସମସ୍ତଙ୍କୁ ଆଗ ସ୍ନେହ ଓ ମମତା ଦେଇ
ନିଃସ୍ୱାର୍ଥପର ହୃଦୟରେ, ଆଖିର ଲୁହରେ, ଓଠରେ ହସ ଦେଇ
କିନ୍ତୁ ଏ ଅବିବେକୀ ସମାଜ ମତେ ପ୍ରତି ବଦଳରେ ଦେଇଛି
ଅଜସ୍ର ଲୁହ, ଅମାପ ଦୁଃଖ ଅବ୍ୟକ୍ତ କୋହ
ସ୍ୱାର୍ଥପରତାର ବନ୍ଧନରେ ସେମାନେ ଆଜି ଏମିତି ବନ୍ଧିତ
ଓ କବଳିତ ।
କେବଳ ସ୍ୱାର୍ଥ ପାଇଁ ହିଁ ସେ କରି ଚାଲିଛନ୍ତି ମୋ ରକ୍ତର ବିନାଶ
ଯାହାର ମୂଲ୍ୟ ନ ଥିଲା
ଅମୂଲ୍ୟ ସେ ହେଉଛି ମୁଁ
କିନ୍ତୁ ହାୟ, ମୋର ମୂଲ୍ୟାଙ୍କନ ସବୁଠିଁ ହେଉଛି,
ମୋ ଶରୀରକୁ ଖଣ୍ଡ ବିଖଣ୍ଡ କରି ।



# ମୂଲିଆ

ଦାଶରଥି ମନ୍ତ୍ରୀ
+୩ ପ୍ରଥମ ବର୍ଷ କଳା

ଦୁନିଆରେ ଯିଏ ଅତି ଦିନ ଦୁଃଖୀ
ବୁଲେ ହୋଇବାର ବୁଲିଆ
ଗୋଟିଏ ନାଁରେ ସରବେ ଜାଣନ୍ତି
ସେତ ଖଟିଖିଆ ମୂଲିଆ ।
ଦୁନିଆଟାକୁ ସେ ଯୋଗାଏ ଆହାର
ରାଜା ଖାନ୍ତା କେତେ ଜାତିଆ
ପେଜ ତୋରଣିକୁ ନିଅଣ୍ଟ ହୁଅଇ
ମିଳେ ଯାହା ତାକୁ ଭାତିଆ
ନିଜ ହାତେ ସେତ ତିଆରି କରଇ
କେତେ ଲୁଗା ରଂଗ ରଂଗିଆ
ଆପଣା ପିଲାକୁ ଦେଇ ସେ ପାରେନି
ଖଣ୍ଡେ ଜାମା ଅବା ଜଂଘିଆ ।
ଆପଣା ରକତ ପାଣିକରିସିଏ
ତୋଳେ କେତେ କୋଠା ବଢ଼ିଆ
ସେ କୋଠାରେ ଦିନେ ରହେ ନାହିଁ ସିଏ
ଘର ତା'ର ଭଂଗା କୁଡ଼ିଆ ।
ଶକ୍ତି ମତେ ଉପକାର କରେ ସିଏ
ନୁହେଁ ସେତ ପାଦ ତଳିଆ
ପର ସୁଖ ପାଇଁ ଜୀବନକୁ ଦିଏ
ହୁଏନା ସେ କେବେ କଳିହା ।



# ବୀରଗତି

*ବିଶ୍ୱରଂଜନ ଦାସ*
+୨ ଦ୍ୱିତୀୟ ବର୍ଷ ବିଜ୍ଞାନ

ମୁଁ ତାକୁ ଭଲପାଏ
ଭଲପାଏ ତା' ଆତ୍ମାର
ପ୍ରତିଟି ଅଣୁକୁ,
ତା' ପଣତ ଆଶ୍ରାରେ
ଆପଣାକୁ ଗଢ଼ିଥିବା ଜୀବନଟା
ଜଳିବାକୁ ଚାହେଁ
ଲୁହ, ଲହୁ ଢ଼ାଳିବାକୁ ଚାହେଁ
ଚାହେଁ ତା' ଲାଗି ନିଃଶେଷ ହେବାକୁ ।

ଆକର୍ଷଣେ ଆକର୍ଷିତ
ମନ ନୁହେଁ,
ମୋ' ପିଣ୍ଡର ପ୍ରତିଟି କଣିକା
ବିଦାରିତ ହୃଦୟ ମୋ'
ଜଳିଯାଏ, ଥରିଯାଏ
ତା' ବିନା ହୃଦୟ ତନ୍ତ୍ରୀଟା
ଏତିକି ଆକାଂକ୍ଷା ମୋ'ର
ଜଳିଯାଏ, ଥରିଯାଏ
ତା' ବିନା ହୃଦୟ ତନ୍ତ୍ରୀଟା
ଏତିକି ଆକାଂକ୍ଷା ମୋ'ର
ଅନ୍ତିମ ମୁହୂର୍ତ୍ତେ
ତା' କୋଳେ ଯିବ ମୋ ନିଃଶ୍ୱାସ
ପଡ଼ିଥିବ ଅବଶ ଶରୀର,
ବୀରଗତି ପ୍ରାପ୍ତ ହେବ
ଆକାଂକ୍ଷା ମୋ ଅନ୍ତ ହେବ
ଜନ୍ମମାଟିକୁ ଭଲ ପାଇବାର ।



# ତୁମ ପାଇଁ

*ପ୍ରଣୟ କୁମାର ଦାସ*
+୩ ବାଣିଜ୍ୟ ପ୍ରଥମ ବର୍ଷ

ହେ ସୃଜନୀ,
ଏମିତି ବି କଥା ନାହିଁ
ଯାହା କହି ହେବ ନାହିଁ
ମୋ ନିଜ ପ୍ରତୀକ୍ଷିତ ହୃଦୟର
ଅନେକ କିଛି ପୁଣି କିଛି ନାହିଁ ।

ହେ ପ୍ରଣୟୀ,
କେମିତି କହିବି ଜାଣି ପାରୁନାହିଁ
ପ୍ରାରମ୍ଭଟା ମୋର ମନେପଡୁନାହିଁ
ପ୍ରଥମ ଦେଖାରେ ଭଲ ପାଇଥିଲି
ସତ କହୁଛି ମୁଁ,
ସେଦିନ ରାତିରେ ନିଦ ଆସିନାହିଁ

ହେ ତନ୍ମୟୀ,
ତୁମ ଆଖି ଲୁହ ସହି ପାରୁନି
ସହି ନ ହେଲେ ବି କହି ପାରୁନି,
କେମିତି କହିବି ପଚାରିଲେ କେହି
ତୁମେ ମୋର କିଏ,
ତୁମ ମୋ ସମ୍ପର୍କ ନିବିଡ଼ ହୋଇନି

ହେ ମାନସୀ,
ତୁମକୁ ପାଥେୟ କରି ଚାଲୁଥିବି
କଣ୍ଟକିତ ପଥ ପାରି ହୋଇଯିବି,
ତୁମେ ମୋର ଅତିପ୍ରିୟ
ବାଙ୍କୀ ମହାବିଦ୍ୟାଳୟ
ତୁମକୁ ନା କେବେ ଭୁଲିପାରିବି !



# ଗତିଶୀଳ ସୃଷ୍ଟି

*ବିକ୍ରମ କେଶରୀ ଷଡ଼ଙ୍ଗୀ*
+୩ କଳା ପ୍ରଥମ ବର୍ଷ (ଅର୍ଥନୀତି ସମ୍ମାନ)

ବରଂ.......
ଆମେ ଭାଙ୍ଗିଦେବା
ବିଷ୍ଣୁଙ୍କର ମହାନିଦ୍ରା !
ଅନନ୍ତ ଶୟନ !!!
ଲକ୍ଷ୍ମୀଙ୍କର ଗନ୍ତାଘର ଭାଙ୍ଗି
କାଢ଼ି ନେବା ଅଷ୍ଟ ଅଇଶ୍ୱର୍ଯ୍ୟ ।
ବାହୁରେ ଆମର ଶକ୍ତି ସହସ୍ର ସିଂହର !!
ମଧ୍ୟାହ୍ନର ସୂର୍ଯ୍ୟସମ ଆମେ ତେଜୀୟାନ !!
ହଟାଇବା କୁସଂସ୍କାର — !
ଅମା ଅନ୍ଧକାର !!
ଗଙ୍ଗା ଯମୁନାର ସ୍ରୋତ
ଆମ ଧମନୀରେ ।
ଆମେ ସବୁ ସ୍ରଷ୍ଟା ଏ ଯୁଗର ।
ବିଳାସର କାଳୀୟ ଫଣାରେ
ଦେଇ ପାଦ ଯିବାରେ ଆଗେଇ
କଳ୍ପନାର ସୀମାରେଖା ଡେଇଁ,
କରିଯିବା କର୍ତ୍ତବ୍ୟ ନିଜର !
ଏଣେ- କିନ୍ତୁ
ରୂପର ପସରା ଖୋଲି
ପ୍ରେମିକା ବସିଛି !
ଚୋରା ଚାହାଣୀରେ ଚାହିଁ,
ହସୁଛି ଅଳପ ।
କିଣିବାକୁ ମାନସ ସବୁରି ।
(ମାତ୍ର)
ତା'ର ଆଖି ଆଇନାରୁ ପାରଦ ଛାଡ଼ିଚି ।
ତା' ଗଭାର ବାସ୍ନା ଫିଟି
ରାସ୍ତାଘାଟେ ମାଦକ ବୁଣୁଛି ।
ତେଣେ —
ତିନି ହାତ ମାଟି ପାଇଁ
ମଡ଼ା ସବୁ କରନ୍ତି ଝଗଡ଼ା
ରୁଣ୍ଡ ହୋଇ ମଶାଣି ପଦାରେ ।
ବିଲୁଆର ହୁକେ ହୁଆ..ହୁ...ଆ...ରଡ଼ି....
ଭାସି ଆସେ ବାୟୁ ସ୍ରୋତ
ବାଧା ବନ୍ଧ କାଟି ।
ଶୁଣି ତାହା ବାରବୁଲା କୁକୁରଟା
ଦେଉଛି ଜବାବ, ଚୁପ୍‌ବେ...ଚୁପ୍, ହ...ହ..
ଏଣେ.... ଏନ୍ତୁଡ଼ି ଶାଳରେ
ମାଆ କାଳେ ଛୁଆ ଚମକୁଛି !
ଶୁଣି କାନେ ଭୈରବୀ କୁହାଟ !!
ବରଂ....
ଏବେ କିନ୍ତୁ ମଣିଷ ଯାକରେ ନାହିଁ କିଛି
ହୁଏ ତାହା କମ୍ପ୍ୟୁଟରରେ ।
ଗୁଣିଆର ତାଳପତ୍ର, ପୋଥି
ଭୂର୍ଜ ପତ୍ର, ତାମ୍ର, ଫଳକାଦି
ପରୀକ୍ଷା ଅଧୀନ ସବୁ,
ଲାବୋରେଟୋରୀରେ ।



# ଯାଅ ଶୋଇପଡ଼

*ପ୍ରଦୀପ କୁମାର ସାହୁ*
+୩ ବିଜ୍ଞାନ ପ୍ରଥମ ବର୍ଷ (ଗଣିତ ସମ୍ମାନ)

ଅର୍ଦ୍ଧରାତ୍ରିରେ ବିକଳ ଚିତ୍କାରେ,
ନିଦ୍ରାରୁ ଉଠିଯେବେ ଦରଜା ଖୋଲିଲି,
ଅସ୍ପଷ୍ଟ ଭାବେ ଦେଖିଲି
ରାସ୍ତା ମଝିରେ
ଏକ ଧର୍ଷିତାର
ଅଦୃଷ୍ଟନୀୟ ଶବ
ଶାଗୁଣାପରି ଘେରି ରହିଥାନ୍ତି ତାକୁ
ଛୁରୀ ଭୁଜାଲିଧାରୀ କେତୋଟି
ଦୁର୍ଦ୍ଧର୍ଷ ଚେହେରା ।

ସମ୍ଭାଳି ନ ପାରି ମୁଁ କହି ଉଠିଲି
'ଆରେ, ଏତ ଅମୁକ ବାବୁଙ୍କ ଝିଅ,
ବିନା ଦୋଷେ କଲ ଏତେ ସରି ?
ପାଟିରେ ଆଙ୍ଗୁଠି ଦେଇ 'ସି' ଶବ୍ଦ କରି
କହିଲେ ସେମାନେ,
'ରାତି ପାହିବାକୁ ଅନେକ ଡେରି
ଯାଅ ଶୋଇପଡ଼ ।



# ନୀରବତା

*ନିରଞ୍ଜନ ମଣ୍ଡଳ*
+୩ ଦ୍ୱିତୀୟ ବର୍ଷ (ବାଣିଜ୍ୟ ସମ୍ମାନ)

ଏଇମିତି ଚୁପ୍ ରହୁଛି ବୋଲି
ମୁଁ କ'ଣ ଭୁଲି ପାରୁଛି
ନା ପାରିବି
ତୁମର ଭଲ ପାଇବା ?
ବରଂ ନିଜଠୁ ଦୂରେଇ ନେଉଛି ନିଜକୁ
ଆଉ ସଲାମ୍ କରୁଛି ଲୁହରେ ଝୋଟି ଆଙ୍କୁ ଆଙ୍କୁ
ମୋ କାନ୍ଥର ଚଉତରାକୁ ।
ଅନାଗ୍ରହୀ ମୋ ଭାବନା
ବେପରୁଆ ମୋ ଚେତନା
ତୁମ ପ୍ରତି ଭଲ ପାଇବା ଅଛି
ହେଲେ ଦେଖାଇ ପାରୁନି
କାନ୍‌ଭାସ୍‌ରେ ବା ରଂଗରେ
କାହିଁ କିନା, ମୁଁ ବନ୍ଦୀ
ଆଜି ଆଉ କା ପଞ୍ଜୁରୀରେ ।



# ବିଚାର

*ସ୍ୱାଗତିକା ଶତପଥୀ*
+୩ କଳା ପ୍ରଥମ ବର୍ଷ (ଇଂରାଜୀ ଅନର୍ସ)

ଜୀବନର ମାନେ କିଛି ନୁହେଁ ଯଦି ମନ ନ ଥାଏ ସେଥିରେ
ଠିକ୍ ବୁଝେ, ଅନ୍ତରର ଅତଳ ସାଗର ।
'ମୁଁ' ବୋଲି ଚିନ୍ତା କରି ବଢ଼ିଯାଏ ଦଣ୍ଡପରେ ଦଣ୍ଡ ।
ଶୁଣେ ଯେବେ ହୃଦୟରେ ଶୁଦ୍ଧତାର ଗଙ୍ଗା
ଭାସିଯାଏ ଶୂନ୍ୟାକାଶେ କାଗଜର ଡଙ୍ଗା ।
ବିଶାଳଏ ଅନ୍ତରୀକ୍ଷେ ଭାସିଯିବାତ ଜୀବନର ସାର
ଯଦି ବା ପ୍ରକୃତି ତା' ଜୀବନର ସାଥୀ
ଚାରିପାଖେ ଦେଖେ ଖାଲି ହିଂସାର ସେ ବିଦ୍ରୂପ ଚାହାଣୀ
ଅଟ୍ଟହାସ୍ୟ କରେ ତାକୁ ଖଦ୍ୟୋତର କ୍ଷୁଦାଲୋକ ପରି
ଭୁଲ ବୋଲି ବୁଝେ ନାହିଁ ଭୁଲ୍ ମନ ରଖେ ସେ ଆବୋରି ।
ବୁଝେ ଖାଲି ଭରିଛି ସେ ଗର୍ଭରେ ସ୍ନେହର କରାଳଫଳ
ଧରିବାକୁ ତା' ମଧ୍ୟରେ ଆପଣାର ଚରମ ପରଶ
ଅନୁଭବ କରେ ନିଜର ଅକିଞ୍ଚନତ୍ୱକୁ ।
ତଥାପି ଆଗେଇ ଆସେ ସଂକଳ୍ପର ବାରି
ପୁଣି ପାଦ ଆସିଯାଏ
ସମୁଦ୍ରର ଓଦା ବାଲି ପରି ।



# ବିଶ୍ୱନିୟନ୍ତାଙ୍କୁ ପଦେ

*ସସ୍ମିତା ସାହୁ*
+୨ ଦ୍ୱିତୀୟ ବର୍ଷ

ଅନ୍ତର ଖୋଲି ଡାକେ ଦୀନବନ୍ଧୁ
ପ୍ରାର୍ଥନା ମୋହର ଶୁଣ
ଅନ୍ତର୍ଯ୍ୟାମୀନାଥ କରୁଣା ନିଦାନ
କି ବର୍ଣ୍ଣିବି ତୁମ୍ଭ ଗୁଣ ।
ସନ୍ତ୍ରାସବାଦୀଙ୍କ ହୁଙ୍କାର ନାଦେ
ଜଳେ ଏ ଭାରତ ଭୂଇଁ
ବୈକୁଣ୍ଠ ପୁରରେ ଲକ୍ଷ୍ମୀଙ୍କ ପଣତେ
ଗଲକି ହେ ପ୍ରଭୁ ଶୋଇ ।
ସାରା ବିଶ୍ୱ ଆଜି ତ୍ରସ୍ତ ଆତଙ୍କିତ
ପରମାଣୁ ଯୁଦ୍ଧ ପାଇଁ
ଶ୍ରୀ ନୀଳକନ୍ଦରେ ନୀଳାଦ୍ରି ବିହାରୀ
କୁହ ମଉନ କିମ୍ପାଇଁ ।
ଅହିଂସା ମନ୍ତ୍ରେ ଦୀକ୍ଷିତ ହୁଅନ୍ତୁ
ସକଳ ବିଶ୍ୱବାସୀ
ଓଁ କାରନାଦେ କମ୍ପୁ ଏଇ ଧରା
ଅପସରୁ ଦୁଃଖରାଶି
ଏତିକି ବିନତି କରେ ମହାପ୍ରଭୁ
ଆଶିଷ ଦିଅ ହେ ଢ଼ାଳି
ଶାନ୍ତି ଓ ମୈତ୍ରୀର ଯାତ୍ରାର ପଥେ
ଆଲୋକ ଦିଅ ଯେ ଜାଳି ।



# ସୁଖଲାଗେ ମୋତେ

*ଉଷାରାଣୀ ପଣ୍ଡା*
+୨ ବିଜ୍ଞାନ ଦ୍ୱିତୀୟ ବର୍ଷ

ସୁଖଲାଗେ ମୋତେ,
କୁନି କୁନି ପୁଅ ଝିଅ,
କଅଁଳ କୁସୁମ ଦେହ ।
ସୁଖଲାଗେ ମୋତେ,
ଗୁଲୁଗୁଲୁ ଦୁଇ ବାହୁ
ଶିରୀଷ କୋମଳ ଦେହୁ ।
ସୁଖଲାଗେ ମୋତେ,
ବାଙ୍କ ଟାଙ୍କ ଠାଣି ତା'ର
ଆଖିର କଜଳ ଗାର ।
ସୁଖଲାଗେ ମୋତେ,
ଠୁକୁ ଠୁକୁ ତା'ର ଚାଲି,
ଗୁଲୁ ଗୁଲୁ କଥା ଖାଲି ।
ସୁଖଲାଗେ ମୋତେ,
ତାଇ ତାଇ ମାଇଁ ମାଇଁ
ନାଚ ତା'ର ଥେଇଥେଇ ।
ସୁଖଲାଗେ ମୋତେ,
ମିଠା ହସ କର କର,
ଲୁହ ଆଖି ଜର ଜର ।
ସୁଖଲାଗେ ମୋତେ,
ଟିକି ଟିକି ଦୁଇ ତୋଳା
ସରଗ ପୀୟୂଷ ବୋଳା ।



# ମାତୃଭୂମି

*ମାନସ ପାଇକରାୟ*
+୨ କଳା ପ୍ରଥମ ବର୍ଷ

ମୋ ମା' ଭାରତ,
ରଖିବି ମୁହିଁ
ତାହାରି ଟେକ ।
ଜନମ ମୋର
ତାହାର କୋଳେ,
ପ୍ରଣାମ କରି
ତା' ପାଦ ତଳେ,
ଜୀବନକୁ ମୁଁ
ବାଜି ଲଗାଇ,
ଶତ୍ରୁ ସୈନ୍ୟକୁ
ଛାଡ଼ିବି ନାହିଁ ।
ମାଆ ଉପରେ
ଆସିଲେ ବାଧା
ଶତ୍ରୁର କରିବି
ଯେ ଅସୁବିଧା ।
ଯାହା ସାହାଯ୍ୟରେ
ହୋଇଛି ବଡ଼
ସହିବି ତା' ପାଇଁ
ଜୀବନେ ଝଡ଼
ମୋ ମା' ଭାରତ
ରଖିବି ସଦା ତା' ମାନ ମହତ ।



# ଅକ୍ତ ଅବୁଝା ପାର୍ଥକ୍ୟ

ଲକ୍ଷ୍ମୀଧର ବଳ
+୩ କଳା ତୃତୀୟ ବର୍ଷ (ଓଡ଼ିଆ ସମ୍ମାନ)

ଏବେ ସିନା ଭାବେ
ପକ୍ଷୀ ପରି ନୀଡ଼ ବାନ୍ଧିବାକୁ
କେବେତ ତୁମର ଖିଆଲ୍ ନ ଥିଲା,
ସୂର୍ଯ୍ୟାସ୍ତ ଢେଉରେ ଏକୂଳରୁ ସେକୂଳକୁ
ଡଙ୍ଗା ବାହିବାକୁ ତୁମେ କେବେ ତ କହିନ
ସେତେବେଳେ ମନ 'ହୁସିଆର' କହିଲେ ବି
କେବେ ବି ଭାବେନି
କାହିଁ ତୁମେ ଖାଲି ବାଲିଘର ତୋଳ ।
କାହିଁକି ମୋ ସାଥେ କାଗଜର ଡଙ୍ଗା ଗଢ଼ି
ପାଣିରେ ବାହିବାକୁ ନିତି ଜିଦ୍ କର
ମୁଁ ସିନା ବୁଝିନ ଥିଲି, ଏବେ କିନ୍ତୁ ଲୁହ ଠିକ୍ ବୁଝେ
ବାଲିଘର, ପକ୍ଷୀ ନୀଡ଼
ଡଙ୍ଗା, କାଗଜର ଡଙ୍ଗା
ଏ ଭିତରେ ପାର୍ଥକ୍ୟ
ମୋ'ର ବୁଝିବାର ଥିଲା !



# ସ୍ୱପ୍ନ

ଶ୍ୱେତଲୀନା ଦାସ
+୩ କଳା ପ୍ରଥମ ବର୍ଷ (ଅର୍ଥନୀତି ସମ୍ମାନ)

ସ୍ୱପ୍ନ, ତୁମେ ମୋର ମେଘୁଆ ରାତିର
ପଥଧାର ବରଗଛ
ନିଛାଟିଆ ଖରା ଦିଗହଜା ନଈ
ରୂପା କାତି ସୁନାମାଛ
ସ୍ୱପ୍ନ ତୁମେ ମୋର ସାଗର ବେଳାରେ
ଶୈଶବର ବାଲିଘର
କିଶୋର ଜୀବନେ ରଙ୍ଗ ଅବିର
ମୁଗ୍ଧ ଅନୁଭବ ମୋର
ଯଉବନ ବନେ ଫୁଲର ଦୋଳିରେ
କୋକିଳର ମଧୁତାନ
ପ୍ରଣୟ ଉଚ୍ଛ୍ୱାସେ ବିରହାବକାଶେ
ମୋହିଅଛ ଦେହ, ମନ
ସ୍ୱପ୍ନ ତୁମେ ମୋର ବିଗତ ଦିନର
ଜହ୍ନ ଉଦିଆ ରାତି
ମଲ୍ଲୀ ଫୁଲ ଫୁଟା ଶ୍ରାବଣ ରାତିରେ
ନିଃସଙ୍ଗ ତୁଚ୍ଛା ପ୍ରୀତି
ଦୂର ଅତୀତରେ ଭୁଲି ଆସିଥିବା
ରାଗ ତୁମେ ଆଶାବରୀ
କ୍ଷୁଦ୍ର ସୁଖର ଲୁବ୍‌ଧକ ମୁଁ ଯେ
ହେଉଛି ତୁମକୁ ଝୁରି
ସ୍ୱପ୍ନ – ତୁମେ ମୋର ସ୍ମୃତିର ଶଙ୍ଖାଳି
ଚିର ଅମଳିନ ରେଖା,
ହଜିଲା ବୟସ ଶେଷ ପଉଷର
ହସନ୍ତ ଅଶ୍ରୁଲେଖା ।
ସମୟ ସାଗରେ ତୁମେଇ ଆହୁଲା
ମୋ ଜୀବନ ଫୁଟା ନାଆ
ସାଥୀରେ ଆସିଛ ମୋ ସାଥୀରେ ଯିବ
ସାଥେ ନେଇ ଖାଲି ଆହା ।



# ତୋ ସହର ଛାଡ଼ି ଯେବେ ଆସିଲି ମୁଁ ଅଜଣା ସହରେ

ତୃପ୍ତିମୟୀ ସ୍ୱାଇଁ
+୩ କଳା ଦ୍ୱିତୀୟ ବର୍ଷ (ଶିକ୍ଷା ସମ୍ମାନ)

ସମୟ ସାଗର ତୀରେ
ସ୍ୱପ୍ନର ଶାମୁକା ସବୁ
ଅଜାଡ଼ି ଦେଇଥିଲ
ମୋ ଜୀବନ ବେଳାଭୂମି ପରେ
ତୁମର ସେ ପାଦ ସ୍ପର୍ଶେ
କମ୍ପି ଉଠିଲା
ମୋ ଜୀବନର ପ୍ରତିଟି ଅଣୁ
ବେଳାଭୂଇଁ ଭିଜି ଯାଇଥିଲା
ପ୍ରୀତିର ବର୍ଷାରେ ।
ଅନୁରୋଧ କଲି ତାକୁ
ବୁକେ ତା'ର ଯେମିତି ନ ଉଠେ ଜୁଆର
ହଜି ଯିବ କାଳେ ଆମ ସପନ ସହର
ସାଥୀ ମୋର କହିବାକୁ
ଅଛି କେତେ କଥା.... ବାକି
ଏ ଯାଏ ପାରିନି କହି
ସମୟ ତା' ରହି ଅଛି ସାକ୍ଷୀ ।
ଅମାନିଆଁ ଢେଉ ତା'ର
ମାନିଲାନି କଥା ମୋର
ସ୍ୱପ୍ନର ଶାମୁକା ସବୁ
ଟାଣି ନେଲା ତା' କୋଳକୁ
ସ୍ମୃତି ମୋର କଣ୍ଠ ହୋଇ
ତୁମ୍ଭ ଥିଲେ ସିନା
ହେଲେ,
ସିଏ ମୋର ଅତି ଆପଣାର ।

ସ୍ୱପ୍ନର ଶାମୁକା ସବୁ ସାଉଁଟି ନେଲା ସେ
ସୁଦୂର ବେଳାଭୂମି ବୁକେ
ରହିଲି ମୁଁ ଏକା ଏକା
ଅଜଣା ସହରରେ ।
ଛାଇ ପରି ଥିଲ ତୁମେ
ପାଉଥିଲ ଭଲ ମୋତେ
ସାଥି ହୋଇ ରହିବାକୁ
ଆଜୀବନ
ସହରର କୋଳାହଳ ଛାଡ଼ି
ଇଚ୍ଛା ହେଲା ଚାଲି ଯିବା ପାଇଁ
ତୁମର ସେ ନୀରବ ସହରରେ
ଆଉ ଶୋଇବା ପାଇଁ
ତୁମର କୋଳରେ ସବୁଦିନ ପାଇଁ
ପୋଡ଼ିଗଲା ମନ ବନ ।
ଦୁଃଖ ହେଲା ଚିର ଶତ୍ରୁ ମୋର
ତୁମ ବିନା ଏକା ଏକା
ପାରିଲିନି ବୁଝି
ପରାହତ ହେଲି ସିନା
ମୃତ୍ୟୁ ହେଲା ଚିର ସହଚର
ଜୀଇଁବା ତୁମଠୁ ଶିଖିଛି ବୋଲି
ଏଯାଏଁ ଜୀଇଁଛି
ଖାଲି ତୁମ ପାଇଁ
ଯିବାକୁ ସେ ସ୍ମୃତିର ସହର ।



# ମଧୁର କର ହେ ପ୍ରଭୁ ମଣିଷର ଭାଷା

*ସଞ୍ଜୁଲତା ସାହୁ*
+୩ ବିଜ୍ଞାନ ପ୍ରଥମ ବର୍ଷ (ରସାୟନବିଜ୍ଞାନ ସମ୍ମାନ)

ଭାବକୁ ପ୍ରକାଶ କରି ମଣିଷର ଭାଷା
କେତେବେଳେ ଦୁଃଖ ଦିଏ ତାକୁ
ପୁଣି କେତେବେଳେ ଦିଏ ଅପର୍ଯ୍ୟାପ୍ତ ସୁଖ
ହୁଏ ପରା ଉଲ୍ଲାସର ହେତୁ ।
କେତେବେଳେ ସଂପର୍କ ହୁଏ ତ ମଧୁର
କେତେବେଳେ ହୁଏ ପୁଣି ତିକ୍ତ
କେତେବେଳେ କିରିଦିଏ ପରକୁ ଆପଣା
କେତେବେଳେ କରଇ ବିରକ୍ତ ।
ଯୋଡ଼େ କେବେ ଭଙ୍ଗା ଚୂଡ଼ି
ଭାଙ୍ଗିପାରେ ସୁନାର ସଂସାର
ଭାଷା ବିନା ସବୁକଥା ରହଇ ଅଜଣା
ଭାଷା ପାଇଁ ଏ ବିଶ୍ୱ ସୁନ୍ଦର ।
ମଧୁର କର ହେ ପ୍ରଭୁ !
ମଣିଷର ଭାଷା
ହୃଦୟକୁ ହୃଦୟରେ ଯୋଡ଼ିଦିଅ
ଏତିକି ମୁଁ କରୁଅଛି ଆଶା ।



# ମଶାଣି

*ସଞ୍ଜୟକୁମାର ଜୟସିଂ*
+୩ କଳା ପ୍ରଥମ ବର୍ଷ (ଇତିହାସ ସମ୍ମାନ)

ଗାଁରୁ ପଡ଼ିଛି
ମଶାଣିକୁ ବାଟ ମଶାଣିରୁ ପୁଣି ଗାଆଁ
ବାଟ ନୁହେଁ ସେତ ଜୀବନ ମୃତ୍ୟୁର
ଚିହ୍ନା ସେତୁଟିଏ ଯାହା ।
ମଶାଣି ଖୋଜେନି ଠିକଣା କାହାର
ଅବାକାହା ଇତିହାସ
ସମୟ ତୁଠରେ ସ୍ମିତ ହସ ହସି
ବିତାଏ ତା' ଅବକାଶ ।
ଭବ ସାଗରର ନୀଳ ଲହରୀରେ
ବହୁଛି ପ୍ରେମର ବାଆ
ଫେରନ୍ତା ପବନେ କୁଳମୁହାଁ ହୋଇ
ମଶାଣି ବାହୁଛି ନାଆ ।



# ଶହୀଦ୍

*ମାନସ କୁମାର ମହାପାତ୍ର*
+୩ କଳା ଶେଷ ବର୍ଷ (ପଦାର୍ଥ ବିଜ୍ଞାନ ସମ୍ମାନ)

ମୃତ୍ୟୁରେ ସେ ଶହୀଦ୍
କର୍ତ୍ତବ୍ୟରେ ବିନାୟକ
ସଂକଳ୍ପରେ ନଚିକେତା
ମୁକ୍ତ କଣ୍ଠରେ କହେ
'ଜୟ ଭାରତମାତା' ।
ଆକାଂକ୍ଷା ତାହାର ବିଜୟ
ଉତ୍ସର୍ଗ କରେ ଜୀବନ
ସେ ହିନ୍ଦୁସ୍ଥାନର 'ବୀର ଯୱାନ' ।



# ପହିଲି ବରଷା

ଦିଲ୍ଲୀପ କୁମାର ବେହେରା
+୩ କଳା ପ୍ରଥମ ବର୍ଷ (ରାଜନୀତି ବିଜ୍ଞାନ ସମ୍ମାନ)

ପହିଲି ବରଷା ରାଣୀ ମନକୁ ଜାଣି
ଦେଖାଏ କେତେ ଠାଣି
ଆକାଶ ଛାଣି ଝରାଇ ପାଣି
ଆସିଲା ସତେ ପୁଣି ।

ସବୁଜ ଶୋଭା ପ୍ରକୃତି ଲୋଭା
ଫୁଲରେ ଗଭା ଭରି,
ଫୁଟିଲା ଟଭା, କଦମ୍ବ ଚମ୍ପା
ବାସିଲା ଜବା ଭାରି ।

ପାଚିଲା କୋଳି ଜାମୁ ଖଜୁରୀ
ଗଛେ ପିଜୁଳି ତାଳ
ମାରେ ବିଜୁଳି ଦେବକି ଜାଳି
କାହାର ହେବ କାଳ ।
ମୟୂର ନାଚେ ବରଷା କଚେ
କାଦୁଅ ପଚେ ବିଲେ ,
ବଉଦ ପଛେ ସୁରୂଜ ଲୁଚେ
ବିଲୁଆ ପଶେ ବିଲେ ।
ସାଧବ ବୋହୂ ଚାଲଇ ବହୁ
ସତେକି ଲହୁ ଟୋପେ,
ଆଙ୍ଗୁଳି ନେଇ ଥିଇରି ଛୁଉଁ
ତା' କଥା ଶୁଣୁ ଗପେ ।



# ନିବିଡ଼ତା

ତପସ୍ୱିନୀ ପଣ୍ଡା
+୩ କଳା ଦ୍ୱିତୀୟ ବର୍ଷ ( ଶିକ୍ଷା ସମ୍ମାନ)

ଭାରି ଭଲ ଲାଗେ ତୁମକୁ ଭେଟିଲେ,
ତୁମ ସହିତ କଥା ହେଲେ,
ଅଳପ କହି ଆଉ କିଛି ବାକି ରଖିଦେଲେ,
ଭାରି ଭଲ ଲାଗେ,..... ।
ତୁମେ ଅଳପ ହସିଲେ,
ଅଳପ ଲାଜେଇ ଗଲେ,
ଅଳପ ପାଖେଇ ଆସି ପୁଣି ଫେରିଗଲେ,
ଭାରି ଭଲ ଲାଗେ...... ।
ତୁମ ପ୍ରେମ ସନ୍ଦେଶ ପଢ଼ିଲେ ,
ତୁମ ପାଇଁ କବିତା ଲେଖିଲେ,
ତୁମେ ମୋତେ ଗପ ଶୁଣାଇଲେ,
ଆଉ ସାଥୀ ହୋଇ ବସିଲେ,
ଏକାଠି ଖାଇଲେ ତ
ଭାରି ଭଲ ଲାଗେ....



# ପ୍ରତୀକ୍ଷା

*ପ୍ରିୟଙ୍କା ସ୍ୱାଇଁ*
+୩ କଳା ଦ୍ୱିତୀୟ ବର୍ଷ (ଅର୍ଥନୀତି ସମ୍ମାନ)

ହତାଶର ଦିଗ୍‌ବଳୟ ଭିତରେ
ନିଜକୁ ତିଳ ତିଳ କରି କେତେ ବା ଦଗ୍ଧ କରିଥାନ୍ତି
କେତେ ଦିନ ଅନାଇ ରହିଥାନ୍ତି
ମୋ ଜୀବନର ସେହି ଅନ୍ତିମ ବର୍ଷର ଅନ୍ତିମ ଦିନଟିକୁ
କେତେ ଦିନ ବା
ସେହି ଲହରୀମାଳାରେ ହଜାଇ ଦେଇଥାନ୍ତି
ନିଜକୁ
କେତେ ଦିନ ଅପେକ୍ଷା କରିଥାନ୍ତି
ଅପଲକ ନୟନରେ ତୁମର ଆସିବା ପଥକୁ
ଏ ଶତାବ୍ଦୀର ଶେଷ ହେବା ପାଇଁ
କେତେ ଦିନ ସୁଖ ସୌଭାଗ୍ୟକୁ ଏଡ଼ାଇ ଦେଇ
ହଜିଯାଇଥାନ୍ତି ସେହି ଯନ୍ତ୍ରଣାଦଗ୍ଧ କାହାଣୀ ମଧ୍ୟରେ
ସବୁ ଦୁଃଖକୁ ପିଇ କରି
ସମୟ ଯେମିତି ଆସି ଚାଲିଯାଏ
ତୁମେ ଠିକ୍ ସେହିପରି ଆସି ଚାଲିଯାଅ
ହାତ ପାହାନ୍ତାରେ ପାଇବି ପାଇପାରେ ନାହିଁ
ତୁମେ ତ ନିରାକାର, ଆନନ୍ଦମୟ, ନିରାନନ୍ଦ
ତୁମର ଅନ୍ତ ନାହିଁ
ମୋ ପ୍ରତୀକ୍ଷାର ମଧ୍ୟ ଅନ୍ତ ନାହିଁ ।



# ସମୟ ଓ ମୁଁ

*ଲୋପାମୁଦ୍ରା ମହାପାତ୍ର*
+୩ କଳା ପ୍ରଥମ ବର୍ଷ (ସଂସ୍କୃତ ସମ୍ମାନ)

ସମୟ ତୁ ମୋତେ ଜଳାଅନା ଏତେ
ପାରେନା ତ ଆଉ ସହି,
ହସ ତୋର ଯେତେ ହା, ହୁତାଶଭରା
ଅନେକ ସ୍ମୃତିକୁ ନେଇ

ମୋ ଓଠରୁ ହସ ନେଇଛୁ ଛଡ଼ାଇ
ନୟନେ ଭରିଛୁ ଲୁହ,
ବୁକୁତଳେ ନିଆଁ ଜଳୁଅଛି ଆଜି
ମନରେ ଉଠିଛି କୋହ ।

ସପନ ଗଲାମୋ କାହିଁ ଦୂରେହଜି
ପାଉନାହିଁ ତାରେ ଖୋଜି
ଅତୀତକୁ ନେଲ ଦୂରେ ବହୁଦୂରେ
ଆଶା ସୌଧ ଗଲା ଭାଜି

ପ୍ରତାରଣା ମୋତେ କରିଛୁ ସମୟ
ଛଡ଼ାଇ ବନ୍ଧନ ଡୋରି
ସ୍ମୃତିର ନିଆଁରେ ଜଳୁଛି ମୁଁ ଆଜି
ଅଶ୍ରୁକୁ ପାଥେୟ କରି ।



# ସମ୍ପର୍କ

ଦେବାଶିଷ ଶୈଳେନ୍ ଅଭିଜିତ୍ ରାଉତ
+୩ ବିଜ୍ଞାନ, ଦ୍ୱିତୀୟ ବର୍ଷ (ପ୍ରାଣୀବିଜ୍ଞାନ ସମ୍ମାନ)

ଗୋଟିଏ ମୁହୂର୍ତ୍ତ ମଧ୍ୟରେ ପରକୁ ଆପଣାର କରିବାର
ଉତ୍ସୁକତା
ପୁଣି କେବେ ତାହା ଭାଙ୍ଗିଯିବାର ବିରହ ବେଦନା
ମନର ଭାବନା ବ୍ୟକ୍ତ କରିବାକୁ ଶବ୍ଦ ସବୁ ଯେଉଁଠି ହାର୍
ମାନନ୍ତି
କେବେ ପୁଣି ବିଚ୍ଛେଦରେ ଲୁହ ସବୁ ଲଗାମଛଡ଼ା ହୁଅନ୍ତି
କେବେ ଏଠି ଆନ୍ତରିକତାର ଉତ୍ତାଳ ତରଙ୍ଗ,
କେବେ ପୁଣି କଳହର ଜୁଆର
ହରାଇବା ପାଇବାର ଦୋଛକି ରାସ୍ତାରେ ଠିଆ ହୋଇ
ମଣିଷ ଗଢ଼ିଚାଲିଛି ଏଠି ସମ୍ପର୍କର ନଭଶ୍ଚୁମ୍ବୀ ଶୃଙ୍ଗ ।



# ବାସ୍ତବତା

ଧନେଶ୍ୱର ମହାରଣା
+୩ ବିଜ୍ଞାନ, ଶେଷ ବର୍ଷ (ପଦାର୍ଥ ବିଜ୍ଞାନ ସମ୍ମାନ)

ହେ ଈଶ୍ୱର !
ତୁମେ ଯଦି ସର୍ବଶକ୍ତିମାନ,
ଅସମ୍ଭବକୁ ସମ୍ଭବ କରିବାର କର୍ତ୍ତା
ଫେରାଇ ଦିଅନ୍ତନି ମୋ ଶୈଶବକୁ
ଗାଁ ଦାଣ୍ଡର ବାଲିଧୂଳି
ଆଉ ମାଆର ପଣତକାନିକୁ
ଯହିଁ ନଥିବ ହସିବାର ପ୍ରତାରଣା
ଆଉ ଭେଜାଲ ଅଝଟ ପଣିଆ ।



# ସୁଖ ଓ ଦୁଃଖ

ଚିତ୍ତରଞ୍ଜନ ମିଶ୍ର
+୨ କଳା ପ୍ରଥମ ବର୍ଷ

ସୁଖ ଓ ଦୁଃଖ ଦୁଇ ଭାଇ,
ମୁଦ୍ରାର ଦୁଇ ପାର୍ଶ୍ୱ ସେହି,
ଏଇ ସୁଖ ପାଇଁ ମନୁଷ୍ୟ
କେତେ ଆଶା କରେ,
ଏଇ ଦୁଃଖ ହେଲେ ମନୁଷ୍ୟ
ଠାରୁ ଲୋତକ ପୁଣି ଝରେ,
ଏଇ ସୁଖ ଆଣି ଦିଏ
ଭୋଗ, ବିଳାସ ଜୀବନ,
ଏଇ ଦୁଃଖ ଦ୍ୱାରା ପୁଣି
ଛିଡ଼ିଯାଏ ମନ,
ଆଶାଠାରୁ ତତୋଽଧିକ
ହୋଇଥାଏ ସୁଖ,
ଆଶାଠାରୁ କମିଗଲେ
ଆସିଯାଏ ଦୁଃଖ,
ଠାକୁରଙ୍କ ଉପରେ ସବୁ
ଦେବା ନ୍ୟସ୍ତ କରି,
ସୁଖ ଓ ଦୁଃଖ କୁ ଆମେ
ନେବା ଯେ ଆଦରି ।



# ଉତ୍କଳ ସୁନ୍ଦରୀ

*ନିବେଦିତା ମିଶ୍ର*
+୨ କଳା ପ୍ରଥମ ବର୍ଷ

ପ୍ରାଚୀତଟେ ପ୍ରାତେ ପ୍ରଭାତ ସୁନ୍ଦରୀ
ବନ୍ଦେ ପ୍ରାଣବନ୍ଧୁ ପ୍ରୀତି ହୃଦେ ଧରି ।
ଉତ୍କଳର ମାଟି ପ୍ରଥମେ ପରଶେ
ନୀଳାଞ୍ଚଳେ ବିଶ୍ୱବନ୍ଧୁ ପରଦେଶେ ।
ସେ ମାଟିକୁ ସର୍ବ ଦେବେ ପ୍ରଣମନ୍ତି
ଭକ୍ତି ପ୍ରେମେ ସ୍ପର୍ଶି ପଦବନ୍ଦୁ ଥାନ୍ତି ।
ଯେଣୁ ତା' କୋଳରେ ବିଶ୍ୱ ଶୋଭା ଶିରୀ
ଚତୁଃଦଶ ପ୍ରଭୁ ବଜେତା ନଗରୀ ।
ସକଳ ବୈଭବ ପୁରେ ତା' ବିରାଜେ
ଲକ୍ଷ୍ମୀ ପ୍ରିୟତମ ଯେଣୁ ଗୃହେ ସାଜେ ।
ଦେଖିଛି ଉତ୍କଳ ଦିବ୍ୟକାରିଗରୀ
ଗୌରବେ ମଣ୍ଡିଛି ଉତ୍କଳ ନଗରୀ ।
ତା'ବକ୍ଷେ ବେଷ୍ଟିତ ଶୈଳାବଳି କୁଞ୍ଜ
ସୁଦୂରୁ ନିର୍ଝରେ ଅମୃତର ରଜ ।
ତା' ବକ୍ଷ ନିର୍ଝର କଳନିନାଦିନୀ
କାଳରୂପୀ ସାଜେ ହୋଇଣ ଶ୍ରାବଣୀ ।

କେତେ କୃଷିକ୍ଷେତ ମାନସ ମନ୍ଦିର
ବଳେ ପଶି କରେ ସର୍ବ ଛାରଖାର ।
ମନେପଡ଼େ କେତେ ଅଶ୍ୱଖୁରା ଗର୍ତ୍ତ
ଶିଳାଖଣ୍ଡ ପରେ ହୋଇଛି ଖୋଦିତ ।
ସେବେଳର ବୀର କଳିଙ୍ଗ ସନ୍ତାନ
ଜିଣିଥିଲେ ଯୁଦ୍ଧେ କେତେ ସେ ଯବନ ।
ମାତୃ ଲାଗି ପ୍ରାଣବଳି ଦେଇ କେତେ
ଜନନୀ ଲଲାଟ ମଣ୍ଡିଲେ ରକତେ ।
କେବେ ବିଚଳିତ ହୋଇ ନାହିଁ ସେହି
ଲଢ଼ିଛି ରଣାଙ୍ଗେ ପ୍ରାଣବଳି ଦେଇ ।
ଉତ୍କଳ ଗୌରବେ କେତେ ନିର୍ବାସନ
ଲଭିଛନ୍ତି ଅଙ୍ଗେ ଉତ୍କଳ ସନ୍ତାନ ।
ଉତ୍କଳର ଶୋଭା ଚାରୁ ଅଳଙ୍କାର
ମନ୍ଦିର ମାଳିନୀ ଗୌରବ ସମ୍ଭାର ।
କୋଣାର୍କେ ଖୋଦିତ ଶିଳାଖଣ୍ଡ ପରେ
ନିଖୁଣିତ କାରୁକାର୍ଯ୍ୟ ପୁରିଝରେ ।



# ବିଡ଼ମ୍ବନା

*ରାକେଶ୍ ଆଇନ୍‌ଷ୍ଟାଇନ୍*
+୩ ବିଜ୍ଞାନ ଦ୍ୱିତୀୟ ବର୍ଷ
(ପଦାର୍ଥ ବିଜ୍ଞାନ ସମ୍ମାନ)

ଦି' ତୋକ ମରୀଚିକାର ଆଶ୍ୱାସନାରେ
କାଲି ଢେଉ ଯେବେ
ଆଶାର ସୀମା ସ୍ପର୍ଶ କଲା
ଆଉ ଜଟାୟୁର ସ୍ୱପ୍ନ ସବୁ
ସାକାର ଲାଗିଲା,
ତୋ' ପାଶେ ଯିବି ବୋଲି
ମୋ'ର ପ୍ରତିଶ୍ରୁତି ଥିଲା
ହେଲେ,
ଦିନବେଳେ ଛଅାଣ ଆଖିରେ
ଛନ୍ଦି ହେବି ବୋଲି
ରାତିକୁ ବାଛିଲି ଯେ
ଯା'ନ୍ତି ବା କେମିତି ?
ଗଲା ସଞ୍ଜବେଳେ ସୂର୍ଯ୍ୟ ଫେରୁ ଫେରୁ
ମୋ' କଦମ୍ବ ଡାଳରେ ଝୁଲି ପଡ଼ିଲେ ଯେ
କାଲି ପରା ରାତିଯାକ ଖରା ।
ଜାଣେ, ଏ ପାଗେଳାଟା ଲାଗି
ତୋ' ନହକା ଆଖିରୁ
ଲୁହ ଧାରେ ଢ଼ାଳିଥିବୁ କାଲି ।



# ଫରକ

*ସିଗ୍‌ମା ସିଲିବ୍‌*
+୩ କଳା ପ୍ରଥମ ବର୍ଷ ରାଜନୀତି ବିଜ୍ଞାନ ଅନର୍ସ

ମୁଁ ତୁମକୁ ଭଲପାଏ
ତୁମେ କିନ୍ତୁ ପାଅନା
ମୁଁ ଗୋଟିଏ ଖୋଲା ମନ
ତୁମେ କିନ୍ତୁ ଛଳନା ॥
ଉଛୁଳି ଉଠଇ ଯେବେ
ମୋ ମନର ଯମୁନା
ତୁମ ମନ ଫଟାଭୂଇଁ
ପାଣି ଟିକେ ଖୋଜେନା ॥
ସେଥିପାଇଁ ବେଳେ ବେଳେ
ଲାଗେବିତ ଅଚିହ୍ନା
ହେଲେବିତ ତୁମ ବିନା
କିଛି ଭଲ ଲାଗେନା ॥
ଏ ମନଟା ସତେ ଏକ
ଅଝଟିଆ ଆଇନା
ତୁମ ରୂପ ଦେଖିବାକୁ
ଚାହେଁ, ଦେଖି ପାରେନା ॥



# ପିତା : ମାତା

*ଅଧ୍ୟାପକ ବିଭାସ ଦାସ*

ଇଂରାଜୀ ବିଭାଗ

ପିତା ମୋ'ର  ବିଶାଳ ଆକାଶ
ମାତା ମୋ'ର  ସୁନ୍ଦରୀ ଧରିତ୍ରୀ
ପିତା ମୋ'ର  ମହା ମୃତ୍ୟୁଞ୍ଜୟ
ମାତା ମୋ'ର  ପବିତ୍ର ଗାୟତ୍ରୀ ।

ପିତା ମୋ'ର  ସୂର୍ଯ୍ୟର ଶିଖା
ମାତା ମୋ'ର  ଚନ୍ଦ୍ର-ଶୀତଳତା,
ପିତା ମୋ'ର  ମସ୍ତିଷ୍କର ବୁଦ୍ଧି
ମାତା ମୋ'ର  ହୃଦୟେ ନମ୍ରତା ।

ପିତା ମୋ'ର  ବୈଦିକ ପ୍ରଣବ
ମାତା ମୋ'ର  ଗୀତା ଭାଗବତ,
ପିତା ମୋ'ର  ଡମ୍ବରୁର ନାଦ
ମାତା ମୋ'ର  ନିସର୍ଗ ସଂଗୀତ ।।

ମୋ' ହୃଦୟ ବେଦୀ ପରେ
ଦୁହେଁ ଦେବ-ଦେବୀ
ଯାଉ ଏ ପରାଣ ମୋ'ର
ତା'ଙ୍କ ପଦ ସେବି ।।



# ମୁଁ ନୁହେଁ, କା' ପ୍ରିୟତମା

*ଲୋପାମୁଦ୍ରା ଶତପଥୀ*

+୩ ଶେଷବର୍ଷ କଳା
(ସଂପାଦିକା ନାଟ୍ୟ ସଂସଦ)

ମୁଁ ନୁହେଁ କା' ପ୍ରିୟତମା
ପ୍ରୀତି ଏକ ଚିଠି
ଚିଠି ଶେଷେ ଇତି
ଇତି ଶେଷେ ମୁଁ ଯେ କମା....
ମୁଁ ନୁହେଁ କା' ପ୍ରିୟତମା ।
ଛଳ ଛଳ ମୁଁ ଯେ ନୁହେଁ ନଈ
ନଈ ଭାବି ଭୁଲ୍ କର ନାହିଁ
ବନ୍ୟା ତ ନ ଜାଣେ କ୍ଷମା
ମୁଁ ନୁହେଁ କା' ପ୍ରିୟତମା ।
ଧରିବନି ମୋ'ର ଏହି କଥା
ରହିବନି କେବେ ନଇଁ ମଥା
ରାଗିବନି ତୁମେ ଜମା
ମୁଁ ନୁହେଁ କା' ପ୍ରିୟତମା ।
ନୀରବତା ନୁହେଁ ମୋ' ଉତ୍ତର
ତୁମ ସାଥେ ଗପି ଲାଗେ ଭଲ
(ତଥାପି) ଆମ ମଧ୍ୟେ ରହୁ ସୀମା
ମୁଁ ନୁହେଁ କା' ପ୍ରିୟତମା ।



ରମ୍ୟକବିତା

# କଲେଜ ଲେଡ଼ି

*(ମଡ଼ର୍ଣ୍ଣ ଡୁଏଟ୍)*

*ବୀରେନ୍ଦ୍ର କୁମାର ପତି*
- +୩ କଳା ପ୍ରଥମ ବର୍ଷ (ଇତିହାସ ସମ୍ମାନ)

ପୁ : — ତମେ କେଉଁ କଲେଜର ଲେଡ଼ି
ପାଦରେ ପିନ୍ଧିଛ ହାଏହିଲ୍ ଆଉ
ଡାହାଣ ହାତରେ ଘଡ଼ି ?
ତମେ କେଉଁ କଲେଜର ଲେଡ଼ି
ବବ୍ ଷ୍ଟାଇଲି ବାଳକୁ ନଚେଇ
ଆଗକୁ ଯାଉଛ ମାଡ଼ି ?
ତମେ କେଉଁ କଲେଜର ଲେଡ଼ି
ହାତରେ ଧରିଛ ରଙ୍ଗୀନ ଛତା
ପିନ୍ଧିଅଛ ପ୍ରିଣ୍ଟ୍ଶାଢ଼ୀ ?
ଝି :— ଆରେ !
ମୁଁ ତ ଏଇ କଲେଜର ଲେଡ଼ି
ରସିକ ପଣିଆ ରଖ୍ ଦେ' ତୋ'ର
ଯାଉଛି ମୁଁ ମୁହଁ ମୋଡ଼ି ।
ମୁଁ ତ ଏଇ କଲେଜର ଲେଡ଼ି
ତୋହର କାହିଁକି ନାହି ଡେଉଁଛିରେ
ପିନ୍ଧିଲେ ମୁଁ ପ୍ରିଣ୍ଟ୍ଶାଢ଼ୀ ?
ମୁଁ ତ ଏଇ କଲେଜର ଲେଡ଼ି
ଘର ମୋ'ର ଏଇ କଲେଜ ପାଖରେ
ଥାନାବାବୁ ମୋ'ର ଡାଡ଼ି
(ତାଙ୍କ) ହାତରେ ତ ରୋଳ ବାଡ଼ି ।।





# ସୁନ୍ଦରୀ ଝିଅଟା

*ସଞ୍ଜୟ କୁମାର ବେହେରା*
+୩ ବାଣିଜ୍ୟ ଦ୍ୱିତୀୟ ବର୍ଷ

ସତ କହିଲେ –
ସେ ଥିଲା ସୁନ୍ଦରୀ ଝିଅଟା
ତା'ପରି ଝିଅଟିଏ
ଏ କଲେଜ୍ କାହିଁକି
ସାରା ଓଡ଼ିଶାରେ
ଭାରତ ବର୍ଷରେ ବି
ମିଳିବା ମୁସ୍କିଲ୍ ।
ପ୍ରାଚୀନ କବି ଶୈଳୀରେ
ରୂପ ତା'ର ବଖାଣିଲେ
ଏମିତି ହେବ –
ସୁନ୍ଦର ଦର୍ପଣ ଆଖି
ନାକ : ଶୁଆ ଥଣ୍ଟ,
ମଧୁଝରା ହାସ୍ୟ ଉକୁଟେ
ତା'ର ବିମ୍ବ ଓଷ୍ଠେ ।
ଆଧୁନିକ କବି ଉପମାରେ
ଗହମ ରଂଗର ଦେହ
କଅଁଳ ଭେଣ୍ଡିପରି
ତା'ଦଶ ଆଙ୍ଗୁଠି,
ଟମାଟୋ ପରିକା ତା'ର
ଗଣ୍ଡ ଦେଶ
ଦନ୍ତ ଅବା ଡାଳିମ୍ବର ମଞ୍ଜି ।
ବୋଧହୁଏ,
ମାଧୁରୀଠୁ ରାଣୀଯାଏ
ସମସ୍ତେ ତା'ଦାସୀ ହେବା ଯୋଗ୍ୟା ।
ସତରେ ସେ ଅତ୍ୟନ୍ତ ସୁନ୍ଦରୀ
ଝିଅ ପରି ଝିଅଟିଏ
ଅବଶ୍ୟ ଏ ସବୁ କେବଳ
ମୋ'ରି ଦୃଷ୍ଟିରେ
ଯେହେତୁ ମୁଁ ତା'କୁ
ଭାରି ଭଲପାଏ ।।



# ତୁମ ପ୍ରତୀକ୍ଷାରେ

ଜିତେନ୍ଦ୍ର କୁମାର ସ୍ୱାଇଁ
+୩ କଳା ଶେଷ ବର୍ଷ

ସାଗର ବୁକୁରେ ଉଠିଥିଲା ଢେଉ
ଜହ୍ନ ହସୁଥିଲା ଜୋଛନା କୋଳେ,
ଢେଉ ଭଳି ତୁମେ ପାଦ ଥାପିଥିଲ
ମୋ' ହୃଦ ବେଳାରେ ବାଂଧବୀ ମେଳେ ।
ତୁମେ ଜାଣିନାହଁ ମୁଁ, ଜାଣିନାହିଁ
କେବେ ଯେ ଫୁଟିଲା ସେ ନୀଳ କଇଁ,
ଖୋଜି ତ ବୁଲିଲି ହରିଣୀଙ୍କ ମେଳେ
କସ୍ତୁରୀ ମୃଗ ମୋ' ପାଇବା ପାଇଁ ।
ଫୁଲକୁ ଭ୍ରମର ଚୁମିଯାଏ ତେଣେ
ଗଛରେ ମାଡ଼ଇ ଲବଙ୍ଗ ଲତା,
ପବନ ଆସି ମୋ' କାନ ପାଖେ କହେ
କେତେ ଶରଧାରେ ତୁମରି କଥା ।
ସ୍ଥାନଟିକେ ଦିଅ ହୃଦୟେ ତୁମର
ରାତିର ସପନେ ଆସ ଗୋ' ଚାଲି,
ତୂଳିରେ ଏମିତି ସଜାଇ ଦେବି ମୁଁ
ଇନ୍ଦ୍ରଧନୁ ଯିବ ନିଜକୁ ଭୁଲି ।
ଅପେକ୍ଷା କରିଛି ଅପେକ୍ଷା କରିବି
ମାସେ, ବର୍ଷେ ନୁହେଁ, ଅନେକ ଯୁଗ,
କୁହ ଆଗୋ ପ୍ରିୟେ କେବେ ଯେ ଆସିବ
କେବେ ଅଛି ଆମ ମିଳନ ଯୋଗ ?



# ଅଭିନନ୍ଦନ ଘେନ

ବିଭୂତି ଭୂଷଣ ବାରିକ
+୩ କଳା ତୃତୀୟ ବର୍ଷ (ସଂସ୍କୃତ ସମ୍ମାନ)

ଅଭିନନ୍ଦନ ଭାଇଭଉଣୀ ହେ
ଅଭିନନ୍ଦନ ନିଅ
ନୂଆ ବରଷରେ ନୂଆ ପ୍ରେରଣାରେ
କର୍ମରେ ଆଗେଇ ଯାଅ ।
ଦୁନିଆ ଅଟଇ କର୍ମର ଭୂମି
ମନେରଖିଥାଅ ଭାଇ
କର୍ମ ନକରି ସହଜେ ଏଠାରୁ
ମୁକୁଳି ପାରିବ ନାହିଁ
ଆସିଅଛେ ଏକା ଚାଲି ଯିବା ଏକା
ପୂରିଲେ ଆମର କାଳ
ଅଢ଼େଇ ଦିନର ଜୀବନଟା ଇଏ
ବୃଥାକଳି ତକରାଳ ।
ଆଜି ଯାକେ କହ ଏଇ ମୋ ନିଜର
କାଲି ହୁଏ ସାତପର
କାଲି ଗଲେ ଚାଲି ସବୁଯିବେ ଭୁଲି
ବୃଥାସବୁ ଘରଦ୍ୱାର
ସେନେହ ମମତା ସବୁଠାରୁ ବଡ଼
ତା'ର ସରି କେହି ନୁହଁ
ଚାଲିଗଲେ ସୁଦ୍ଧା ସଭିଙ୍କ ଆଗରେ
ନାଚୁଥିବ ଆମ ମୁହଁ
ସ୍ନେହ ମମତାର କବଚ ପିନ୍ଧାଇ
ଜିଣିବା ସଭିଙ୍କ ମନ
ନିଶ୍ଚୟ ଝୁରିବେ ଜଣେ ହେଲେ କେହି
ଆମକୁ ସାରାଜୀବନ ।।



# ଆମେ ସବୁ ଭାରତୀୟ

*ପ୍ରଶାନ୍ତ କୁମାର ମଲ୍ଲିକ*
+୨ ବିଜ୍ଞାନ ପ୍ରଥମ ବର୍ଷ

କୋଟିଏ କଣ୍ଠେ ଗୋଟିଏ ମନ୍ତ୍ର
ମାତୃଭୂମିର ଜୟ
ଭାରତ ମାଆର ସନ୍ତାନ ଆମେ ଏହି ଆମ ପରିଚୟ ।
ଆମେ ଭାରତୀୟ, ଆମେ ଭାରତୀୟ
ଗୀତା, ବାଇବେଲ୍ ଜୀବନେ ଆମରି
ହୋଇଛି ଅନେକ ସାହା ।
ସବୁ ଧରମ ମତ ସମାନ ଏଇଠି
ଏଇ ମାଟି ଆମ ମାଆ
ଏ ଦେଶ ମାଆର ସେବା କରିବାରେ
ନରଖି ମନରେ ଭୟ ।
ଭାରତ ମାଆର ସନ୍ତାନ ଆମେ ଏଇ ଆମ ପରିଚୟ
ଆମେ ଭାରତୀୟ, ଆମେ ଭାରତୀୟ
ସାରା ଭାରତରେ ଶାନ୍ତିର ବାର୍ତ୍ତା ଆମେରେ ଖେଳାଇ ଦେବା
ନୂଆ କରି ଆମେ ଗଢ଼ିବା ଦୁନିଆଁ
ସବୁଠି ଆଗୁଆ ହେବା
ଭାରତ ମାଆର ବନ୍ଦନା ଗାଉ
ଜୟ ମା, ଭାରତ ଜୟ
ଭାରତ ମାଆର ସନ୍ତାନ ଆମେ
ଏଇ ଆମ ପରିଚୟ
ଆମେ ଭାରତୀୟ, ଆମେ ଭାରତୀୟ



# ପୂଜା ମଣ୍ଡପ

*ସସ୍ମିତା ପ୍ରଧାନ*
+୨ କଳା ପ୍ରଥମ ବର୍ଷ

ଦଶମ ଶତାବ୍ଦୀ ଇତିହାସ ଖେଦି
ତୁଙ୍ଗ ବଂଶୀ ରାଜ ଭଞ୍ଜେ
ମହା ପରବତ ମେଖଳସଂଯୁତ ଶାସନ
ସତତ ରାଜେ - (୧)
ଜାମୁଡ଼ିହି - ଜାମୁ ଜମ୍ବାଳ କାନନ ତମାଳ ବକୁଳ ଶୋଭା
ଉମା ମାହେଶ୍ୱରୀ ତା'ର ମୁକ୍ତଶାକ୍ଷୀ ଜଳଦ ଦର୍ପଣ ପ୍ରଭା (୨)
ତନ୍ମଧ୍ୟେ ବିରାଜେ ମହାବିଦ୍ୟାଳୟ ମହାମହିମାକୁ ଶାଣି,
ଭାରତ ଭାରତୀ ବିପଛି ଲତିକା ପ୍ରତ୍ୟେକେ ବିରାଜେ ବାଣୀ
ବହୁ ପୁତ୍ର କନ୍ୟା ଜ୍ଞାନଦାନ ନେଲେ, ସଂଗ୍ରାମୀ ଅନୁବ୍ରତେ
ରାଣୀ ଶୁକଦେଇ ଗୋବିନ୍ଦ ରଥ ଯେ, କାଳକୃତି ଅବଗତେ
ଇତିହାସ ଅବା ବିଜ୍ଞାନ ଦର୍ଶନ, ସାହିତ୍ୟ ସଙ୍ଗୀତ ପଢ଼ି
ଆମେ ସବୁ ତା'ର ଆଗାମୀ ଦାୟଦ, ସଉରଭ ଗୀତି ବାଢ଼ି
ଅଧ୍ୟାପକ ଅଧ୍ୟାପିକା ବା ଅଧକ୍ଷ ଧୌମ୍ୟ ଦ୍ରୋଣାଚାର୍ଯ୍ୟ ପୂଜି
ଉପମନ୍ୟୁ ଆରୁଣିକ ପ୍ରାଣ ଉପେ ଜାତିହିତେ ଯାଉହଜି ।
ପ୍ରଣମ୍ୟ ସେ ପୁଣ୍ୟ ମହାବିଦ୍ୟାଳୟ, ଜୟବାଙ୍କୀ ଚର୍ଚ୍ଚିକାୟୀ
ମାତୃଅଙ୍କ ସ୍ନେହ ପୂତ ସୁମଣ୍ଡପେ ବସିଛି ବିଜୟୀ ହୋଇ



# ମା' ଚର୍ଚ୍ଚିକାୟୀ

ସୁଜାତା ସାହୁ
+୩ କଳା ପ୍ରଥମ ବର୍ଷ (ଇଂରାଜୀ ଅନର୍ସ)

ପୁଣ୍ୟଭୂମି ଏଇ ଉତ୍କଳ ଦେଶରେ
ନାନା ପୀଠ ଅଛି ରହି,
କରିଲେ ଦର୍ଶନ ମିଳଇ ସୁଫଳ
ଭକ୍ତି ମାର୍ଗେ ଯେବେ ରହି ॥
ବହୁ ଦେବ ଦେବୀ ମନ୍ଦିରକୁ ବୁଲି
ମଣିଲି ମୁଁ ଭାଗ୍ୟବାନ,
ଭାବେ ମୁଁ ଅନ୍ତରେ ପୂର୍ବଜନ୍ମ ଆଜି
ହୋଇଅଛି ମହୀୟାନ ॥
ବୁଲି ବୁଲି ଶେଷେ ଚର୍ଚ୍ଚିକାୟୀ ପାଶେ
ଆନନ୍ଦେ ପହଞ୍ଚି ଗଲି,
କି ବିଚିତ୍ର କାରୁକାର୍ଯ୍ୟେ ଏହା ଗଢ଼ା
ଆନନ୍ଦେ ବିଭୋର ହେଲି ॥
କାଷ୍ଠ ପାଶାଣରେ ଗଢ଼ା ଏ ମନ୍ଦିର
ନୟନରେ ରହେ ଲାଖି
ମାତାଙ୍କୁ ଦର୍ଶନ କରି ଭକ୍ତଗଣ
ବିଭୋର ହୁଏରେ ସଖୀ ॥
କେଉଁ କାରିଗର ଗଢ଼ିଛି ମନ୍ଦିର
କମନୀୟ ଦିଶେ ଆଜି,
ମହାନଦୀ କୂଳେ ବାଙ୍କୀଗଡ଼ ମଧ୍ୟେ
କାରୁକାର୍ଯ୍ୟ ଶୋଭା ରାଜି ॥
କଳିଶେଷ ଭାଗେ ହେଙ୍ଗୁଳାଙ୍କ ସଙ୍ଗେ
ମାତା ଚର୍ଚ୍ଚିକାୟୀ ମିଶି,
ପୃଥ୍ୱୀ ପ୍ରଦକ୍ଷିଣ କରିବେ ନିଶ୍ଚୟ
ମାଳିକା ଯାହା କହୁଛି ॥
ସପ୍ତବାର ମହୀ ପ୍ରଦକ୍ଷିଣ କରି
ଆସିବେ ସ୍ୱସ୍ଥାନେ ଫେରି,
ସେ ସମୟେ ଜାଣ ବହୁଜନ କ୍ଷୟ
ପଡ଼ିଯାଉଥିବ ହୁରି ॥
ଅସଲି ଭକ୍ତଙ୍କୁ ବାଛି ଚର୍ଚ୍ଚିକାୟୀ
ସିରିପା ଦେବେ ପିନ୍ଧାଇ,
ସତ୍ୟ ଯୁଗ ବାନା ଉଡ଼ାଇବେ ମାତା
ଭକ୍ତଙ୍କ ଗହଣେ ରହି ॥
ବେଳ ଥାଉଁ ଥାଉଁ ବନ୍ଧ ବାନ୍ଧି ଏବେ
ମନେ ନବହି କପଟ,
ସତ୍ୟ, ଶାନ୍ତି ପଥେ ଚାଲୁଥାଅ ଭାଇ
ମିଳିଯିବ ମୁକ୍ତି ବାଟ ॥
ଆଉ ଯା ରହିଲା ମାଳିକା କହୁଛି
ଘଟିବ ଅବଶ୍ୟ ଦିନେ,
ମୁଖେ ରାମନାମ ଅନ୍ତରୁ କପଟ
ଦୂରେଇ ଦିଅହେ ଜନେ ॥
ସତ୍ୟ ଯୁଗେ ଦିନେ ସୁଫଳ ମିଳିବ
ଯିଏ ଥିବ ଶେଷେ ରହି,
ସତ୍ୟ ଯୁଗ ମଜା ସିଏଟି ଚାଖିବ
ସତ୍ୟ ଯେ ଏହା ଅଟଇ ॥



# ନାରୀ

*ଅଜୟ କୁମାର ମିଶ୍ର*
+୩ ବିଜ୍ଞାନ ଦ୍ୱିତୀୟ ବର୍ଷ
(ରସାୟନ ବିଜ୍ଞାନ ସମ୍ମାନ)

ଲୁହ ଆଉ ନିର୍ଯାତନାରେ
ଅଧଲିଟର କିରୋସିନୀ
କି ପେଟ୍ରୋଲ
ଓ ଗୋଟିଏ ଦିଆସିଲି କାଠିରେ
ଶେଷ ହୋଇଯାଉଛି
ତୋ ଜୀବନ.....
ଲଗ୍ନରୁ ବିବାହ ଯାଏ
ତୁ କେତେ ଖୁସି ଥାଉ
ହୋମ ନିଆଁରୁ
ଶ୍ମଶାନ ନିଆଁ ଯାଏ
ତୁ ଖାଲି ଜଳୁଥାଉ
ଏବଂ ଜଳୁଥାଉ ॥



# ବର୍ଷା

*ଅଂଶୁମାନ ବେହେରା*
+୨ ବିଜ୍ଞାନ ପ୍ରଥମ ବର୍ଷ

ଟପ୍, ଟପ୍, ଚାପଡ଼ ଚାପଡ଼ ଗଲ୍ ଗଲ୍ ହୋଇ
କେବେ କେବେ ଚୁପ୍ ଚୁପ୍
କେବେ କେବେ ଅଶାନ୍ତ ଚିତ୍ତରେ .
କିଛି ଅବା କହୁ କହୁ
ମଝିରେ ଆଖି ତେଲ୍ କାଉ
ରାଗିଲେ ଗାଉଁ ଗାଉଁ
ଘଡ଼ ଘଡ଼ ହେଉ ।
ତୋତେ ଏମିତି ଦେଖି
ଛାତିରେ ଛନକା ପଶେ,
ବେଳେ ବେଳେ ଖୁସି କରିବା ପରି
ପ୍ରତୀକ୍ଷିତ ଅତିଥିଙ୍କ ପରି
ସ୍ୱାଗତ ସମ୍ଭାର ନେଉ ।
ଆନନ୍ଦରେ କାହାକୁ ତୁ ଗେଲ କରି ଦେଉତ
ଉଦ୍ଦଣ୍ଡୀ ପଣରେ କା ଗାଲରେ .
ଚଉକଶ ଚାପୁଡ଼ା ଲଗାଉ !
ବର୍ଷାଲୋ ...........
ତୁ କାହିଁକି ଏମିତି ହେଉ ? ? ?



## କାହିଁକି ଯିବି ସେ ଗାଁକୁ

ସରୋଜ ସ୍ୱାଇଁ
+ ୩ ବିଜ୍ଞାନ ଦ୍ୱିତୀୟ ବର୍ଷ

ଶୁଣିଲି ତୁମେ କାଳେ ଗାଁରେ ରହୁନ,
ରହୁନ ବି ସେଇ ଘରେ
ଯେଉଁଠି ବିତିଛି ତମର ଚବିଶି ଗୋଟି ଫଗୁଣ
ପ୍ରତ୍ୟେକଟି କଥାରେ ଥିଲା ଯେଉଁଠି
ତୁମପାଇଁ ବାରଣର ଶୃଙ୍ଖଳ
ଓଦା ହେଉଥିଲେ ଯେଉଁଠି ମୁହୂର୍ତ୍ତମାନେ
ଲୁହରେ ତୁମର ଫି'ଦିନ
ଯେ'ଠାରେ ମରି ମରି ବଂଚିବାକୁ ପଡୁଥିଲା
ତୁମକୁ ଅନ୍ୟ କାହା ପାଇଁ
ଯେଉଁଠି ଆମପାଇଁ ଥିଲା କେତେ
ସଂଦେହର ଆଖି
ତୁମେ ରହୁନ ସେଠାରେ
ସେ ଘରେ / ସେ ଗାଁରେ
ଭାବୁଚି ସେ ଗାଁକୁ ଆଉ ଯିବିନି
ଯେଉଁଠି ତମେ ନାହିଁ
ନାହିଁ ଯେଉଁଠି ତୁମ ଉପସ୍ଥିତି
ପଦେ କଥା ହେବା ପାଇଁ
ପଲକାଏ ଦେଖି ହେବନି ତୁମକୁ ଯେଉଁଠି
କି ନାହିଁ ଯେଉଁଠି କେହି
ପାଗଳ ବୋଲି କହିବାକୁ ମୋତେ ସରାଗରେ
ସେଠାକୁ
ସେ ଗାଁକୁ ଆଉ ଯିବି କାହିଁକି,
କାହିଁକି ଯିବି ସେ ଗାଆଁକୁ ?



## ଆତଙ୍କବାଦ

ମଧୁସ୍ମିତା ଦାସ
+୨ କଳା ପ୍ରଥମ ବର୍ଷ

କଳଙ୍କର କିମ୍ବଦନ୍ତୀ ସାଜିବିନି
ବୋଲିତ
ଭୁଲିଯିବାକୁ ପଡ଼ିଲା
ତୁମ ଚର୍ଚ୍ଚିତ ଚେହେରା
ଜହ୍ନର ସରାଗ ସାଉଁଟିବିନି
ବୋଲିତ,
ଚୁପ୍‌ଚାପ୍ ନିଜର କରିନେଲି
ଚିର ଅନ୍ଧାରକୁ ।
ଆଧାର ଅପେକ୍ଷାରେ ଚଢ଼େଇଛୁଆ
ବେସୁରା ସୁରରେ ଗୀତ ଗାଉଥିବା ଚାଷୀ,
ଓ ଆମ୍ବ କୋଇଲିରେ ଜୀବନ କଟାଉଥିବା ମଣିଷ ।
ସମସ୍ତେ ନିର୍ଭୀକ
ଏଠି ସିନା ଆମ ମିଛି ମିଛି
ଜୀବନ ଭିତରେ ଚାଲିଛି ଘମାଘୋଟ ଲଢ଼େଇ
ସେଠି କିନ୍ତୁ
ଆମେରିକାଠାରୁ ଆଫଗାନିସ୍ତାନ ଯାଏଁ
ଲମ୍ବିଯାଉଛି ଆତଙ୍କବାଦର ରାସ୍ତା !



# ନୀଳ ସାଗରର ଲହରୀ ମୁଁ ସଖୀ

*ବିଷ୍ଣୁ ଚରଣ ଦାସ*
+୩ କଳା ପ୍ରଥମ ବର୍ଷ ମନସ୍ତତ୍ତ୍ୱ, ସମ୍ମାନ

ନୀଳ ସାଗରର ଲହରୀ ମୁଁ ସଖୀ
ତୁମେ ମୋର ବେଳାଭୂଇଁ,
ନୀଳ ଆକାଶର ଚାନ୍ଦ ମୁଁ ସଖୀ
ତୁମେ ମୋର ନୀଳ କଇଁ ।।
ପୂଜା ମଣ୍ଡପରେ ଅପୂଜା ମୁଁ ସଖୀ
ତୁମେ ମୋ ସବୁଠି ପୂଜ୍ୟା,
ତୁମରି ପାଇଁକି ଅଯୋଗ୍ୟ ମୁଁ ସଖୀ
ତୁମେ ତ ସବୁରି ଯୋଗ୍ୟା ।।
ବସନ୍ତ ଆଗମେ ମଳୟ ମୁଁ ସଖୀ
ତୁମେ ମୋର ପୂଜା ଫୁଲ,
ତୁମ ବିଚ୍ଛେଦରେ ଅନିଦ୍ର ମୁଁ ସଖୀ
ତୁମେ ମୋ ନିଦର କୋଳ ।।
ସାହାରା ବାଲିରେ ଶୋଇଲେ ମୁଁ ସଖୀ
ତୁମେ ମୋ ମେଣ୍ଟାଅ ତୃଷା,
ଅମା ଅନ୍ଧକାରେ ଅଶୁଭ ମୁଁ ସଖୀ
ତୁମେ ମୋ ପୂର୍ଣ୍ଣିମା ଜୋସ୍ନା ।।
ଛନ୍ଦହରା ଏକ ନାୟକ ମୁଁ ସଖୀ
ତୁମେ ମୋ ଜୀବନେ ତାନ,
ବଇଶାଖୀ ବନେ ଅନଳ ମୁଁ ସଖୀ
ତୁମେ ମୋ ଶୀତଳ ପ୍ରାଣ ।।



# ଆଶାରେ ବାଲିଘର

*ଗଣେଶ ଚନ୍ଦ୍ର ମହାପାତ୍ର*
+ ୩ କଳା ଦ୍ୱିତୀୟ ବର୍ଷ

ଯାଇଥିଲେ ଦିନେ ସାଗର କୂଳକୁ
ବାଲିଘର ତୋଳିବାକୁ,
ରହିଥିଲା ଆଶା ମନରେ ମୋହର
ବାଲିଘରେ ରହିବାକୁ ।
ଅନେକ ସ୍ୱପ୍ନ-ଶାମୁକା ନେଇ ମୁଁ
ବସିଲି ସାଗର କୂଳେ ।
ଲାଗୁଥିଲା ଡର ଉଦ୍ଧତ ସାଗର
ଭାଙ୍ଗିଦେବ ପରେ କାଳେ ।
ପ୍ରଥମେ ପଚାରି ଥିଲି ସାଗରକୁ
''ହେ ସାଗର ! କୁହ ସତ,
ବେଳାଭୂମି ପରେ ତୋଳିବି ଘର ମୁଁ
(ମୋ) ବାଲିଘର ରହିବତ ?
ସାଗର କହିଲା ଜାଣେନା ସେ କଥା
ଢେଉକୁ ପଚାର ଯାଇ,
ଲହରୀ କହିଲା ବେଳାଭୂମି ମୋର
ଛାଡ଼ି ପାରିବିନି ଭାଇ ।
ଲହରୀର୍ କଥା ଶୁଣି ମୁଁ ସେଦିନ
ନିରାଶେ ଆସିଲି ଫେରି,
ସ୍ୱପ୍ନ ସକଳ ଭାଙ୍ଗିରୁଜିଗଲା ।
ଘର ପାରିଲିନି ଗଢ଼ି ।






# ଉନ୍ମତ୍ତ ବରଯାତ୍ରିୟାଣୀ

ଶ୍ରୀ ବ୍ରହ୍ମାନନ୍ଦ ମହାରଣା
ମନସ୍ତତ୍ତ୍ୱ ବିଭାଗ

ବିଭାଘର ସମୟରେ ବରଯାତ୍ରୀ ଓ ଭୋଜି ପ୍ରଥାଟି ଏବେକାର ନୁହେଁ । ଏହା ବହୁ ପୁରାତନ କାଳରୁ ପ୍ରଚଳିତ । ଏପରିକି ପୁରାଣ ଶାସ୍ତ୍ରର ପୃଷ୍ଠା ଓଲଟାଇଲେ ଏହି ପ୍ରଥାର ବ୍ୟବହାର ମଧ୍ୟ ଦେଖିବାକୁ ମିଳେ । ଦେବଙ୍କ ଦେବ ମହାଦେବ ଶିବ ଯେତେବେଳେ ପାର୍ବତୀଙ୍କୁ ବିବାହ କରିବାକୁ ଯାଉଥିଲେ ସେତେବେଳେ ତାଙ୍କ ସହିତ ତେତିଶ କୋଟି ଦେବତା ସହିତ ଆହୁରି ଅନେକ ବରଯାତ୍ରୀ ଯାଇଥିବାର ପ୍ରମାଣ ମିଳେ । ବରଯାତ୍ରୀ ଅର୍ଥ ହେଉଛି ବିବାହ ଉତ୍ସବଟିକୁ ଅଧିକ ଆନନ୍ଦ ମୁଖରିତ କରିବା ପାଇଁ ବରର ସାଙ୍ଗ ସାଥୀମାନଙ୍କ ସକ୍ରିୟ ସହଯୋଗ ଓ ସାହାଯ୍ୟ ଇତ୍ୟାଦି । ସେଥିପାଇଁ ବର ସହିତ ବରଯାତ୍ରୀଙ୍କୁ ମଧ୍ୟ ଉଚିତ ସମ୍ମାନ ପ୍ରଦାନ କରାଯାଉଥିଲା । ଉତ୍ସବଟି ଯେପରି ଶାନ୍ତି ଶୃଙ୍ଖଳାରେ ସମାହିତ ହୋଇ ବରକନ୍ୟା ସମ୍ମାନେ ବରଘରକୁ ଧୁମ୍‌ଧାମରେ ଫେରି ଆସିବେ, ସେଥିପାଇଁ ସମସ୍ତ ଆୟୋଜନକାରୀଙ୍କ ସହିତ ବରଯାତ୍ରୀମାନେ ମଧ୍ୟ ସକ୍ରିୟ ଭୂମିକା ଗ୍ରହଣ କରୁଥିବାରୁ ସେମାନେ ବରପକ୍ଷଙ୍କର ମାନ ସମ୍ମାନ ରକ୍ଷା କରିବା ସହିତ ନିଜ ନିଜର ମଧ୍ୟ ସମ୍ମାନ ବଜାୟ ରଖୁଥିଲେ ।

କିନ୍ତୁ ଆଜିକାଲିକା କଥା ଭିନ୍ନ ମୋଡ଼ ନେଲାଣି । ବିଭାଘରଟିଏ ଆସିଲେ ବର ଯେତିକି ଖୁସି ନ ହେଉଛି ବେଶୀ ଖୁସି ହେଉଛନ୍ତି ତା'ର ସାଙ୍ଗସାଥୀ ବରଯାତ୍ରୀମାନେ । ଚିନ୍ତାବଢ଼ିଯାଉଛି କନ୍ୟାପକ୍ଷର । ଯଦି ତୋଳାକନ୍ୟା ହୋଇଗଲାତ ଭଲ, ମୁକ୍ତି ମିଳିଗଲା । କିନ୍ତୁ ଯଦି ବିଭାଘର ଆସିବ, ତେବେ ଦୁଇଟି କଥା । ପ୍ରଥମରେ କେତେ ବରଯାତ୍ରୀ ଆସିବେ ଓ ଦ୍ୱିତୀୟରେ ବାଜା ବାଣ ଇତ୍ୟାଦି, ଯଦି କମ୍ ସଂଖ୍ୟକ ବରଯାତ୍ରୀ ଆସିବେ ତ ଭଲ ନଚେତ ପୁଣି ସେଇ ଦୁଇଟି କଥା । ଶୃଙ୍ଖଳିତ ଶହେଟି ବରଯାତ୍ରୀଙ୍କ ଅପେକ୍ଷା ବିଶୃଙ୍ଖଳିତ ଦଶଟି ମାତାଲ ବରଯାତ୍ରୀ ଉଭୟ ପକ୍ଷଙ୍କୁ ସାଂଘାତିକ ସମସ୍ୟାରେ ପକାଇଥାନ୍ତି । ଏପରିକି ଏହି ବରଯାତ୍ରୀଙ୍କ ଯୋଗୁଁ ଅନେକ ଜାଗାରେ ଶିବ ତାଣ୍ଡବ ସୃଷ୍ଟି ହୋଇ ବିଭାଘର ବନ୍ଦ ହୋଇଯିବାର ଅନେକ ଦୃଷ୍ଟାନ୍ତ ମଧ୍ୟ ଖବରକାଗଜରୁ ଦେଖିବାକୁ ମିଳେ । ଆଗକାଳରେ ବରଯାତ୍ରୀମାନେ ଯାଇ ବିଭାଘରଟିକୁ ଶୃଙ୍ଖଳାରେ କରି ଫେରୁଥିଲେ, ମାତ୍ର ଏବେକାର ବରଯାତ୍ରୀ ବିଭାଘର କିମ୍ବା ବରପିତାର ସମ୍ମାନକୁ ଜଳାଞ୍ଜଳି ଦେଇ ନିଜର ଆତ୍ମବଡ଼ିମା ଓ ଯିଦ୍‌ଖୋର ମନୋଭାବ ନେଇ କନ୍ୟାପକ୍ଷ ଉପରେ ଅକଥନୀୟ ସମସ୍ୟା ଲଦି ଦେଉଛନ୍ତି । ବରଯାତ୍ରୀମାନେ ବାଟରେ ଆଳିପଣା ଖାଉଥିଲେ, ଏବେକାର ବରଯାତ୍ରୀମାନେ ଆସିବା ପୂର୍ବରୁ ନିଜର ସାଥୀ ବରଠାରୁ ଆଳିପଣା ବଦଳରେ ମଦବୋତଲ ଦାବୀ କରି ବସୁଛନ୍ତି । ସେତେବେଳେ ପ୍ରସେସନ୍‌ରେ ବିଭିନ୍ନ ପ୍ରକାର ସଜ ତଥା କଳଘୋଡ଼ା, ବୁଢ଼ା ବୁଢ଼ୀ, ହାତୀ, କଳ ବୃଷଭ, କଳ ବାଘ ବାଘୁଣୀ ପ୍ରଭୃତି ନେଇ ଆନନ୍ଦ ଉପଭୋଗ କରୁଥିଲେ । ଏବେ କିନ୍ତୁ ସେ ଦିନର ଘୋଡ଼ା, ହାତୀ ବାଘ ବାଘୁଣୀ ଦରକାର ନାହି କିମ୍ବା ସୁବାସିତ ଅତର ଦରକାର ନାହିଁ । ଆକଣ୍ଠ ମଦ୍ୟପାନ କରି ମଦ କିଛି ଦେହରେ ଛିଞ୍ଚିହୋଇ ଘୋଡ଼ାପରି ନିର୍ଲ୍ଲଜ ଭାବେ ବାଜା ସହିତ ତାଳ ମିଳାଇ ନାଚ କରିବା, ନାଗିନ୍ ଗୀତ ବଜାଇବା ପାଇଁ ବାଜାବାଲାଙ୍କ ସହିତ ଝଗଡ଼ା କରିବା ଓ ବାଜାର ତାଳେତାଳେ ଧୂଳିମାଟିରେ ଗଡ଼ିବା । ଅନ୍ୟକେତେକ ଭଦ୍ର ବରଯାତ୍ରୀଙ୍କୁ ମଧ୍ୟ ଏଥିରେ ସାମିଲ ହେବାପାଇଁ ଜବରଦସ୍ତ କରାଯାଉଛି । ଥରେ ଏପରି ନାଗିନ୍ ନାଚ ହେଉ ହେଉ ଦେଖାଗଲା, ବାଜାର ତାଳେ

ତାଳେ ୧୫/୨୦ ଜଣ ବରଯାତ୍ରୀ କେବଳ ନାଗିନ୍ ହୋଇଯାଇଥିଲେ, କେଳା କିନ୍ତୁ କେହି ନଥିଲେ । ପରସ୍ପରକୁ ଚୋଟ ମରାମରି ହେଉହେଉ ହେଲା ଗଣ୍ଡଗୋଳ । ପ୍ରବଳ ଗଣ୍ଡଗୋଳ, ଶେଷରେ ବଡ଼ ବଡ଼ ନାଗିନ୍‌ଙ୍କୁ ସେଥିରୁ କାଢ଼ିନେଲାପରେ ଓ ନାଗିନ୍-ମାନଙ୍କର ବିଷ କମିଲା ପରେ ସକାଳ ହୋଇ ଯାଇଥିଲା । ଭୋଜି ଖରାପ ଏବଂ ମାହେନ୍ଦ୍ର ବେଳା ଯାଇ କାଳବେଳାରେ ବିଭାଘରଟି ହେଲା । ବିଚରା ବରକନ୍ୟାଙ୍କ ଭବିଷ୍ୟତ ପାଇଁ ଏହି ବରଯାତ୍ରୀ ସେତେବେଳେ ଦାୟୀ ରହିବେ ତ ! କେବଳ ଏହି ବରଯାତ୍ରୀଙ୍କ ସମସ୍ୟାକୁ କେନ୍ଦ୍ରକରି ଅନେକ ନିରୀହ କନ୍ୟାପିତା ନିଜ ଘରେ ବହୁପ୍ରତୀକ୍ଷିତ କନ୍ୟା ବିବାହ କରିନପାରି ଯାଇ ଠାକୁର ମନ୍ଦିରରେ କିମ୍ବା କଲ୍ୟାଣ ମଣ୍ଡପରେ ବିଭାଘର କରୁଛନ୍ତି । ଅବଶ୍ୟ ସେତେବେଳେ ବରଯାତ୍ରୀଙ୍କୁ ସମ୍ମାନ ଦେଉଥିଲେ, ମାତ୍ର ଏବେ କନ୍ୟାପକ୍ଷ ବରଯାତ୍ରୀମାନଙ୍କୁ ଶତ୍ରୁ ମନେ କରି ଘୃଣା ଚକ୍ଷୁରେ ଦେଖିଲେଣି । ଏଣୁ କୌଣସି ଶାନ୍ତ, ଭଦ୍ର, ସରଳ ଲୋକଟିକୁ ଅନୁରୋଧ କଲେ, ସେ ବରଯାତ୍ରୀରେ ଯାଇ ଘୃଣିତ ହେବାକୁ ପସନ୍ଦ କରୁନାହାନ୍ତି । ମାତ୍ର କେତେଜଣଙ୍କ ଯୋଗୁ ସମସ୍ତ ବରଯାତ୍ରୀ ତଥା ବର ଗ୍ରାମ ପ୍ରତି ମଧ ଖରାପ ମନୋଭାବ ସୃଷ୍ଟି ହୋଇଯାଏ । ବରଯାତ୍ରୀଙ୍କ ପାଇଁ ପ୍ରସେସନ୍ ବେଳେ ଅନେକ ଅଶ୍ଳୀଳ ଗୀତ ମଧ ରେକର୍ଡ଼ ହୋଇ ବାହାରିଲାଣି ।

ଦିନେ ବଜାର ମଧରେ ଗୋଟିଏ ବିଭାଘର ପ୍ରସେସନ୍ ଯାଉଥିଲା । ସବୁଆଡ଼େ ସେ ବିଷୟରେ ଚର୍ଚ୍ଚା । ବହୁତ ଲୋକ ଦେଖଣାହାରୀ ତାହା ଉପଭୋଗ କଲେ । ବାଣ ରୋଷଣି ନୁହେଁ, କେତେକ ନାରୀ ବରଯାତ୍ରୀ ବା ବରଯାତ୍ରିୟାଣୀ ସେ ଦଳରେ ଥିଲେ । କେବଳ ନାରୀ ପାଇଁ ନୁହେଁ ସେମାନେ ମଧ ବାଜାର ତାଳେତାଳେ ଉଚ୍ଛୃଙ୍ଖଳ ହୋଇ ନାଚୁଥିଲେ । ପିଆପିଇ କରିଥିଲେ କି ନାହିଁ ଜଣା ପଡ଼ି ନଥିଲା ଅବଶ୍ୟ– ମାତ୍ର ନାଚରେ ମାତାଲ ଥିଲେ । ଆଜିକାଲିକାର ଖରାବେଳିଆ ଟି.ଭି.ରେ ନାଚ ଭଳି ବି ସେମାନେ ନାଚୁଥିଲେ । ବୟସ୍କ ତରୁଣୀଗଣଙ୍କର ଏପରି ରାଜରାସ୍ତା ମଝିରେ ବରଯାତ୍ରୀଆ, ବେହିଆ ନାଚ ! ଛି ! କ'ଣ ଶିଖିବ ଏ ସମାଜ ? କ'ଣ ଶିଖିବେ ସେମାନଙ୍କର ଭାବି ଓ ବର୍ତ୍ତମାନର ସନ୍ତାନଗଣ ? ସେଦିନ ମୋର ଗୋଟିଏ ଝିଆରୀ ବିଭାଘରଟିରେ ବ୍ୟସ୍ତ ଥାଏ । ରାତ୍ରୀ ଅନେକ ହେଲାଣି, ବରପକ୍ଷ ପହଞ୍ଚି ନଥାନ୍ତି । ବହୁ ବିଳମ୍ୱରେ ଯା'ହେଉ ସେମାନେ ପହଞ୍ଚି ବାଣ ଫୁଟାଇବା ଆରମ୍ଭ କଲେ ଓ ପ୍ରସେସନ୍ ଆରମ୍ଭ କଲେ । ରାତ୍ରୀ ବେଶୀ ହୋଇ ଯାଇଥିବାରୁ ଖାଦ୍ୟଦ୍ରବ୍ୟ ଥଣ୍ଡା ହୋଇ ଖରାପ ହୋଇଯିବା ଭୟ ଥାଏ ଏବଂ ବିଭାଘର ଶୁଭ ମୁହୂର୍ତ୍ତ ଗଡ଼ିଯାଉଥିବାରୁ, ମୁଁ ମୋର ଗୋଟିଏ ସାଙ୍ଗକୁ ଧରି ପ୍ରସେସନ୍ ଆଡ଼େ ଚାଲିଲି । ପ୍ରସେସନ୍‌ର ପୂର୍ବ ନିର୍ଦ୍ଧାରିତ ରାସ୍ତା କମାଇ ଚଞ୍ଚଳ ପହଞ୍ଚାଇବା ମୋର ଉଦ୍ଦେଶ୍ୟ ଥାଏ । ଯାଇ ଦେଖିଲା ବେଳକୁ ପ୍ରସେସନ୍‌ରେ ପ୍ରାୟ ଅଧେ ଝିଅ ଆସିଛନ୍ତି । କାଳେ ବାଟରେ ଗଣ୍ଡଗୋଳ ହେବ - ନାଚଯୋଗୁଁ ହେଉ -ମଦ ଯୋଗୁ ହେଉ - ବାଣ ଯୋଗୁ ହେଉ କିମ୍ବା ବାଟ ଓଗାଳ ଯୋଗୁ ହେଉ, ଏଥିପାଇଁ ଆମେ ଯାଇ ବରପକ୍ଷ କର୍ମକର୍ତ୍ତାମାନଙ୍କ ସହିତ ପରାମର୍ଶ କରି ଝିଅମାନଙ୍କୁ ଏକ ସର୍ଟ୍‌କଟ୍ ରାସ୍ତାରେ ନେଇ ଆସିବା ପାଇଁ ସେମାନଙ୍କୁ କହିଲୁ ମାତ୍ର ଆଶ୍ଚର୍ଯ୍ୟ ସମସ୍ତ ଝିଅ ଏକ ସ୍ୱରରେ ମନା କଲେ ଏବଂ ପ୍ରସେସନ୍‌ରେ ନାଚିବା ଆରମ୍ଭ କରିଦେଲେ । ପୁଣି ସେଇ ଶସ୍ତା ଅଶ୍ଳୀଳ ଗୀତ ଉଦ୍ଦଣ୍ଡ ନାଚ । ସେମାନେ ଘରଠାରେ ପହଞ୍ଚିବା ପୂର୍ବରୁ ଆମେ ଆସି ଆମର ସମସ୍ତ ପରିବେଷଣକାରୀ ଯୁବକ ଓ ସହଯୋଗୀମାନଙ୍କୁ ସତର୍କ କରାଇ ସାରିଥିଲୁ । କାରଣ ଝିଅ ବରଯାତ୍ରୀଙ୍କୁ ଯେପରି କିଛି ଅଶାଳୀନ ମନ୍ତବ୍ୟ କେହି ନଦିଅନ୍ତି । ଏପରିକି ସବୁ ଯୁବ ପରିବେଷଣ କାରୀଙ୍କୁ ଯଥାସମ୍ଭବ ବଦଳାଇ ବୟସ୍କ ଓ ଆମପକ୍ଷର ଝିଅମାନଙ୍କୁ ଦାୟିତ୍ୱ ଦେଇ ସାରିଥିଲୁ । ବର ପହଞ୍ଚିଲା, ପୁରୁଷ ବରଯାତ୍ରୀମାନେ ଆସି ଥଣ୍ଡା ପିଇ ଖାଇବାକୁ ବସିଲେଣି, ମାତ୍ର ନାରୀ ବରଯାତ୍ରୀମାନେ କୁଆଡ଼େ ଗଲେ ? ଦେଖିଲାବେଳକୁ ସେମାନେ ବର ବସିବା ଜାଗାଟିକୁ ଅକ୍ତିଆର କରି ନେଇ ବର ସହିତ ବିଭିନ୍ନ ଭଙ୍ଗୀରେ ଫଟୋ ଉଠାଇବାରେ ବ୍ୟସ୍ତ । ଶେଷରେ ଚାଲିଲେ କନ୍ୟା ପାଖକୁ । ବିଭିନ୍ନ ଉତ୍ତେଜକ ମନ୍ତବ୍ୟ ଦେଇ କନ୍ୟାକୁ ଏପଟ ସେପଟ କରି ସେପରି ଫଟୋ ଉଠାଇବା ଆରମ୍ଭ କଲାବେଳକୁ, ଆମ

ପକ୍ଷର ମହିଳାମାନଙ୍କ ପକ୍ଷରୁ ଦୃଢ଼ପ୍ରତିବାଦ ହେଲା, ମାତ୍ର ତାହା ଗଣ୍ଡଗୋଳ ଆଡ଼କୁ ଯିବାପୂର୍ବରୁ ତାଙ୍କ ପକ୍ଷର ଲୋକଙ୍କ ଦ୍ୱାରା ସେମାନଙ୍କୁ ଭୋଜିଖାଇବାକୁ ଡାକିନେଲୁ । ସେତେବେଳକୁ ପୁରୁଷ ବରଯାତ୍ରୀମାନେ ଖାଇ ଉଠିଲେଣି । ଏମାନଙ୍କୁ ବସାଇ ସାରି ପରଷିବାକୁ ଗଲାବେଳକୁ ହଠାତ୍ ତାଙ୍କ ଭିତରେ କେତେ ଜଣ ଗର୍ଜି ଉଠିଲେ -ଆମକୁ ଆଗେ ଡ୍ରିଙ୍କ୍ ଦିଅ ଡ୍ରିଙ୍କ୍ । ଡ୍ରିଙ୍କ୍ ପରେ ଖାଇବାଟା ଜମିବ । ସଙ୍ଗେ ସେଙ୍ଗ ସେମାନଙ୍କୁ ସର୍ବତ ଗ୍ଲାସ ଦିଆ ଗଲା । ମାତ୍ର ସେମାନେ ତାହା ଫୋପାଡ଼ି ଦେଇ କହିଲେ ବୋତଲ କାହିଁ ? ବୋତଲ ମଜା ଗ୍ଲାସରେ ନାହିଁ । ଆମ ପକ୍ଷରୁ ଜଣେ ବୟସ୍କ ଲୋକ ହାତରେ ଥଣ୍ଡା ବୋତଲ ନେଇ ସେମାନଙ୍କୁ ଦେବାରୁ ସେମାନେ କହିଲେ-କ'ଣ ମଉସା ଗାଁରୁ ଆସିଛ କି? ଥଣ୍ଡାକା ମତଲବ୍ କ'ଣ ଜାଣିନ ? ଏପରି ଅଶ୍ଳୀଳ ବାକ୍ୟ ସଂଳାପରେ ଆମପକ୍ଷର ଲୋକେ ପ୍ରାୟ ଚିଡ଼ି ସାରିଲେଣି, ତଥାପି ଧୈର୍ଯ୍ୟ ଧରିବା ! କାହିଁକିନା; ଆମେ ପାପୀଗଣ ଝିଅ ଜନ୍ମ କରିଛେ । ଏଇ ଝିଅମାନେ ଯେତେବେଳେ ବିଭା ହେବେ, ତାଙ୍କ ଘରଲୋକ ମଧ୍ୟ ଆମରି ପରି ହେବେ । ଝିଅମାନେ ଡାକ ପକାଉଥାନ୍ତି - ମାଲୋ ! ମହୁମାନେ କୁଆଡ଼େ ଗଲେ ? ମାନେ ଆମ ପକ୍ଷର ଯୁବ ପରିବେଷଣକାରୀମାନେ । ହଠାତ୍ ଗଣ୍ଡଗୋଳ ଆରମ୍ଭ ହୋଇଗଲା, ଯେତେବେଳେ ଆମିଷ ଦେଲାବେଳକୁ ଆମ ପକ୍ଷର ଗୋଟିଏ ପରିବେଷଣ କରୁଥିବା ଗୋଟିଏ ଝିଅକୁ ସେମାନେ କେତେଜଣ କହିଲେ - ହେ ସାଙ୍ଗ, କ'ଣ ଉଡ଼ନ୍ତା କି ବୁଡ଼ନ୍ତା ? ଏଥିରେ ଆମ ଝିଅଟି ହଠାତ ରାଗି ତା' ଉପରକୁ ମାଛ ଦୁଇପିସ୍ ଫୋପାଡ଼ି ଦେଲା । ଆମେ ଦେଖିଲୁ ଉଭୟଙ୍କର ଠିକ୍ ଓ ଉଭୟଙ୍କର ଭୁଲ । ଉଡ଼ନ୍ତା ମାନେ କୁକୁଡା ମାଂସ ଓ ବୁଡ଼ନ୍ତା ମାନେ ମାଛ । କହିବା ଓ ବୁଝିବାର ଶୈଳୀରେ ଯାହା ଫରକ୍ ! ସମସ୍ତଙ୍କୁ ବୁଝାଇ ବସି ଖୁଆଇଲୁ । ମାତ୍ର କୌଣସି ଝିଅ ଆମ ପକ୍ଷରୁ ପରିବେଷଣ କରିବାକୁ ରାଜି ନହେବାରୁ, ପୁଅ କେତେ ଜଣଙ୍କୁ ଛାଡ଼ିଲୁ ଓ ଜଗିରହିଲୁ । ଖାଇ ସାରିବାପରେ ଜଣେ ନାରୀ ବରଯାତ୍ରୀ କହୁଛି - ହେ ଭାଇ, ତମର କୁଣ୍ଡାଇବା ଜିନିଷ ମାନେ ପାମ୍ପଡ଼ ନାହିଁ କି ଦେବାକୁ । ହସ ଲାଗିଲା - ପାମ୍ପଡ଼ ଦିଆଗଲା । ଖିରୀଖାଇବା ପାଇଁ ଦନା ଦିଆଗଲା । ଏଥିରେ ପୁଣି ମନ୍ତବ୍ୟ - ହେ ଭାଇ ଆମ ଦନାରେ ଚଞ୍ଚଳ ଉଷୁମ ଉଷୁମ ଢ଼ାଳିଦିଅ । ଆମ ପେଟ ପୂରିଯାଉ - ସିରା ନିଗାଡ଼ିକି ରସଗୋଲା ଦିଅ, ମନ ବୋଧ ହୋଇଯାଉ । ଆଉ ସମ୍ଭାଳି ପାରିଲେନି ବୋଧେ ହଠାତ୍ ବରପକ୍ଷର କେତେକ ମୁରବୀ ଶ୍ରେଣୀୟ ଲୋକ ପଶି ଆସିଲେ । ସମସ୍ତଙ୍କୁ ମନଇଛା ଗାଳିକଲେ, ଆମକୁ କ୍ଷମା ମାଗିଲେ; ମାତ୍ର ଆମର କାନରେ ଯେସବୁ କିଛି ଶୁଭୁ ନଥାଏ । ସମସ୍ତେ ଉଠି ହାତ ଧୋଇଲେ । ତାଙ୍କ ଭିତରୁ ୨/୩ଜଣ ଝିଅ ହଠାତ୍ ମୋ ଆଗକୁ ଆସି ନମସ୍କାର ହେଲେ । ଆମ କଲେଜରେ ଶେଷବର୍ଷର ଛାତ୍ରୀ । କିଛି କହି ପାରିଲି ନାହିଁ; ଖାଲି ତାଙ୍କୁ ପଚାରିଲି - ତୁମେ ବରଯାତ୍ରୀରେ ଆସିବାକୁ ତୁମର ବାପା ବୋଉ ଜାଣିଛନ୍ତି କି ଓ ଅନୁମତି ଦେଇଛନ୍ତି କି ? ଛୋଟ ଉତ୍ତରଟିଏ, ଧୀରେ ସେମାନେ ଦେଲେ - ସାର୍ ! ଭୁଲ ହୋଇଗଲା ।

ଆଜି ଚାରିଆଡ଼େ ନାରୀ ସଶକ୍ତିକରଣ ପାଇଁ ବିଭିନ୍ନ ଯୋଜନାମାନ ଗ୍ରହଣ କରାଯାଉଥିଲା ବେଳେ ମନରେ ସ୍ୱତଃ ପ୍ରଶ୍ନ ଉଠେ-ନାରୀ କ'ଣ ପ୍ରକୃତରେ ଅବଳା ଦୁର୍ବଳା ? ଆଜି ନାରୀ ଅତ୍ୟାଚାରୀତା ନା ଅତ୍ୟାଚାରୀ ? ଭ୍ରଷ୍ଟାଚାରର ଯବାବ୍ କ'ଣ ଭ୍ରଷ୍ଟାଚାର ? ସନ୍ତ୍ରାସବାଦର ବିଲୋପ ପାଇଁ କ'ଣ ସନ୍ତ୍ରାସବାଦ ପନ୍ଥା ଗ୍ରହଣ କରିବା ? ଯଦି ଆମକୁ କୁହାଯାଏ ଯୁଗ ବଦଳୁଛି, ସାବଧାନ୍ ଆପଣ ମଧ୍ୟ ବଦଳନ୍ତୁ । ହଁ, କିଛି କଥା ନାହିଁ-ଯଦି ବଦଳିବ, ତେବେ ଦୁଇଟାକଥା ହେବ- ନ କାରାନ୍ତ ରୂପରେଖାନେଇ ନିମ୍ନଗାମୀ ହେବା- ନଚେତ୍ ସକାରାନ୍ତ ରୂପନେଇ କିଛି ପରିବର୍ତ୍ତନ ଆଣି ପାରିବା । ଧନ୍ୟରେ ଏ ସମାଜ; ଧନ୍ୟ ଏହାର ବିବର୍ତ୍ତନବାଦ !

ପ୍ରିୟ ପାଠକଗଣ ! କିପରି ଲାଗିଲା - ଭଲ କି ଖରାପ ? ନିଶ୍ଚୟ ଜଣାଇବେ— ଅପେକ୍ଷାରେ ରହିଲି, ଆରଥରକ 'କଙ୍କଡ଼ା ବିଛୁଆ ଲୋଭ' ପଢ଼ି 'ସତ'କି 'ମିଛ' ପଚାରି ଥିଲେ ! ଉପର ଘଟଣା କିନ୍ତୁ-ଶତ ପ୍ରତିଶତ ସତ ।



# କ୍ଷମା କରିବେ

ଲଗ୍ନମୟୀ ମହାପାତ୍ର
+୩ ଦ୍ୱିତୀୟ ବର୍ଷ, ବିଜ୍ଞାନ (ରସାୟନ ବିଜ୍ଞାନ ସମ୍ମାନ)

ଆଜ୍ଞା ନମସ୍କାର । ଆଜ୍ଞା କ୍ଷମା କରିବେ । ବନ୍ଧୁଗଣ, ଏହି ଶବ୍ଦଟିକୁ ଅନେକ ବ୍ୟକ୍ତି ଅଧିକାଂଶ ସମୟରେ ବ୍ୟବହାର କରିଥାନ୍ତି । ପ୍ରକୃତରେ ଏହି ଶବ୍ଦଟିକୁ କୌଣସି ଭୂଲ ହୋଇଥିବା ସ୍ଥାନରେ ବ୍ୟବହାର୍ଯ୍ୟ; କିନ୍ତୁ ଅନେକ ସମୟରେ ଯେକୌଣସି ଭୂଲ ଥାଉ ବା ନଥାଉ, ଏହାର ପ୍ରୟୋଗ କରିବାକୁ ଆଧୁନିକ ମନୁଷ୍ୟସମାଜ ପଛାନ୍ତି ନାହିଁ । ସେହି କ୍ଷମା କରିଥିବା ବ୍ୟକ୍ତିକୁ କିଏ କ୍ଷମା କରନ୍ତୁ ନ କରନ୍ତୁ, ସେ ନିଜକୁ ନିଜେ କ୍ଷମା କରିଦିଅନ୍ତି । ମୋର ଜୀବନରେ ମୁଁ ମଧ୍ୟ ବହୁ ସମୟରେ କ୍ଷମାର ସମ୍ମୁଖୀନ ହୋଇଅଛି ଏବଂ ଏହାର ପ୍ରୟୋଗ କରିଛି ମଧ୍ୟ ।

ଆମ ଘରୁ କଲେଜଟା ପ୍ରାୟ ୧୦କି.ମି. ଦୂର, ତେଣୁ ମୁଁ ସବୁଦିନ ଘରୁ ଯିବା ଆସିବା କରେ । ସେ ଦିନ ସୋମବାର ଥାଏ । ଠିକ୍ ୧୨ଟାରେ ମୋର ପ୍ରାକ୍ଟିକାଲ କ୍ଲାସ ଥିଲା । ତେଣୁ ତା' ଆଗରୁ ମୁଁ ଘରୁ ବାହାରି ଆସିଥିଲି । Bus Stand ରେ କିଛି ସମୟ ମୋତେ ଅପେକ୍ଷା କରିବାକୁ ପଡ଼ିଲା । କିଛି ସମୟ ପରେ ଆଜ୍ଞା ବସ୍‌ଟି ଆସିଲା; ସତ କହିବାକୁ ଗଲେ ସେହି ବସ୍‌ଟି ଏତେ ଭିଡ଼ଯେ, ଶୋରିଷ ପକାଇବାକୁ ମଧ୍ୟ ଯାଗା ନଥାଏ । ତଥାପି କେତେକ ଲୋକ ଠେଲାପେଲା ହୋଇ ଚଢ଼ିବାରେ ଲାଗି ପଡ଼ିଛନ୍ତି । ଠିକ୍ ବସକୁ ଉଠିବା ସମୟରେ ଅନୁଭବ କଲି ମୋ ଉପରେ କିଛି ପାଣି ପରି ଜିନିଷ ପଡ଼ିଲା । ଭଲକରି ମୋ ଡ୍ରେସକୁ ଚାହିଁଲା ପରେ ଦେଖିଲି ଡ୍ରେସଟା ସାରା ପାନ ଛେପରେ ଜୁଡୁବୁଡୁ । ସଙ୍ଗେ ସଙ୍ଗେ ଉପରଆଡ଼େ ଚାହିଁଲି । ଦେଖିଲି ଜଣେ ଭଦ୍ରଲୋକ ପାନଖିଲେ ପାଟିରେ ଜାକି ଦାନ୍ତ ଦି'ଟା ନେଫେଡାଇ ମୋ ଆଡ଼େ ଜୁଳୁଜୁଳୁ ଚାହିଁଛନ୍ତି । ମୋ ରାଗ ଏକାଥରକେ ପଞ୍ଚମକୁ ଉଠିଗଲା । ମୁଁ ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଚାଲିଲି; ତା' ପରେ ସେ ତାଙ୍କ ସିଟ୍‌ରୁ ଉଠି କାକୁତି ମିନତି ହୋଇ କହିଉଠିଲେ, କ୍ଷମା କରିବେ, ଭୁଲ ବଶତଃ ଆପଣଙ୍କ ଉପରେ ପଡ଼ିଗଲା । ମୁଁ ଆଉ କରିବି କ'ଣ ? ଏଣେ ବସ୍‌ର ଅନ୍ୟମାନଙ୍କ ଦୃଷ୍ଟି ମୋ ଆଡ଼େ । ଏଣୁ ଯଥାଶିଘ୍ର ଚୁପ୍ ରହିଗଲି । ପାଖରେ ଥିବା ରୁମାଲରେ ଡ୍ରେସକୁ ପୋଛିବାରେ ଲାଗିଲି, ତା'ପରେ ସେହି ଭଦ୍ରବ୍ୟକ୍ତି ଜଣକ ତାଙ୍କ Reservation seat ରୁ ମୋତେ ଗୋଟିଏ ଛାଡ଼ିଦେଲେ, ମୁଁ ବସ୍‌ର ଚାରିଆଡ଼େ ଅନାଇ ଦେଖେତ କିଏ ବସ୍‌ର ଉପର ଲୁହାଟିକୁ ଧରି ମାଙ୍କଡ଼ ପରି ଓହଳିଛି ତ, କିଏ ଛେଳି ମେଣ୍ଢା ପରି ତଳେ ବସିଲାଣି । ସେ ଯାହାହେଉ ପଛେ ଡ୍ରେସଟା ଖରାପ ହୋଇଗଲା ସିନା; କିଛି ବାଟ ଅନ୍ତତଃ ଶାନ୍ତିରେ ବସିବାକୁ ମିଳିଲା । ମନେ ମନେ ଏହି କଥା ଭାବି ଚୁପ୍ ରହିଲି ।

ବସ୍ ଛାଡ଼ିବା ସମୟରେ ଆଉ ଜଣେ ମହିଳା ବସ୍ ଉପରକୁ ଉଠିଆସିଲେ । ତାଙ୍କର ବେଶଭୂଷାରୁ ଜଣା ପଡୁଥାଏ ସେ ଜଣେ କଲେଜ ଛାତ୍ରୀ । ଛାତ୍ରୀ ଜଣକ ଚାରିପାର୍ଶ୍ୱର ପରିସ୍ଥିତିକୁ ଲକ୍ଷ୍ୟକରି ମୋ ନିକଟକୁ ଆସି କହିଲେ, କ୍ଷମା କରିବେ ଯଦି କିଛି ଆପତ୍ତି ନଥାଏ, ତେବେ ମୋତେ ଆପଣଙ୍କ Sheat ରେ ଟିକେ Adjust..., ଅଚିହ୍ନା ସତ୍ତ୍ୱେ ମୁଁ ମୋ Seat ରେ ତାଙ୍କୁ Adjust କରାଇଲି । କିଛି ସମୟ ପରେ କଣ୍ଡକ୍ଟର Busfare ନେବାକୁ ଆସିଲା । ମୁଁ ପର୍ସରୁ ୫ ଟଙ୍କିଆ ମୁଦ୍ରାଟେ କାଢ଼ି ବଢ଼ାଇଲି, ସେହି ସମୟରେ ଛାତ୍ରୀ ଜଣକ କହିଉଠିଲେ କ୍ଷମା କରିବେ ମୋ ପାଖରେ ଖୁଚୁରା ଟଙ୍କା ନାହିଁ, ୧୦୦ ଟଙ୍କାଟେ ଅଛି, ଯଦି ଆପଣ...ମୁଁ ତାଙ୍କ ମନକଥା ବୁଝିପାରି କହିଲି, ଠିକ୍ ଅଛି ଅନ୍ୟକେତେବେଳେ ସାକ୍ଷାତ ହେଲେ ଫେରାଇ ଦେବେନି ?

କିଛି ସମୟ ପରେ ମୁଁ ମୋ ବ୍ୟାଗ ଭିତରୁ 'ସାପ୍ତାହିକ'ଟିକୁ ବାହାର କଲି । ସେହି ସମୟରେ ଛାତ୍ରୀ

ଜଣକର ଦୃଷ୍ଟି ମୋ ବହିଆଡ଼େ ପଡ଼ିଗଲା, ସେ ଆଉ ସମ୍ଭାଳନ୍ତି କେଉଁଠି ? ସଂଗେ ସଂଗେ କହିଉଠିଲେ 'କ୍ଷମାକରିବେ' ସେହି ବହିଟି ଟିକେ ଦେବେକି ? ମୁଁ ବହିଟିକୁ ଦେଇଦେଲି । ଆଜ୍ଞା କ'ଣ କହିବି । କିଛି ସମୟ ପରେ ବସ୍‌ଟି ଅଟକି ଗଲା ଗୋଟିଏ Stopage ରେ । ଛାତ୍ରୀଜଣକ ମୋ ବହିଟିକୁ ଧରି ବସ୍‌ରୁ ଓହ୍ଲାଇ ପଡ଼ିଲେ । ମୁଁ ଏସବୁ ଦେଖୁଥାଏ ସିନା; କିନ୍ତୁ ବହିଟି ମାଗିବା ବେଳକୁ ମୋ କଣ୍ଠ ବାଷ୍ପରୁଦ୍ଧ ହୋଇଯାଉଥାଏ । ତା'ପରେ ବସ୍‌ଟି ଛାଡ଼ି ଦେଲା କିନ୍ତୁ ସେତେବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ଗଲାଣି । ଭାରି ମନ ଦୁଃଖ ଲାଗିଲା ଆଜ୍ଞା ।

ପୁଣି ସେହି Stopage ରେ ଚଢ଼ିଥିଲେ ଜଣେ ଭଦ୍ର ମହିଳା । ତାଙ୍କର ଗୋଟିଏ ହାତରେ ବଡ଼ ଆଟାଜ ଟାଏ ଏବଂ ଅନ୍ୟ ହାତରେ ଗୋଟିଏ ଦେଢ଼ ବର୍ଷର ଶିଶୁ । ମୁହଁରୁ ଜଣାପଡୁଥାଏ, ସେ ଜଣେ ଆଭିଜାତ୍ୟ ପରିବାରର ବୋହୂ, ସେ ଆସି ମୋ ପାଖରେ ଠିଆହୋଇଥାନ୍ତି, କିଛି ସମୟ ପରେ ମୋ ଗୋଡ଼ ତଳେ ତାଙ୍କର ଆଟାଜ ଟିକୁ ଆଣି ରଖିଦେଲେ, ତା'ପରେ ଆଜ୍ଞା ଶିଶୁଟି ହସି ହସି ଆସି ମୋ ଗୋଡ଼ ଉପରେ ଆସ୍ଥାନ ଜମାଇ ଦେଲା । କ'ଣ କହିବି ବନ୍ଧୁଗଣ । ଆକାଗା ଘା ଦେଖି ହୁଏ ନାହିଁ କି, ଦେଖାଇ ହୁଏ ନାହିଁ । ସେ ପିଲାଟି ମୋ ଉପରେ ୫ ମିନିଟ୍ ବସିଛି କି ନାହିଁ; ଏକଟାଏ କରିପକାଇଲା । ତା'ପରେ...... । ତା'ପରେ ଆଉ ହେବ କ'ଣ । ମୁଁ ରାଗିକରି ତାଙ୍କୁ ସିଧା ଭଦ୍ର ମହିଳାଙ୍କ ନିକଟରେ ଛାଡ଼ିଦେଲି । ଭଦ୍ର ମହିଳା ଏହା ଦେଖି କହିଲେ 'କ୍ଷମା କରିବେ' ପିଲାଟି ଭାରି ବଦମାସ । ମନଭିତରେ ମୋର ପ୍ରବଳ ରାଗ; କିନ୍ତୁ ଉପରେ କହି ଉଠିଲି, ନା Madam ପିଲାଟାର ବା ଦୋଷ କ'ଣ । ପାଞ୍ଚମିନିଟ ପରେ ମୋ ଓହ୍ଲାଇବା ସ୍ଥାନ ପଛେ ପଛେ ସେହି ଭଦ୍ର ମହିଳା ଜଣକ ଓହ୍ଲାଉଥାଆନ୍ତି । ମୁଁ ସିଆଡ଼େ ନଜର ନଦେଇ ସିଧା ମୁହାଁଇଲି କଲେଜ ଆଡ଼େ । କିନ୍ତୁ ଦୁର୍ଭାଗ୍ୟ ବଶତଃ ସେଠାରେ କୌଣସି ରିକ୍‌ସାବାଲା ନଥାନ୍ତି । ତେଣୁ ପଛରୁ ଭଦ୍ର ମହିଳା ଜଣକ ଡାକି କହିଲେ, କ୍ଷମା କରିବେ ଆଉ ଅଳ୍ପ ବାଟ ଗଲାପରେ ରିକ୍‌ସା ମିଳିବ, ତେଣୁ ଆପଣ ଯଦି ମୋତେ ଟିକିଏ ସାହାଯ୍ୟ...... । ମୁଁ ଉପକୃତ ହୁଅନ୍ତି ।

ମୁଁ ବାକ୍ୟବ୍ୟୟ ନ କରି ସିଧା ଆଟାଜଟିକୁ ଧରି ତାଙ୍କ ପଛେ ପଛେ ଚାଲିଲି । ବାଟଯାକ ଭାବୁଥାଏ, ହେ ଭଗବାନ, ମୋତେ ଶେଷରେ କୁଲିକାମ ମଧ୍ୟ କରିବାକୁ ପଡ଼ିଲା । ତା' ପରେ ମନକୁ ମନ ବୁଝାଇଲି ଶାସ୍ତ୍ରରେ କୁହାଯାଇଛି ତ, "ମାନବ ସେବା ହିଁ ଈଶ୍ୱର ସେବା" ତେଣୁ ଚଳିବ; ନ ଚଳିଲେ ବି ଚଳେଇଦେବା, ବାଟରେ ରିକ୍‌ସାଟିଏ ଠିକ୍ କରି ଭଦ୍ରମହିଳାଙ୍କୁ ଛାଡ଼ି ଦେଲି ।

ସେତେବେଳକୁ ୧୨ଟା ବାଜି ସାରିଲାଣି । ଯାହାହେଉ ବନ୍ଧୁଗଣ ! ଭଗବାନଙ୍କ କୃପାରୁ ବାଟରେ ଆଉ 'କ୍ଷମା କରିବେ'ର ସମ୍ମୁଖୀନ ହୋଇନାହିଁ ! ନହେଲେ Practical କ୍ଲାସଟା ଯାଇଥାଆନ୍ତା । Class ରେ ପହଞ୍ଚୁ ପହଞ୍ଚୁ ସାର କହିଲେ ଆରେ ଆଜି କ'ଣ ଡେ଼ରି ହୋଇଗଲା । ହଠାତ୍ ମୋ ପାଟିରୁ ବାହାରି ଆସିଲା "କ୍ଷମା କରିବେ, Sir ଗାଡ଼ିରେ ଆସୁ ଆସୁ ଡେ଼ରି ହୋଇଗଲା ।

ସେ ଦିନର କ୍ଲାସ ସାରି ମୁଁ ଯଥା ଶିଘ୍ର ଚାଲି ଆସୁଥିବା ସମୟରେ କାହାର ଡାକ ଶୁଣି ଅଟକି ଗଲି । ବୁଲିପଡ଼ି ଚାହିଁ ଦେଖିଲି ସେ ଜଣେ +3 IIIrd year ଛାତ୍ରୀ; ସେ ପାଖକୁ ଆସି କହିଲେ : କ୍ଷମା କରିବେ, ମୁଁ କୁମାରୀ..... ଆସନ୍ତା ମହାବିଦ୍ୟାଳୟ ନିର୍ବାଚନରେ ସଭାପତି ପଦପାଇଁ Contest କରୁଛି । ଏଣୁ ମୋତେ ଦୟାକରି ଆପଣଙ୍କର ମୂଲ୍ୟବାନ ଭୋଟଟି ଦେଲେ ମୁଁ ଚିରୋପକୃତ ଲାଭ କରିବି ।

ମୁଁ ଦୀର୍ଘ ନିଶ୍ୱାସଟିଏ ପକାଇ ଭାବି ଦେଖିଲି ଏହି 'କ୍ଷମା କରିବେ' ଶବ୍ଦର ଅର୍ଥଟିକୁ । ମୁଁ ସେତେବେଳେ କଲେଜର 'Notice Board' ପାଖରେ ପହଁଞ୍ଚି ସାରିଥିଲି, 'Notice Board' ରେ ଆଖିବୁଲାଉ ବୁଲାଉ ସେ ଦିନର ଗୋଟିଏ Notice ଉପରେ ମୋର ନଜର ପଡ଼ିଗଲା, ସେଇଟି ଥିଲା କଲେଜ ମାଗାଜିନ ମନଜ୍ୟୋତ୍ସ୍ନା ପାଇଁ 'Article' ଦେବାକୁ, ସେଇଠି ମୁଁ ଠିକ୍ କରିଦେଲି ଯେ 'କ୍ଷମା କରିବେ' ଉପରେ ଅନୁଭୂତି-ମୂଳକ ଗପଟିଏ ଲେଖିବି ଏବଂ ଲେଖିଦେଲି ମଧ୍ୟ । ଆଜ୍ଞା ପରିଶେଷରେ କହି ରଖୁଛି, ଆପଣ ମଧ୍ୟ ମୋତେ କ୍ଷମା କରିବେ ; ଯଦି ମୋର ଲେଖାରେ ଦୋଷ ତ୍ରୁଟି କିଛି ଥାଏ !



# ବୁଲ୍‌ବୁଲ୍

କୁମାରୀ ନିର୍ମଳା ରାଉତ
+ ୩ ପ୍ରଥମ ବର୍ଷ କଳା (ଅର୍ଥନୀତି ସମ୍ମାନ)

କେଉଁ ଆଦିମ କାଳରୁ ଝରଣାଟି ପାହାଡ଼ର କୋଳରେ ବିନା ଦ୍ୱିଧାରେ ତା'ର ଗତିପଥରେ ବହିଚାଲିଛି ତା'ର ହିସାବ ନାହିଁ ଏଂବ ତା'ର ଚାରିପଟରେ ବୃକ୍ଷଲତା ଏବଂ ପକ୍ଷୀମାନଙ୍କର ତାନ ସେହି ଝରଣାବେଷ୍ଟିତ ସ୍ଥାନଟିକୁ ଆହୁରି ଶତ ମୁଖରିତ କରୁଛି । ସେହି ଝରଣାର ଅଙ୍କାବଙ୍କା ପଥ କଡ଼ରେ ଗୋଟେ ଥୁଣ୍ଟା ଗଛ ଦଣ୍ଡାୟମାନରହି ତା' ସହିତ ଜଡ଼ିତ ଅତୀତକୁ ରୋମନ୍ଥନ କରୁଛି । ସେହି ଅତୀତର ମୂକସାକ୍ଷୀରେ ସ୍ଥାନ ପଚାରୁଛି ଦୁଇଟି ପକ୍ଷୀ । ଜଣେ ହେଉଛି ବୁଲ୍‌ବୁଲ୍ ପକ୍ଷୀ, ଯାହାର କାମ ହେଉଛି ଉଡ଼ିବୁଲିବା ଓ ଅନ୍ୟଜଣେ ହେଉଛି କୃଷ୍ଣସାର ।

କୃଷ୍ଣସାରର କାମ ହେଲା ଧରାପୃଷ୍ଠରେ ବିଚରଣ କରି ତା'ର ଜିବୀକା ନିର୍ବାହ କରିବା । ସେ ଅନ୍ୟ ପକ୍ଷୀମାନଙ୍କ ସହ ମିଶି ବହୁତ ଖୁସି ଥିଲା । ତା'ର ଏହି ସୁଖର ପରିମାଣ ଦ୍ୱିଗୁଣିତ ହେଲା ଯେତେବେଳେ ତା'ର ବୁଲ୍‌ବୁଲ୍ ପକ୍ଷୀ ସହ ସାକ୍ଷାତ ହେଲା । ବୁଲ୍‌ବୁଲ୍ ପକ୍ଷୀର କାମ ହେଲା ମୁକ୍ତ ଆକାଶରେ ଉଡ଼ିବୁଲିବା । ମାତ୍ର କୌଣସି କାରଣରୁ ଆଘାତ ପାଇ ଧରାପୃଷ୍ଠରେ ସେହି ଝରଣା ପରିବେଷ୍ଟିତ ସ୍ଥାନରେ ଆସି ପଡ଼ିଥିଲା । ଏବଂ କୃଷ୍ଣସାର ପକ୍ଷୀର ସେବା ଶୁଶ୍ରୁଷାରେ ସେ ସୁସ୍ଥ ହୋଇ ଉଠିଲା । ମାତ୍ର ତା'ପର ଠାରୁ ବୁଲ୍‌ବୁଲ୍ ଆଉ ତା'ର ରାଜ୍ୟକୁ ଯିବାକୁ ଇଚ୍ଛା କରିନାହିଁ । କାରଣ କୃଷ୍ଣସାର ପକ୍ଷୀ ତାକୁ ନିଜର ପ୍ରେମ ବନ୍ଧନରେ ବାନ୍ଧିସାରିଥିଲା । ଦିନକୁ ଦିନ ସେ ଦୁଇଜଣଙ୍କର ସ୍ନେହ ଅଧିକରୁ ଅଧିକତର ହେଉଥିଲା, ଏପରିକି ଜଣେ ଜଣକୁ ନଦେଖିଲେ ବଞ୍ଚିପାରନ୍ତିନି । ଏକାଠି ବସନ୍ତି, ଖାଆନ୍ତି ଓ ବହୁତ ମଜ୍ଜା କଥା ହୁଅନ୍ତି । ଏପରିକି ଜଣେ ରାଗ ଅଭିମାନ କଲେ ଅନ୍ୟଜଣେ ବହୁତ ମଜ୍ଜା କଥା କହି ତା' ମୁହଁରେ ହସ ଫୁଟାଇ ଥାଏ । କୃଷ୍ଣସାର ସବୁବେଳେ ଖାଦ୍ୟ ସଂଗ୍ରହ କରି ଆଣେ ଏବଂ ଦୁଇଜଣ ମିଶି ମହା-ଆନନ୍ଦରେ ଖାଇଥାନ୍ତି । କୃଷ୍ଣସାରର କୌଣସି କାରଣରୁ ଆସିବାରେ ବିଳମ୍ବ ହେଲେ ବୁଲବୁଲ ପାଗଳପ୍ରାୟ ହୋଇଯାଏ ମାତ୍ର ଦେଖିଲା ପରେ ଥୟ ହୋଇଯାଏ ।

କୃଷ୍ଣସାର ପକ୍ଷୀକୁ କୌଣସି କାରଣରୁ ଅନ୍ୟତ୍ର ସ୍ଥାନକୁ କିଛି ଦିନ ପାଇଁ ଯିବାକୁ ପଡ଼ିଲା । ଯଦିଓ ବୁଲ୍‌ବୁଲ୍ ଯିଏ କି ତା'ର ଅତିପ୍ରିୟ ତାକୁ ଛାଡ଼ି ଯିବାକୁ ମନକରୁ ନଥିଲା । ମାତ୍ର ନିଜ ମନର ସବୁ ଭାବନାକୁ ମନଭିତରେ ଚାପିରଖି ଏବଂ ବହୁତ ଶିଘ୍ର ବୁଲ୍‌ବୁଲ୍ ପାଖକୁ ଫେରି ଆସିବାର ପ୍ରତିଶୃତି ଦେଇଥିଲା ଏବଂ କିଛିଦିନ ପରେ କୃଷ୍ଣସାର ତା'ର ନିଜ ରାଜ୍ୟକୁ ଫେରି ଆସିଛି ଏବଂ ତା'ର ଅତିପ୍ରିୟ ବୁଲବୁଲକୁ ମନଭରି ଦେଖିବାକୁ ଚାହିଁଛି । ମାତ୍ର ଏ କ'ଣ ତା'ର କଥାରେ ସେଭଳି ଆଉ ମଧୁରତା ନାହିଁ । କୃଷ୍ଣସାର କିଛି ବୁଝିପାରିଲାନି ଏବଂ ପଚାରିଲା ବୁଲ୍‌ବୁଲ ତୁମର କ'ଣ ହୋଇଛି ? କିନ୍ତୁ ବୁଲ୍‌ବୁଲ୍‌ର ଉତ୍ତର ଶୁଣି କୃଷ୍ଣସାର ବୁଲ୍‌ବୁଲ୍‌କୁ ନେଇ ଦେଖି ଆସିଥିବା ସ୍ୱପ୍ନ ଛାରଖାର ହୋଇଗଲା । ତାକୁ ଲାଗିଲା ସତେଯେପରି ତା'ର ଗୋଡ଼ ତଳର ମାଟି ଖସି ପଡୁଛି । କାରଣ ବୁଲ୍‌ବୁଲ୍ କୃଷ୍ଣସାର ସହିତ ସମସ୍ତ ସମ୍ପର୍କ କାଟି ତା'ର ନିଜ ଦୁନିଆକୁ ଫେରିଯିବାକୁ କହିଛି । କୃଷ୍ଣସାର ବୁଝିପାରିଲାନି ଏ ତା'ର ଅତିପ୍ରିୟ ବୁଲ୍‌ବୁଲ୍ କହୁଛି ଯିଏ କି କୃଷ୍ଣସାରକୁ ଦିନେ ନଦେଖିଲେ ପାଗଳ ପ୍ରାୟ ହୋଇଯାଏ ଏବଂ ତା'ର ଆସିବା ବାଟକୁ ଚାତକ ଭଳିଆ ଚାହିଁ ରହିଥାଏ ସେହି ବୁଲ୍‌ବୁଲ୍ ଆଜି ଏପରି କହିପାରୁଛି ।

କିନ୍ତୁ ସରଳ ଓ ଅତି ସ୍ନେହୀ କୃଷ୍ଣସାରକୁ ଜଣା ନଥିଲା ଯେ ତା'ର ଅନୁପସ୍ଥିତିରେ ବୁଲ୍‌ବୁଲ୍‌ର ସହଚରୀ ସାଥିମାନେ ଆସି ତାକୁ ନିଜ ରାଜ୍ୟକୁ ଫେରିଯିବାକୁ ପ୍ରବର୍ତ୍ତାଇଛନ୍ତି ଏବଂ ଧିକ୍କାର କରି କହିଛନ୍ତି ଯେ ବୁଲ୍‌ବୁଲ୍ ଏ ଯେଉଁ ଦୁନିଆରେ ତୁ କୃଷ୍ଣସାର ସହ ରହିଛୁ ଏଇଟା ତୋ ଦୁନିଆ ନୁହେଁ । କୃଷ୍ଣସାର ତୋ ପାଇଁ ଯୋଗ୍ୟ ନୁହେଁ । ତୁ ହେଉଛୁ ମୁକ୍ତ ଆକାଶର ଉଡ଼ନ୍ତା ପକ୍ଷୀ । ଏଠାରେ ତୋତେ ବହୁତ କିଛି ମିଳିବ; କିନ୍ତୁ ସେ

କୃଷ୍ଣସାରର ବାହୁବନ୍ଧନରେ ରହି ଯେଉଁ ସ୍ନେହ ଓ ପ୍ରେମ ପାଉଛୁ ସେଥିରେ ସ୍ୱାଧୀନତା ନାହିଁ । ଫେରିଚାଲ ବୁଲ୍‌ବୁଲ୍ ଫେରିଚାଲ ।

କୃଷ୍ଣସାର ବହୁତ ଅନୁରୋଧ କରିଛି ଏବଂ କହିଛି ବୁଲ୍‌ବୁଲ୍ ମୋତେ ଏକଲା ଛାଡ଼ି ଚାଲିଯାଆନି ନଚେତ୍ ମୋ ଉଡ଼ନ୍ତା ଶବର ଶକ୍ତି ହ୍ରାସ ପାଇବ ଏବଂ ସେତେବେଳକୁ ତୁମ ପାଇଁ ବହୁତ ଡେ଼ରି ହୋଇଯାଇଥିବ । ମାତ୍ର ଯାହାମନରେ ରଙ୍ଗୀନ୍ ଦୁନିଆର ମାଦକତା ଏବଂ ନୀଳସ୍ୱପ୍ନ ଭରିଦିଆଯାଇଛି ସିଏ କାହିଁକି ପଛକୁ ଫେରି ତା'ର ଅତିପ୍ରିୟ କୃଷ୍ଣସାରକୁ ଚାହିଁବ ? ତେଣୁ ବୁଲ୍‌ବୁଲ ତା'ର ପ୍ରକୃତ ଦୁନିଆକୁ ଫେରିଯାଇଛି ଏବଂ କୃଷ୍ଣସାର ଗୋଟିଏ ନିର୍ଜୀବ ପାଷାଣ ପରି ତାକୁ ଅନାଇ ରହିଛି । ବୋଧହୁଏ ଭଗବାନଙ୍କୁ ଏହି ଦୁଇଜଣଙ୍କର ଅମୃତ ପ୍ରେମ ମଞ୍ଜୁର ନଥିଲା । ବୋଧହୁଏ ଭଗବାନ ନିଜ ପ୍ରେମୀକା ରାଧାଙ୍କ ସହ ବିଚ୍ଛେଦର ଜ୍ୱାଳାକୁ ଏହି ଦୁଇ ପ୍ରେମୀଯୁଗଳଙ୍କ ଉପରେ ସାଧିଲେ ।

ସିଏ ଯାହାବି ହେଉ ଯେଉଁ ବୁଲ୍‌ବୁଲ୍ ଗୋଟିଏ ଝଡ଼ ପରି ଆସିଥିଲା ସେହି ବୁଲ୍‌ବୁଲ୍ ଆଜି ଝଡ଼ରେ କୁଆଡ଼େ ଉଭାନ ହୋଇଯାଇଛି ।

କିଛି ବର୍ଷ ବିତି ଯାଇଛି । ବୁଲ୍‌ବୁଲ୍‌କୁ ତା'ର ରଙ୍ଗୀନ ଦୁନିଆ ହେୟ ମନେ ହୋଇଛି । କାରଣ ସେଠାରେ ସମସ୍ତେ ନିଜ ନିଜ ବାଟର ପଥିକ । ନା ସେଠାରେ ସ୍ନେହ ଅଛି ନା ଜଣେ ଜଣକୁ ପାଇବାର ସୁଖ ଅଛି ନା ବନ୍ଧନ ଅଛି । ଯେଉଁ ସାଥୀମାନଙ୍କର ପ୍ରରୋଚନାରେ ସେ ନିଜର ଅତି ପ୍ରିୟ କୃଷ୍ଣସାରର ସମସ୍ତ ପ୍ରେମ ବନ୍ଧନକୁ ପଛରେ ପକାଇ ଆସିଥିଲା ସେମାନେ ଆଜି ମୁହଁ ଫେରାଇ ନିଜ ନିଜ ବାଟରେ ଚାଲିଯାଇଛନ୍ତି । ତେଣୁ ବୁଲ୍‌ବୁଲ୍‌ର କୃଷ୍ଣସାର କଥା ମନେପଡ଼ିଛି ଏବଂ କୃଷ୍ଣସାର ସହିତ ବିତାଇଥିବା ସବୁ ମୁହୂର୍ତ୍ତ ଆଜି ତା'ର ମନେ ପଡୁଛି । ଯାହା ଦ୍ୱାରା କି ସେ ନିଜକୁ ବହୁତ ଦୋଷୀମନେ କରିଛି ଏବଂ ପୁଣିଥରେ ଧରାପୃଷ୍ଠକୁ ଫେରି ଆସିଛି ।

କିନ୍ତୁ ଏ କ'ଣ ! ବୁଲ୍‌ବୁଲ୍ ଦେଖୁଛି, ଯେଉଁ ପରିବେଶରେ ସେ ନିଜର ଅତିପ୍ରିୟ କୃଷ୍ଣସାର ସହିତ ବିଚରଣ କରୁଥିଲା ଏବଂ ସେମାନଙ୍କର ପ୍ରେମ କାହାଣୀ ସେହି ପରିବେଶକୁ ଶତମୁଖରିତ କରୁଥିଲା ଆଜି ସେହି ସ୍ଥାନ ପୁରାପୁରି ନିଶବ୍ଦ । ନା ଝରଣାର କୁଳୁକୁଳୁ ଶବ୍ଦ ଶୁଭୁଛି ନା ବୃକ୍ଷଲତା ସେମାନଙ୍କର ସବୁଜ ରଙ୍ଗରେ ପରିବେଶକୁ ସବୁଜିତ କରୁଛନ୍ତି । ବୋଧହୁଏ ବୁଲ୍‌ବୁଲ୍‌ର ଆସିବା ଦେଖି ଝରଣା ତା'ର କୁଳକୁଳୁ ଶବ୍ଦକୁ ପାହାଡ଼ର କୌଣସି ଖାଲରେ ନିଜକୁ ସମର୍ପି ଦେଇଛି ଏବଂ ବୃକ୍ଷଲତା ସବୁ ଆଜି ଥୁଣ୍ଟାପରି ଠିଆ ହୋଇଛନ୍ତି ।

ବୁଲ୍‌ବୁଲ୍ ପ୍ରେମପାଗଳିନୀ ପରି କୃଷ୍ଣସାରକୁ ଖୋଜିଛି । ପାହାଡ଼ ପର୍ବତକୁ ପଚାରିଛି । ଝରଣାକୁ ପଚାରିଛି ଏବଂ ବୃକ୍ଷଲତାମାନଙ୍କୁ ପଚାରିଛି ତା'ର କୃଷ୍ଣସାର କେଉଁଠାରେ ଅଛି । ମାତ୍ର ସମସ୍ତେ ନୀରବ ।

ବୁଲ୍‌ବୁଲ୍‌ର ବିଚଳତାକୁ ବହୁ ସମୟ ଧରି ଗୋଟେ ଛୋଟ ପକ୍ଷୀଟିଏ ଲକ୍ଷ୍ୟ କରୁଥିଲା । ସେହି ଛୋଟ ପକ୍ଷୀଟି ବୁଲ୍‌ବୁଲ୍‌ର ମନର ଭାବନାକୁ ବୁଝି ପାରିଲାନା କ'ଣ ବୁଲ୍‌ବୁଲ୍‌କୁ ଦୂରରେ ଥିବା ଗୋଟେ ଥୁଣ୍ଟା ଗଛ ତଳକୁ ଦେଖାଇ ଇଶାରା କଲା । ଯଦିଓ ଏହି ଛୋଟପକ୍ଷୀଟି ବୁଲ୍‌ବୁଲ୍ ପାଇଁ ଅଚିହ୍ନା ଥିଲା । ବୋଧହୁଏ ଏହି ଛୋଟ ପକ୍ଷୀଟିକୁ ତା'ର ''ବାପା ମା'' ଅଜା ତା'ର ନାତି ନାତୁଣିମାନଙ୍କୁ ପରୀରାଇଜର କାହାଣୀ ଶୁଣାଇବା ପରି ଏହି ବୁଲ୍‌ବୁଲ୍ ଓ କୃଷ୍ଣସାରର ପ୍ରେମ କାହାଣୀ ଶୁଣାଇଥିଲେ ।

ବୁଲ୍‌ବୁଲ୍ ସେହି ଥୁଣ୍ଟାଗଛମୂଳକୁ ଯାଇଦେଖିଛି । ଦେଖିଛି କେତେ ଖଣ୍ଡ ହାଡ଼ ପଡ଼ିଛି । ଯଦିଓ ସେ ପ୍ରଥମେ କିଛି ବୁଝି ପାରିନଥିଲା । ମାତ୍ର ସେହି ଛୋଟ ପକ୍ଷୀର ଇଶାରାରୁ ସେ ସବୁକିଛି ବୁଝିପାରିଥିଲା । ସେ ଜାଣିଲା ଯେ ତା'ର ଅତି ପ୍ରିୟ କୃଷ୍ଣସାର ତାକୁ ସବୁଦିନ ପାଇଁ ଛାଡ଼ି ଚାଲିଯାଇଛି । ବୁଲ୍‌ବୁଲ୍ ବହୁତ କାନ୍ଦିଛି ଏବଂ କହିଛି କୃଷ୍ଣସାର ଆଜି ତମର ବୁଲ୍‌ବୁଲ୍ ତା'ର ଭୂଲ ବୁଝିପାରିଛି ଏବଂ ସେ ଆଜି ତମ ପାଖକୁ ସବୁଦିନ ପାଇଁ ଫେରିଆସିଛି । କୃଷ୍ଣସାର, ମୋ ଉପରେ ଅଭିମାନ କରି ମୋଠାରୁ ଦୂରେଇ ଯାଅନି, ତମେ ଫେରିଆସ କୃଷ୍ଣସାର ତମେ ଫେରିଆସ । ଥୁଣ୍ଟାଗଛ ତଳେ ପଡ଼ିଥିବା କେତେ ଖଣ୍ଡ ହାଡ଼ରୁ କିଛି ସ୍ୱର ଭାସି ଆସୁଥିଲା । କହୁଥିଲା, ''ବୁଲ୍‌ବୁଲ୍ ତମେ କାନ୍ଦୁଛ; କିନ୍ତୁ ମୁଁ ଆଜି ବହୁତ ଖୁସି । କାରଣ ମୁଁ ହାରିକି ଆଜି ଜିତି ଯାଇଛି ମାତ୍ର ତମେ ଜିତିକି ହାରିଯାଇଛ ବୁଲ୍‌ବୁଲ୍ ତମେ ହାରିଯାଇଛ..... ।



# ସଂପର୍କ

ପ୍ରକାଶ ରଞ୍ଜନ ପଣ୍ଡା
+୩ ତୃତୀୟ ବର୍ଷ କଳା, (ଓଡ଼ିଆ ସମ୍ମାନ)

ସଂପର୍କ ବୁଝେନି ମନୁଷ୍ୟ ପଶୁପକ୍ଷୀର ତଫାତ୍ । ସଂପର୍କ ଚିହ୍ନେନି ମଣିଷ ଆଉ ପଶୁପକ୍ଷୀର ହୃଦୟକୁ । ଯେଉଁଠି ଦୁଇଟି ହୃଦୟର ପରିଚୟ ହୁଏ ସେଠି ଗଢ଼ିଉଠେ ସଂପର୍କ । ଦୁଇଟି ଅଜଣା ହୃଦୟ ଯେତେବେଳେ ପରସ୍ପରକୁ ବୁଝିପାରନ୍ତି ସେଠି ଗଢ଼ିଉଠେ ସଂପର୍କର ସେତୁ । ଯେଉଁଠି ନଥାଏ ଘୃଣା, ହିଂସା, ଈର୍ଷା, ଥାଏ ଖାଲି ଭଲପାଇବା ।

ଲିକୁନ ୫/୬ ବର୍ଷର ଗୁଲୁଗୁଲିଆ ପିଲାଟିଏ । ପ୍ରତିଦିନ ସ୍କୁଲରୁ ଫେରି ବହି ବ୍ୟାଗ୍ ଫୋପାଡ଼ି ଦେଇ ଖେଳିବାକୁ ଚାଲିଯାଏ ବାରିପଟେ ଥିବା ଆମ୍ବଗଛ ତଳକୁ । ଏକା ଏକା ଡେଇଁ ଡେଇଁ ସେଇ ଆମ୍ବଗଛ ତଳେ ଲିକୁନ୍ ଖେଳେ । ସାଙ୍ଗ ଟିଏ ଖୋଜେ । ହାଲିଆ ହୋଇ ବସିପଡ଼େ ଆମ୍ବଗଛ ତଳେ । ଗଛ ଉପରକୁ ଅନାଏ । ଗଛ ଉପରେ ହଳଦି ଗୁରୁଗୁରୁ ଚଢ଼େଇ ଟିକୁ ଦେଖି ଭାରି ଖୁସି ହୁଏ, ଭାବେ ଏଇ ଚଢ଼େଇ ମୋ ସାଙ୍ଗେ ହେଲେ ସାଙ୍ଗ ହୁଅନ୍ତା । ସାଙ୍ଗ ହେଲେ ନା ବେଶ୍ ବଢ଼ିଆ ହେବ । ଆମେ ଦୁହେଁ ଖେଳିବୁ, ବୁଲିବୁ, ସ୍କୁଲ ଯିବୁ, ଏକାଠି ଖାଇବୁ ଆହୁରି କେତେ କ'ଣ । ହଳଦିବସନ୍ତକୁ ହାତ ହଲେଇ ଡାକେ । ହେଲେ ଚଢ଼େଇଟା ଫୁର୍‌କିନା ଉଡ଼ିଯାଏ ଆକାଶକୁ । ଧରା ଦିଏନାହିଁ । ମନଦୁଃଖ କରେ ଲିକୁନ । ଚଢ଼େଇ କ'ଣ ମୋ ସାଙ୍ଗ ହେବାକୁ ରାଜି ନୁହେଁ । ତା'ର କ'ଣ ଆଉ ଅଲଗା ସାଙ୍ଗ ଅଛନ୍ତି । ମୁଁ ତାକୁ ବାଡ଼େଇବିନି ମ । ମାମାଙ୍କ ଠାରୁ ବିସ୍କୁଟ ଆଣି ଦେବି । କ୍ଷୀର ଦେବି । ଏଇମିତି ଅନେକ କଥା ଲିକୁନ ଭାବେ । ଶେଷରେ ମନଦୁଃଖରେ ଫେରିଆସେ ଲିକୁନ ଘରକୁ ।

ତା' ପରଦିନ ଲିକୁନ ସ୍କୁଲରୁ ଫେରି ବ୍ୟାଗ ରଖିଦେଇ ବିସ୍କୁଟ ଲୁଚାଇ ନେଇ ଚାଲିଗଲା ଆମ୍ବଗଛ ପାଖକୁ । ବିସ୍କୁଟକୁ ଦୁଇ ହାତରେ ଧରି କହିଲା ନେ, ସାଙ୍ଗ ଚଢ଼େଇ ଏଇ ବିସ୍କୁଟ ମୁଁ ତୋ ପାଇଁ ଆଣିଛି । ମାମାଙ୍କୁ କହିନାହିଁ ମ । ତୋ ପାଇଁ ଲୁଚେଇ ଆଣିଛି । ହଳଦିବସନ୍ତ ଏସବୁ ଗଛ ଡାଳରେ ଦେଖୁଥିଲା । କେଡ଼େ ସୁନ୍ଦର ସତେ ଲିକୁନ । କେଡ଼େ ଗୁଲୁଗାଲିଆ ହୋଇଛି ସତେ । ଲିକୁନର ଗୁଲୁଗୁଲିଆ କଥା ଶୁଣି ହଳଦିବସନ୍ତ ଆଉ ପୂର୍ବ ଭଳି ଉଡ଼ିଗଲା ନାହିଁ ଦୂରକୁ । ପାଖକୁ ଆସିଲା ଲିକୁନର ମନ ଖୁସି ହୋଇଗଲା । ତା'ର କୁନି କୁନି ହାତରେ ଧରିଥିବା ବିସ୍କୁଟକୁ ହଳଦିବସନ୍ତକୁ ଖୁଆଇ ଦେଲା । ତା' ହାତରେ ହଳଦିବସନ୍ତର ପିଠିକୁ ଆଉଁସି ଦେଲା । କହିଲା ସାଙ୍ଗ ଚଢ଼େଇ ମୁଁ ତୋ ପାଇଁ ସବୁଦିନ ବିସ୍କୁଟ ଆଣିବି । ଏଥର ତୁ ମୋ ସାଙ୍ଗ ହେବୁ ତ । ଏସବୁ ଶୁଣି ହଳଦିବସନ୍ତ ଥଣ୍ଟ ହଲାଏ । ନିଜର ଥଣ୍ଟକୁ ଲିକୁନର ଗାଲରେ ଘସେ । ଲିକୁନ ବି ତା' ହାତରେ ହଳଦିର୍ବସନ୍ତକୁ ସାଉଁଳେ ତା'ର ପକ୍ଷୀ ଝାଡ଼ିଦିଏ ।

ହଳଦିବସନ୍ତ ସବୁଦିନ ଚାଲିଯାଏ ସ୍କୁଲ ପାଖକୁ । ସ୍କୁଲର ଘଣ୍ଟା ବାଜିବା ସମୟକୁ ଗଛ ଉପରେ ବସି ଅପେକ୍ଷା କରେ । ସ୍କୁଲ ଛୁଟି ହେଲେ ଲିକୁନ୍‌କୁ ଦେଖି ଖୁସି ହୋଇଯାଏ । ଉଡ଼ିଯାଏ ବାରିପଟ ଆମ୍ବଗଛ ନିକଟକୁ । ଲିକୁନ ଗଲାପରେ ଦୁହେଁ ଖେଳନ୍ତି । ଲିକୁନ ଗୋଡ଼ାଏ ହଳଦିବସନ୍ତକୁ । ହେଲେ ହଳଦିବସନ୍ତକୁ ଗୋଡ଼ାଇ ପାରେନାହିଁ । ଧରିପାରେ ନାହିଁ ସାଙ୍ଗ ଚଢ଼େଇକୁ । ଖେଳରେ ଲିକୁନ ହାରିଯାଏ ।

ଖେଳ ଶେଷରେ ହଳଦିବସନ୍ତକୁ ବିସ୍କୁଟ ଖୁଆଇଦିଏ ଲିକୁନ । ପାଣି ପିଆଇଦିଏ ନିଜ ହାତରେ ।

ଲିକୁନର ମାମା ଏସବୁ ଲକ୍ଷ୍ୟକରନ୍ତି । ଖୁସି ହୋଇଯାଆନ୍ତି ଚଢ଼େଇଟିକୁ ଦେଖି । ତାକୁ ଘରେ ପୋଷି ରଖିବାକୁ ଇଚ୍ଛା କରନ୍ତି । ହଳଦିବସନ୍ତକୁ ଧରିବାକୁ ଚେଷ୍ଟା କରନ୍ତି । ବିସ୍କୁଟ ଜାଚନ୍ତି । ହେଲେ ହଳଦିବସନ୍ତ ଧରାଦିଏ ନାହିଁ । ସେ କେବଳ ଲିକୁନ କୁ ଧରାଦିଏ । ତା' ସହ ଖେଳେ ।

ବସନ୍ତ ଋତୁ ଆସିଛି, ଗଛରେ ଆମ୍ବ ସବୁ ଦୋଳି ଖେଳିଲାଣି । ଆମ୍ବ ପାଚିଲାଣି । ଲିକୁନର ଇଚ୍ଛା ହୁଏ ଆମ୍ବ ଖାଇବାକୁ । ଗଛକୁ ହଲାଏ ଲିକୁନ । ହେଲେ ଆମ୍ବ ପଡ଼େନିକି ଗଛ ବି ହଲେନି । ହଳଦିବସନ୍ତ ଏସବୁ ଗଛ ଡାଳରେ ବସି ଦେଖି ହସୁଥାଏ । ନିଜ ଥଣ୍ଟରେ ସେ ଆମ୍ବ ଡେମ୍ଫଂକୁ ଛିଣ୍ଡାଇ ଦିଏ । ଆମ୍ବ ପାଇ ଲିକୁନ ଖୁସି ହୋଇଯାଏ । ଦୁହେଁ ମିଶି ଆମ୍ବ ଖାଆନ୍ତି ।

ସବୁଦିନ ଆମ୍ବଗଛ ତଳେ ଦୁହେଁ ଖେଳନ୍ତି । କୌଣସି ଦିନ ଲିକୁନ ନ ଆସିଲେ ହଳଦିବସନ୍ତର ମନଦୁଃଖ ହୁଏ । ତାକୁ କିଛି ଭଲ ଲାଗେ ନାହିଁ । ଚାରିଆଡ଼େ ବୁଲି ଲିକୁନକୁ ଖୋଜେ । ଲିକୁନ ଉପରେ ରୁଷେ । କଥା କହେ ନାହିଁ କି ଧରା ଦିଏ ନାହିଁ । ଲିକୁନ୍ ମାମୁଁ ଘରୁ ଫେରିଲାପରେ ହଳଦିବସନ୍ତ ଲିକୁନ ଉପରେ ରୁଷେ । କିଆ କହେ ନାହିଁ କି ଧରାଦିଏ ନାହିଁ । ଲିକୁନ୍ ରାତ୍ରିରେ ସାଙ୍ଗ ଚଢ଼େଇକୁ ସ୍ୱପ୍ନ ଦେଖେ । ତାକୁ ଗେଲ କରେ । କହେ, ନେ ସାଙ୍ଗ ଚଢ଼େଇ ବିସ୍କୁଟ ଖାଇଦେ । ତୁ କ'ଣ ମୋ ଉପରେ ରାଗିଛୁ । କ'ଣ କଟି ପକେଇ ଦେଇଛୁ । ମୁଁ ପରା ମାମୁଁ ଘରକୁ ଯାଇଥିଲି । ଏଥର ମାମୁଁ ଘରକୁ ଗଲେ ତୁ ମୋ ସାଙ୍ଗରେ ଯିବୁ । ତୋତେ ଆଉ ମୁଁ ଛାଡ଼ି ଏକା ଯିବି ନାହିଁ । ମୁଁ ଆଗ କଟି ଫିଟେଇବି । ଆଗ କଥା କହିବି, ଆଉ ରାଗନା ସାଙ୍ଗ ଚଢ଼େଇ । ଏଇମିତି ନିଦରେ ଶୋଇ ଲିକୁନ୍ ଅନେକ କଥା କୁହେ । ମାମାଙ୍କ ନିଦ ଭାଙ୍ଗିଯାଏ, ସେ ଦେଖନ୍ତି ଲିକୁନ ନିଦରେ କେମିତି ତା' ସାଙ୍ଗ ଚଢ଼େଇ ସହ ଖେଳୁଛି ।

ଲିକୁନ ଓ ହଳଦି ବସନ୍ତର ସମ୍ପର୍କ କ୍ଷୀର, ନୀରର ସମ୍ପର୍କ ଠାରୁ ଆହୁରି ନିବିଡ଼ ହୋଇଯାଉଛି ବେଳକୁ ବେଳ । ଚଢ଼େଇ ସହ ଖେଳିବା ପାଇଁ ଲିକୁନ ଖାଇବା ପିଇବା ଭୁଲିଯାଏ । ଚଢ଼େଇକୁ ଦିନେ ନ ଦେଖିଲେ ଲିକୁନ କାନ୍ଦେ । ମାମା କୁ କହେ 'ମାମା' ସାଙ୍ଗ ଚଢ଼େଇ ଆଜି କୁଆଡ଼େ ଯାଇଛି । ସେ କ'ଣ ତା'ର ମାମୁଁ ଘରକୁ ଯାଇଛି । ତା' ମାମୁଁଘର କୁଆଡ଼େ ମାମା ମୁଁ ଯିବି । ସେଠି ଯାଇ ସାଙ୍ଗ ଚଢ଼େଇ ସହ ରହିବି । ମାମା କୁହନ୍ତି ସେ ଯୋଉ ପାହାଡ଼ ଦେଖା ଯାଉଛି ତା ଆରପଟେ ସାଙ୍ଗ ଚଢ଼େଇର ମାମୁଁଘର । ତୁ କ'ଣ ଏତେବାଟ ଯାଇପାରିବୁ । ତୁ ପରା ପିଲାଟିଏ । ଲିକୁନ କିନ୍ତୁ ଅବୁଝା ହୁଏ । ଜିଦ୍ ଧରେ ସେଠାକୁ ଯିବାପାଇଁ ।

ବର୍ଷାଦିନ ଆସିଛି । ବର୍ଷାରେ ଥରେ ଥରେ ତିନ୍ତି ଯାଏ ହଳଦିବସନ୍ତ । ଲିକୁନକୁ କିନ୍ତୁ ଭାରି ଦୁଃଖ ଲାଗେ । ମାମାକୁ କହେ ମାମା ତୁ ସାଙ୍ଗ ଚଢ଼େଇ ପାଇଁ ଗୋଟିଏ ଭଲ ଘର କରିଦେ । ଆମେ ଯେମିତି ଘରେ ରହୁଛେ ସେ ସେମିତି ରହିବ । ବର୍ଷାରେ ଆଉ ଓଦା ହେବ ନାହିଁ । ମାମା କହନ୍ତି ହଉ କରିଦେବା ।

ସେଦିନ ରାତି ଟା ଲିକୁନ ଓ ହଳଦିବସନ୍ତ ପାଇଁ ଥିଲା କାଳରାତ୍ରି । ଶେଷ ରାତି ।

ମହାବାତ୍ୟା ହେବ । ଜୋରରେ ବର୍ଷା ହେବ । ପବନ ହେବ । ଘଡ଼ଘଡ଼ି ମାରିବ । ଲିକୁନ ଏସବୁ ଶୁଣି ଡରିଗଲା । ସେଦିନ ସ୍କୁଲରୁ ଫେରି ଲିକୁନ ଆମ୍ବଗଛ ମୂଳକୁ ଆସି ମନଦୁଃଖରେ ବସିଲା । କହିଲା ସାଙ୍ଗ ଚଢ଼େଇ ଆଜି ରାତିରେ ନା ଜୋର ବର୍ଷା ପବନ ହେବ । ତୁ ଆଜି ଏ ଗଛରେ ନରହି, ରାତିରେମୋ ପାଖରେ ଶୋଇବୁ, ଆମ ଘରେ ରହିବୁ । ଚଢ଼େଇ କିନ୍ତୁ ଥଣ୍ଟ ହଲାଇ ମନା କରୁଥିଲା । ଲିକୁନ କଥାରେ ସେ ରାଜିନଥିଲା । ନିରାଶ ହୋଇ ଲିକୁନ ଘରକୁ ଫେରିଲା ।

ସେଦିନ ରାତିରେ ଆରମ୍ଭ ହେଲା ବର୍ଷା ସହିତ ପବନ । ସୁ ସୁ ଗର୍ଜନ କରି ପବନ ବୋହୁଥିଲା । ମୂଷଳ ଧାରାରେ ବର୍ଷା ହେଉଥିଲା । ଲିକୁନକୁ କିନ୍ତୁ ନିଦ

ଆସୁନଥିଲା । ଶୋଇ ଶୋଇ ସେ ଭାବୁଥିଲା ତା'ର ସାଙ୍ଗ ଚଢ଼େଇ କଥା । ବର୍ଷାରେ ସାଙ୍ଗଚଢ଼େଇ କେମିତି ଥିବ । ସେତ ଓଦା ହୋଇଯିବଣି । ତାକୁ ତ ଭାରି ଶୀତ ହେଉଥିବ । ତା'ପାଖରେ ତ କିଛି ଘୋରି ହେବାପାଇଁ ନଥିବ । ଲିକୁନ ଦେଖିଲା ମାମା ନିଦରେ ଶୋଇ ପଡ଼ିଲେଣି । ଆସ୍ତେ ଆସ୍ତେ ଲିକୁନ ଘର କବାଟ ଖୋଲି ବାହାରକୁ ଆସିଲା । ପବନ ବର୍ଷାକୁ ଖାତିର ନକରି ଚାଲିଲା ଆମ୍ବଗଛ ଆଡ଼କୁ । ବଡ଼ ପାଟି କରି ଡାକୁଥିଲା ସାଙ୍ଗ ଚଢ଼େଇ ତୁ ମୋ ସାଙ୍ଗରେ ଆସ ଆମ ଘରକୁ ଯିବା । ରାତିରେ ଆହୁରି ଅଧିକା ବର୍ଷା ହେବ; କିନ୍ତୁ ତା' ଡାକ ଶୁଭି ନଥିଲା ତା' ସାଙ୍ଗ ଚଢ଼େଇକୁ । ସେଦିନ ରାତିରେ ଲିକୁନ ସମୁଦ୍ର ଜୁଆରରେ ଭାସି ଯାଇଥିଲା । ସେହି କାଳରାତ୍ରୀ ଲିକୁନ କୁ ହଜାଇ ଦେଇଥିଲା ସବୁଦିନ ପାଇଁ । ସେ ଯେ କେଉଁଆଡ଼େ ଗଲା ତା'ର ଖବର ମିଳିଲାନି । ସେଇ କାଳରୂପୀ ମହାବାତ୍ୟାରୁ କିନ୍ତୁ ରକ୍ଷା ପାଇଯାଇଥିଲେ ହଳଦିବସନ୍ତ ଓ ଲିକୁନର ମାମା ।

ମାମା ଖୋଜୁଥିଲେ ଲିକୁନକୁ । ହେଲେ ଲିକୁନ କୁ ପାଉନଥିଲେ । ସେ କେଉଁଆଡ଼େ ଚାଲି ଯାଇଛି ସବୁଦିନ ପାଇଁ ତା'ର ମାମା ଓ ପ୍ରିୟ ସାଙ୍ଗ ଚଢ଼େଇକୁ ଛାଡ଼ି ।

ସେଇ ଦିନଠୁ ହଳଦିବସନ୍ତ ଖୋଜୁଛି ତା'ର ସାଙ୍ଗ ଲିକୁନକୁ । ଲିକୁନ କୁଆଡ଼େ ଗଲା । ସବୁଦିନ ସ୍କୁଲ ଛୁଟି ହେବା ବେଳର ଘଣ୍ଟି ଶବ୍ଦକୁ ଅନାଇ ରହେ; କିନ୍ତୁ ଲିକୁନକୁ ଦେଖେ ନାହିଁ । ଭାବେ, ଲିକୁନ ଯାଇଛି ମାମୁଁ ଘରକୁ । କିଛି ଦିନ ପରେ ଫେରିବ । ଦୁହେଁ ପୁଣି ଖେଳିବେ । ଏଥର କିନ୍ତୁ ମୁଁ ଆଗ କଥା କହିବି । କିନ୍ତୁ ଲିକୁନ ଆଉ ଫେରେ ନାହିଁ । ହଳଦିବସନ୍ତ ଟା ବା କେମିତି ବୁଝିବ ଯେ ଲିକୁନ ମରିଯାଇଛି ବୋଲି ।

ସେଇ ଦିନଠୁ ହଳଦିବସନ୍ତ ମନରେ ଖୁସି ନାହିଁ । ଗଛ ଉପରେ ବସି ବସି ସେ ଲୁହ ଗଡ଼ାଉଛି । ଖୋଜୁଛି ତା'ର ସାଙ୍ଗ ଲିକୁନକୁ । ଘର ପାଖକୁ ଉଡ଼ି ଆସୁଛି । ଦେଖୁଛି ଲିକୁନର ମାମାଙ୍କ ଆଖିରୁ ବୋହି ଯାଉଛି ଲୁହର ଧାରା । ସେ ବି ଲିକୁନକୁ ଖୋଜୁଛନ୍ତି । ହଳଦିବସନ୍ତଟିକୁ ଦେଖି ମାମା କାନ୍ଦି ଉଠନ୍ତି ଜୋର୍‌ରେ । ହଳଦିବସନ୍ତ ଟି ଆସି ବସେ ମାମାଙ୍କ ପାଖରେ । ତାଙ୍କର କାନ୍ଧ ଉପରେ । ଥଣ୍ଟକୁ ଘସେ ମାମାଙ୍କ ଗାଲରେ ।

ହଳଦିବସନ୍ତ ଆଉ କିଛି ଖାଉନାହିଁ । ଲିକୁନକୁ ଝୁରି ଝୁରି ସେ ରୁଗ୍‌ଣ ହୋଇ ଗଲାଣି । ଅନବରତ ବସି ରହିଛି ସେଇ ଆମ୍ବଗଛ ଡାଳରେ । କାନ୍ଦୁଛି ଲିକୁନକୁ ମନେପକାଇ । ଦିନେ ମାମା ଦେଖନ୍ତି ହଳଦିବସନ୍ତ ମରିପଡ଼ିଛି ଗଛ ତଳେ । ସାରା ଦେହ ତା'ର ଓଦା ହୋଇଯାଇଛି ଲୁହରେ । ସେ କେବଳ ଲିକୁନକୁ ଝୁରି ଝୁରି ମରି ଯାଇଛି । ମାମା କିନ୍ତୁ ଏସବୁ ଦେଖି ଧୈର୍ଯ୍ୟ ଧରି ରହି ପାରନ୍ତି ନାହିଁ । କାନ୍ଦି ଉଠନ୍ତି ଭୋ ଭୋ ହୋଇ ।

ବସନ୍ତ ଆସିଛି । ଆମ୍ବ ସବୁ ଦୋଳି ଖେଳିଲେଣି । କିନ୍ତୁ ଲିକୁନ ନାହିଁ କି ତା'ର ସାଙ୍ଗ ଚଢ଼େଇ ବି ନାହିଁ । ରହିଛି ଖାଲି ଆମ୍ବଗଛ, ରହି ଯାଇଛନ୍ତି ଲିକୁନର ମାମା । ରହିଯାଇଛି ସେଇ ପୁରୁଣା ଦିନର ସଂପର୍କର ସ୍ମୃତି । ଯାହା ଗଢ଼ି ଉଠିଥିଲା ଲିକୁନ ଓ ହଳଦିବସନ୍ତଙ୍କ ମଧରେ । ସେଇ ସମ୍ପର୍କ ।

ଯାହା ଅମ୍ଳାନ : ଅକ୍ଷୟ ।



# ଗୋଲାପ

କୁମାର ଶ୍ରୀ କାନନ
+ ୩ ପ୍ରଥମ ବର୍ଷ କଳା

ପ୍ରତିଦିନ ସକାଳେ କଲେଜକୁ ପଢ଼ିବାକୁ ଯାଏ । ନିଇତି ଏକ ନିର୍ଦ୍ଦିଷ୍ଟ ବାଟ ଦେଇଯାଏ । ଏକଦା ବାଟରେ ଯାଉ ଯାଉ ରାସ୍ତାକଡ଼ରେ ଏକ ଫୁଲ ବଗିଚା ଉପରେ ଦୃଷ୍ଟି ପଡ଼ିଲା । ଦେଖିଲି ବଗିଚା ଭିତରେ ବିଭିନ୍ନ ରଙ୍ଗ ବେରଙ୍ଗର ଫୁଲ ଫୁଟି ଶୋଭାପାଉଥାଏ । ମନକୁ ବେଶ୍ ମୋହିତ କରୁଥାଏ । ହଠାତ୍ ନଜର ପଡ଼ିଲା ଏକ ସୁନ୍ଦର କୁଶବିଦ୍ଧ ରକ୍ତ ଗୋଲାପ ଉପରେ । ବଗିଚାର ଏକ ନିର୍ଜନ ସ୍ଥାନରେ ଫୁଟିଥାଏ । ସତେ ଯେପରି କାହା ସହିତ ମିଶିବାକୁ ଚାହୁଁନଥାଏ । ସକାଳର ସୁଲୁସୁଲିଆ ପବନରେ ଗଛଟି ଟିକେ ଦୋହଲି ପଡୁଥାଏ । ତା' ସହିତ ମଧ ସେହି ଫୁଲ କି ସୁନ୍ଦର ! ସତେ ଯେପରି ଫୁଲଟି ହଲି, ହଲି, ଦୋହଲି ବାଟରେ ଯାଉଥିବା ପଥିକ କିମ୍ବା ଦର୍ଶକମାନଙ୍କୁ ସମ୍ବୋଧନ କରୁଥିଲା । କାହିଁକି କେଜାଣି ବୋଧହୁଏ ସେ ଫୁଲଟିର ଅଜାଣତରେ ମୋତେ ସେ ତା' ଆଡ଼କୁ ଟାଣି ନେଇଯାଉଥାଏ ।

ବଗିଚାର ଫୁଲ ଗୁଡ଼ିକୁଦେଖିଲେ ଯେତେ ମନ ପ୍ରଫୁଲ୍ଲ ହେଉଥାଏ । ତା'ଠାରୁ ଏକତ୍ର ନିର୍ଜନ ସ୍ଥାନରେ ଫୁଟିଥିବା ଫୁଲ ବେଶ୍ ଶୋଭାପାଉଥାଏ । ଠିକ୍ ଏଭଳି ସ୍ଥାନରେ ରକ୍ତ ଗୋଲାପଟି ଫୁଟିଥିଲା ।

ଫୁଲଟି ଉପରେ ଏପରି ଲୋଭ ଆସିଥିଲା ଯେ ଫୁଲଟିକୁ ନିଶ୍ଚୟ ତୋଳିବି ବୋଲି ପ୍ରତିଜ୍ଞାବଦ୍ଧ ଥିଲି । ଏକଦା ବାଟରେ ଯାଉଯାଉ ବଗିଚା ଭିତରେ ପଶିଗଲି ଫୁଲଟିକୁ ଛିଣ୍ଡାଇବା ଆଶାରେ । ନିର୍ଦ୍ଦିଷ୍ଟ ଗଛ ପାଖକୁ ଯାଇ ହାତ ବଢ଼ାଇଛି, ହଠାତ୍ ମନରେ ଜାଗ୍ରତ ହେଲା ଯେ ଏଥିରେ ତୋଳୁ ତୋଳୁ ଗଛରୁ ଫୁଲଟି ଛିଣ୍ଡିଯାଇ ତଳେ ପଡ଼ିଯାଇ ତା'ର ପାଖୁଡ଼ା ଗୁଡ଼ାକ ଝଡ଼ିପଡ଼ି ବନିତ ! ନା ....... ତୋଳିବନି ଭାବି ବାଡ଼ିଟିକୁ ଫୋପାଡ଼ି ଦେଇଥିଲି । ଆହୁରି ମଧ ମନରେ ଜାଗ୍ରତ ହେଲାଯେ ବର୍ତ୍ତମାନ ତୋଳୁଥିବା ଅବସ୍ଥାରେ କିଏ କ'ଣ କହିବ କି ? ସେଦିନ ଘରକୁ ଫେରିଆସିଲି । ଏପରି ଦିନଟେ ବିତିଗଲା ତା'ପରେ ଦିନେ ଘରେ ବସିଥାଏ । ହଠାତ୍ ମନେପଡ଼ିଲା ସେଇ ଗୋଲାପ, ଭାବିଲି ଯଦି ମୁଁ ଫୁଲଟିକୁ ନ ତୋଳୁଛି ସେ ଦୁଇଦିନ ପରେ ହୁଏତ ମଉଳିଯିବ ଓ ମଉଳି ଯାଇ ଗଛରୁ ଛିଣ୍ଡିଯାଇ ତଳେ ପଡ଼ିଯିବ । ଗଛରେ ଫୁଟିଥିବା ଗୋଲାପ ଫୁଲଟି କେତେଦିନ ଅବା ସତେଜ ଅବସ୍ଥାରେ ରହିବ ? ନା..... ମଉଳିବା ପୂର୍ବରୁ ତୋଳିଆଣିବି ଭାବି ସଙ୍ଗେ ସଙ୍ଗେ ସେ ସ୍ଥାନରୁ ଉଠିପଡ଼ି ଚାଲିଲି ସେହି ନିର୍ଦ୍ଦିଷ୍ଟ ବଗିଚା ଓ ଗଛପାଖକୁ ।

ସନ୍ଧ୍ୟାସମୟ, ଗଛ ପାଖରେ ପହଞ୍ଚି ଫୁଲଟି ଉପରେ ଦୃଷ୍ଟି ନିକ୍ଷେପ କଲି । ଅନ୍ଧାର କିଟ୍-କିଟ୍ । ଅନ୍ୟ ରଙ୍ଗର ଫୁଲ ହୋଇଥିଲେ ହୁଏତ ଦେଖିପାରିଥାନ୍ତି; କିନ୍ତୁ ରକ୍ତ ଗୋଲାପ ଫୁଲଟି ଅନ୍ଧାର ରାତ୍ରିରେ ଅଧିକ କଳା ଦେଖାଯାଏ । ଦିଶିବ ବା କାହିଁକି ସୁଲୁସୁଲିଆ ପବନ ବହୁଥାଏ । ସେଇ ପବନରେ ଫୁଲ ଗଛଟିରେ ଲୁଚି ରହିଥିବା ଫୁଲଟି ହଲି ଗଛଆଡୁଆଳରେ ଟିକିଏ ବାହାରି ଆସିଲା । ହଠାତ୍ ଦୃଷ୍ଟି ପଡ଼ିଗଲା । ଫୁଲଟିକୁ ଦେଖି ମନରେ ଉଲ୍ଲାସ ଭରି ଉଠିଲା । ରାତ୍ର ସମୟରେ ନିର୍ଭୟରେ ହାତ ବଢ଼ାଇଲି ଫୁଲଟିକୁ ତୋଳିବା ପାଇଁ ।

କଣ୍ଟା ସଲ ବଲ ଡାଳଟିକୁ ହାତରେ ଧରି ଟାଣି ଆଣିଲି । ଫୁଲଟିକୁ ଛିଣ୍ଡାଇବାକୁ ଚେଷ୍ଟା କଲି । ଠିକ୍ ସେତିକିବେଳେ ଡାଳଟିକୁ ନିଜ ଆଡ଼କୁ ଟାଣି ଆଣିଛି । ସେ ଫୁଲଟି ଡାଳସହିତ ଦୋହଲି ଯାଇ ଫୁଲଟିରୁ କିଛି ପାଖୁଡ଼ା ଖସି ତଳେ ପଡ଼ିଗଲା । ତା'ପରେ ଫୁଲଟି

ସଂମ୍ପୂର୍ଣ୍ଣ ରୂପେ ଝଡ଼ି ଯାଇ ମୋ ଦେହରେ କିଛି ବାଜିଯାଇ ତଳେ ପଡ଼ିଯାଇଥିଲା ।

ବୋଧହୁଏ ଫୁଲଟି ଗଛରେ ରହି ରହି ସମ୍ପୂର୍ଣ୍ଣ ରୂପେ ମଉଳି ଯାଇଥିଲା । ନାମକୁ ମାତ୍ର ଗଛରେ ରହି ଶୋଭା ପାଉଥିଲା । ମନଦୁଃଖ କରି ଘରକୁ ଫେରିଆସିଲି । ରାତିରେ ଶୋଇ ସ୍ୱପ୍ନ ଦେଖୁଥାଏ ଯେ ଫୁଲଟି ମୋ ପାଖେ ପାଖେ ଅଛି । ସେଦିନ ରାତି ଗଲା, ସକାଳ ପାହିଲା । ପୁଣି ଆତୁର ହୋଇ ଚାଲିଗଲି ସେଇ ଫୁଲଗଛ ପାଖକୁ । ସେଠାରେ ଯାଇ ଦେଖିଲି ଗଛଟି ଶୂନ୍ୟ, ଅନ୍ୟ ଫୁଲ ଗଛ ଗୁଡ଼ିକରେ ଯେମିତି କି ସେମିତି ଶୋଭା ପାଉଥାଏ । କିନ୍ତୁ ଏ ଗଛରେ ଫୁଲଟି ଗଲା କୁଆଡ଼େ ? ମନେ ପଡ଼ିଗଲା କାଲି ରାତ୍ରିର ଘଟଣା । ଲଜ୍ଜିତ ହେଲି ନିଜକୁ ନିଜେ । ତଳକୁ ଅନାଇ ଦେଖିଲି ସେଇ ମଉଳା ଫୁଲ ଖଣ୍ଡବିଖଣ୍ଡିତ ଅବସ୍ଥାରେ ସେଇ ଫୁଲ ସେଇ ରଙ୍ଗ । ଖାଲି ଫୁଲରୁ ବାସ ଓ ଚେହେରା ଚାଲି ଯାଇଥାଏ । ପୁଣି ସେଇ ଦୁଃଖାତୁର, କାଲି ରାତ୍ରିଘଟଣା ସବୁ ମୋତେ ସ୍ୱପ୍ନପରି ମନେ ହେଉଥାଏ । କିନ୍ତୁ ସକାଳ ସମୟରେ ଏହା ମନେ ପଡ଼ିଯିବ ଓ ବନ୍ଧୁସାମ୍ନାରେ ଫୁଲଟିର ଏପରି ଅବସ୍ଥା ଦେଖି ହୃଦୟ ଖଣ୍ଡ ବିଖଣ୍ଡିତ ହୋଇଯାଉଥିଲା । ନା କାହାକୁ କିଛି କହି ପାରିଲି ନା ନିଜେ ସହିପାରିଲି ।

ପୁଣି ସେଇ ମଉଳା ଫୁଲଟିକୁ ହାତ ବଢ଼ାଇଲି ତଳୁ ଆଣିବା ପାଇଁ । ହେଲେ ହଠାତ୍ ଏକ ଅଦିନିଆ ଝଡ଼ କେଉଁଆଡୁ ଆସି ଫୁଲଟିକୁ ଉଡ଼ାଇ ନେଇଥିଲା । ମୋରି ଆଖି ସାମ୍ନାରେ ଖଣ୍ଡବିଖଣ୍ଡିତ ହୋଇ କେଉଁଆଡ଼େ ଉଡ଼ି ଚାଲିଗଲା । ଅନାଇ ରହିଗଲି ସେପରି । ସେଠାରେ ଥକ୍କା ମାରି ବସିପଡ଼ିଲି ।

ଭାବିଲି ଏହା କ'ଣ ମୋ ସହିତ ପ୍ରକୃତିର ଖେଳ ନା ସେ ଫୁଲର । ମନେ ମନେ ଭାବିଲି ପ୍ରକୃତି ସହିତ ଫୁଲର ମଧ ହାତ ଅଛି । ପ୍ରକୃତିର ଫୁଲଟି ମୋ ଜୀବନ ସହିତ କିଛି ସମୟ ପାଇଁ ଖେଳିଗଲା । କେତେ ସ୍ୱପ୍ନରେ କେତେ ଲୋଭରେ ଆଶା କରିଥିଲି ଯେ ଫୁଲଟିକୁ ଆଣି ମୋ ଟେବୁଲ ଉପରେ ସଜାଇ ରଖିବି, ଯେତେଦିନ ପର୍ଯ୍ୟନ୍ତ ମହକି ରହିଥିବ । କିନ୍ତୁ ଫୁଲଟିକୁ ତୋଳିକି ଆଣିବି କ'ଣ ସେ ଫୁଲଟି ମୋ ହାତକୁ ଆସିନଥିଲା । ଏହା କ'ଣ ପ୍ରକୃତିର ମୋ ଭାଗ୍ୟ ସହିତ ଏକ ନିର୍ମମ ଖେଳ ?''



# ଭିନ୍ନ ମନ : ଭିନ୍ନ ମନୁଷ୍ୟ

ବନାନୀ ପ୍ରିୟଦର୍ଶିନୀ ମହାପାତ୍ର
+୨ ପ୍ରଥମ ବର୍ଷ କଳା

ଘଞ୍ଚ ଅରଣ୍ୟ, ଅରଣ୍ୟ ମଧ୍ୟରେ ଏକ ଆଶ୍ରମ ଥିଲା । ସେଠି ଜଣେ ସନ୍ଥ ମହାରାଜ ରହୁଥିଲେ । ଯିଏ ସଂସାରର ଦୁଃଖମୟ ଜଞ୍ଜାଳରୁ ନିଜକୁ ଦୂରେଇ ଏକ ଶାନ୍ତ ପରିବେଶ ମଧ୍ୟରେ ନିଜର ଜୀବନ ଅତିବାହିତ କରୁଥିଲେ ।

ସନ୍ନ୍ୟାସୀ ଜଣଙ୍କ ପୂଜା, ପାଠ, ଧ୍ୟାନ, ମଗ୍ନରେ ବୁଡ଼ି ରହନ୍ତି । ତାଙ୍କ କୁଟୀର ମଧ୍ୟରେ ସେ ସର୍ବଦା ଭଗବାନଙ୍କର ପୂଜା ଅର୍ଚ୍ଚନା କରନ୍ତି ଯଦି କୌଣସି ପଥିକ ସେହି ପଥ ଦେଇ ଯିବାବେଳେ କ୍ଲାନ୍ତ ହୋଇପଡ଼ିଥାଏ, ତା'ର କ୍ଲାନ୍ତ ଦୂର ନିମନ୍ତେ ସନ୍ନ୍ୟାସୀ ଜଣଙ୍କ ତାଙ୍କ ପାଇଁ ଆସନ ପାରିଦିଅନ୍ତି ଏବଂ ଯଥୋଚିତ ସେବା କରନ୍ତି । ସମସ୍ତ ପଥିକ ସନ୍ନ୍ୟାସୀଙ୍କର ଏହି ପ୍ରକାର ଉଦାରତା ଏବଂ ମହାନତା ପାଇଁ ତାଙ୍କର ଧନ୍ୟ ଧନ୍ୟ କରନ୍ତି ।

କୌଣସି ଏକ ସମୟରେ ଦିନେ ସେହି ବାଟ ଦେଇ ଜଣେ ଶୁଖୁଆ ବିକାଳି ଫେରୁ ଫେରୁ ରାତି ଅନେକ ହୋଇଯାଇଥାଏ । ଅନ୍ଧାର ରାତି ହୋଇଥିବାରୁ ଶୁଖୁଆ ବିକାଳି ବୁଢ଼ୀକୁ ବାଟ ଭଲ ଭାବେ ଦେଖାଯାଉନଥିଲା ।

ଝାପ୍ସା ଆଲୋକ ପଡ଼ିଥିବାରୁ କୁଡ଼ିଆଟି ବୁଢ଼ୀକୁ ଦୃଶ୍ୟମାନ ହେଲା । ବୁଢ଼ୀ ଏହି କୁଡ଼ିଆଟି ଦେଖିବାରୁ ତା'ର ମନରେ ଦମ୍ଭ ଆସିଲା । ସେ ଧୀରେ ଧୀରେ କୁଡ଼ିଆ ଆଡ଼େ ଗଲା । କୁଡ଼ିଆ ପାଖରେ ପହଁଞ୍ଚି ଦେଖିଲା ଜଣେ ସନ୍ନ୍ୟାସୀ କୁଡ଼ିଆ ପାଖରେ ବସିଛନ୍ତି । ସନ୍ନ୍ୟାସୀ ଜଣଙ୍କ ବୁଢ଼ୀକୁ ଦେଖି ଭାବିଲେ ଯେ, ସେ ନିଶ୍ଚୟ କୌଣସି ଅସୁବିଧାର ସମ୍ମୁଖୀନ ହୋଇଛି । ସନ୍ନ୍ୟାସୀ ଜଣଙ୍କ କୌଣସି ଦ୍ୱିଧା ପ୍ରକାଶ ନ କରି ସଙ୍ଗେ ସଙ୍ଗେ ବୁଢ଼ୀ ମୁଣ୍ଡରୁ ଶୁଖୁଆ ବୋଝଟିକୁ ଓହ୍ଲାଇ ଦେଲେ । ଖାଇବା ଏବଂ ଶୋଇବାର ବ୍ୟବସ୍ଥା କରିଦେଲେ । ବୁଢ଼ୀଟିକୁ କୁଟୀର ଭିତରେ ବିଶ୍ରାମ ନେବାପାଇଁ କହିଥିଲେ ଏବଂ ନିଜେ ବାରଣ୍ଡାରେ ଶୋଇଥିଲେ । ବୁଢ଼ୀଟି ତା'ର ଶୁଖୁଆ ଟୋକେଇଟିକୁ ବାରଣ୍ଡାରେ ଥୋଇ ଦେଇ ଭିତରକୁ ଗଲା । ଦେଖିଲା ଦୀପଟିଏ ଜଳୁଛି । ଘରସାରା ଭଳିକି ଭଳି ମୂର୍ତ୍ତି ଅଛି । ଧୂପକାଠି ଜଳୁଛି । ଚନ୍ଦନ, କର୍ପୂର, ରଙ୍ଗବେରଙ୍ଗର ଫୁଲ ଆଖିକୁ ଯେତେ ସୁନ୍ଦର ଦେଖାଯାଉଛି ତା'ର ସୁବାସିତ ଗନ୍ଧରେ ଘର ମହକି ଉଠୁଛି । ଏହା ସହିତ ବୁଢ଼ୀଟି ଆଦୌ ପରିଚିତ ନୁହେଁ । ଜୀବନସାରା ସେ ଶୁଙ୍ଘି ଆସିଛି କେବଳ ମାଛ ଓ ଶୁଖୁଆର ଗନ୍ଧ । ଏଇ ସୁବାସିତ ମହକ ଗୁଡ଼ିକ ତାକୁ ଅତି ଉତ୍କଟ ଲାଗୁଥାଏ । ତା' ଆଖିକୁ ସେ ଗନ୍ଧରେ ନିଦ ଆସୁନଥାଏ । ଥରକୁ ଥର କବାଟ ଖୋଲି ସେ ଲକ୍ଷ୍ୟ କରୁଥାଏ ସନ୍ନ୍ୟାସୀଙ୍କର ମଧ୍ୟ ସେ ଅବସ୍ଥା । ଶୁଖୁଆ ଗନ୍ଧରେ ସନ୍ନ୍ୟାସୀ ଜଣଙ୍କ ମଧ୍ୟ ଅତିଷ୍ଠ ।

ବୁଢ଼ୀ ଆଉ ସମ୍ଭାଳି ପାରିଲା ନାହିଁ । ମୁହଁଖୋଲି କହିଲା । ସନ୍ନ୍ୟାସୀ ତୁମେ ଏ ଘର ଭିତରେ ବିଶ୍ରାମ ନିଅ । ମୋତେ ସେ ବାରଣ୍ଡାରେ ଶୋଇବାକୁ ଦିଅ । ଏ ଘର ଭିତରେ ହେଉଥିବା ଫୁଲ ଚନ୍ଦନ ମହକରେ ମୁଁ ଶୋଇପାରିବି ନାହିଁ । ଏହି ସୁଗନ୍ଧକୁ ମୋର ନାକ ସହ୍ୟ କରିପାରୁନାହିଁ । ସନ୍ନ୍ୟାସୀ ଜଣଙ୍କ ମଧ୍ୟ ତାଙ୍କ ମନ କଥା ଖୋଲି କହିଲେ ଶୋଇପଡ଼ନ୍ତି ଯେ ତୁମର ଏ ଶୁଖୁଆ ଗନ୍ଧ ଟୋକେଇଟି ମୋତେ ଅସହ୍ୟ କରିଦେଲାଣି ।

ତା'ପରେ ଦୁହିଁଙ୍କ ଶୋଇବା ସ୍ଥାନ ବଦଳିଗଲା । ସନ୍ନ୍ୟାସୀ ତାଙ୍କର ପ୍ରକୋଷ୍ଠର ମହକ ପାଇ ଶୋଇଲେ । ବୁଢ଼ୀ ମଧ୍ୟ ତା'ର ଶୁଖୁଆଗନ୍ଧରେ ତୃପ୍ତି ଲାଭ କଲା । ଅଳ୍ପ ସମୟ ମଧ୍ୟରେ ଦୁଇଜଣଙ୍କ ଆଖିରେ ନିଘୋଡ଼ ନିଦ ଆସିଗଲା ।



# ଓଲଟା ଆଖିର ଢ଼ୋଳା

ବିଭୂତି ଭୂଷଣ ହୋତା
+୩ ଦ୍ୱିତୀୟ ବର୍ଷ ବିଜ୍ଞାନ

ମୋ ଘରର ଅତି ପାଖରେ ଥିବା – ଚାକୁଣ୍ଡା ଗଛର ଶୁଖିଲା ପତ୍ର କେତୁଟା ସିରିସିରି ପବନରେ ଝଡ଼ିପଡ଼ି ଶୁଷ୍କ ମୃତ୍ତିକାର ତୃଷାର୍ତ୍ତ ଚୁମ୍ବନର ଶିକାର ହୋଇଯାଉଥିଲେ - ଏକଥା ମୋତେ ଆଦୌ ଭଲ ଲାଗୁନଥିଲା । ଝରକାରେ ଦିଶୁଥିବା ଅଦୂରର କେଦାରରେ ସୂର୍ଯ୍ୟମୁଖୀ ଫୁଲଗୁଡ଼ାକ ବୃଦ୍ଧସୂର୍ଯ୍ୟଙ୍କୁ ଦେଖି ଏମିତି ହୋ-ହୋ ହୋଇ ହସିବାଟା ମୋତେ ନିତାନ୍ତ ଅସହ୍ୟ ମନେ ହେଉଥିଲା ।

ନାଁ, ମୁଁ ଆଉ ଘରେ ବସିପାରିବି ନାହିଁ, ଡ୍ରଇଁରୁମ୍‌ରୁ ବେତ ଚୌକିଟାକୁ ଭିଡ଼ିଆଣି ମୁଁ ଘର ଆଗରେ ଥିବା ଲନ୍‌କୁ ଚାଲିଗଲି ପେପର୍ ଖଣ୍ଡିକ ଧରି ବସିପଡ଼ିଲି । ନାଁ ପେପର୍ ପଢ଼ାରେ ବି ଆଜି ମନ ଲାଗୁନି । ୟା ଭିତରେ ମୋ ମୁଣ୍ଡରେ ଦୁଇ ଚାରିଥର ହାତ ମାରି ସାରିଲିଣି । ଉଚ୍ଚକପାଳରେ ଥିବା ପତଳା ଚୁଟି ଦି'କେରା ମୋର ପଚାଶ ବର୍ଷର ଅଭିଜ୍ଞତା, ପରିପକ୍ୱତା ବିଷୟରେ ବଖାଣିବାକୁ ବହୁତ ଭଲ ପାଆନ୍ତି ବୋଲି ମୁଁ ଧରିନିଏ । କାହିଁକି କେଜାଣି, ବେଳେବେଳେ ଏଭଳି ଅଯୌକ୍ତିକ କଥାଗୁଡ଼ାକ ମୁଣ୍ଡରେ ପକାଇ ଉପରକୁ ଅନାଇ ସେଗୁଡ଼ାକୁ ପାକୁଳାଇବା ପାଇଁ ଆରମ୍ଭ କରେ !

ମୋତେ ଆଜି ମୋଟେ ଭଲ ଲାଗୁନି । ପ୍ରତିଦିନ ଉପରବେଳା ମୋତେ ଭାରି ଭଲ ଲାଗେ । ଆଜି ଏ ବ୍ୟତିକ୍ରମ କାହିଁକି ? ପାଖରେ ଅଣ୍ଟା ଭାଙ୍ଗି ଛିଡ଼ା ହୋଇଥିବା ଗୁଳ୍ମରୁ ଦି'ଟା ପତ୍ର ଛିଣ୍ଡାଇ ଆଣିଲି ! ତାକୁ ଆଙ୍ଗୁଠିରେ ଦଳି ମକଚି ଦେଲି । ଶୁଙ୍ଘିଦେଇ ପୁଣି ଫିଙ୍ଗିଦେଲି । ଏହା ମୋର ବହୁତ ପୁରୁଣା ଅଭ୍ୟାସ, ନାଁ....ମୋତେ ମୋର ମୁଡ୍ ଫେରାଇ ଆଣିବାକୁ ପଡ଼ିବ ।

ମୋର ଦୃଷ୍ଟିକୁ ଉପରୁ ଅନାଇଥିବା ଆକାଶରେ ହଜାଇଦେଲି । ଚେନାଏ ସୂର୍ଯ୍ୟ ଦୂରଦିଗନ୍ତ ଉହାଡ଼ରେ ବୁଡ଼ିଯିବାକୁ ବସିଲାଣି । ଲନ୍‌ର ସେପଟ କୋଣରେ ସୋରାଏ ସୂର୍ଯ୍ୟାଲୋକ ଲୋଟିପଡ଼ିଥାଏ ଅବାଧ ଶିଶୁ ଭଳି । କାଗଜ ଉପରେ କାଳି ବିଞ୍ଛହୋଇ ଯିବାଭଳି ଦଳଦଳ ପକ୍ଷୀ ଉଡ଼ିଯାଉଛନ୍ତି ସେମାନଙ୍କର ନୈଶ ବାସକୁ ।

ଲନ୍‌ରେ ପଡ଼ିଥିବା ସୂର୍ଯ୍ୟାଲୋକ କେଉଁଠି ପଡ଼ିଥାଏ ତ ପୁଣି କେଉଁଠି ପଡ଼ିନଥାଏ । ଠିକ୍ ଶରତ ଋତୁର ଖରା -ଛାଇ ଖେଳ ଭଳି ଲାଗୁଥାଏ ।

ଖରା - ଛାଇ ! ଛାଇ - ଖରା !!

ପାପ - ପୂଣ୍ୟ ! ପୁଣ୍ୟ - ପାପ !!

ବୋଧହୁଏ ଏହାହିଁ ଦୁନିଆର ଚିରନ୍ତନ ସ୍ୱୀକାର୍ଯ୍ୟ ! ହଠାତ୍ ଦଳେ ଧଳା ପାରା ମୋତେ ଏ ଭାବନାରୁ ମୁକ୍ତ କଲେ । ସେମାନେ ମୋ ଛାତ ତଳେ ଥିବା ପେଟି ପାଖକୁ ଉଡ଼ିଆସୁ ଆସୁ ଗୁମୁରି ଉଠିଲେ । ସତେ ଅବା ଢ଼ଳିଢ଼ଳି ପେଟି ଉପରେ ବସି ଦିନଯାକର ହାଲିଆରେ ନିଦରେ ହଜୁହଜୁ ଗୁମୁରେଇବା ଶବ୍ଦରେ କାନ୍ତିଶ୍ରାନ୍ତିକୁ ପ୍ରକାଶ କରୁଥିଲେ ।

ମୁଁ ପୁଣିଥରେ ପେପର୍ ଉପରେ ଆଖି ପକାଇଲି । ନାଲ୍‌କୋ ଘରୋଇକରଣ, ବଜାରରେ T.V.S ଗାଡ଼ିର ଚାହିଦା ଏସବୁକୁ ଅନାଗ୍ରହ ସତ୍ତ୍ୱେ ପଢ଼ିବାକୁ ମୁଁ ବାଧ୍ୟ ହେଉଥିଲି ।

ଏତିକିବେଳେ ମୋର ଆଖି ପଡ଼ିଲା ଗୋଟିଏ ପ୍ରଜାପତି ଉପରେ । ସେ ମୋ ଧୋତି ଆଡ଼କୁ ଉଡ଼ି ଆସୁଥିଲା, ପୁଣି ପଡ଼ିଯାଇଥିଲା । ତା' ସାଙ୍ଗସାଥୀ ସବୁ ଫେରିଗଲେଣି । ସେ ବାଟବଣା ହୋଇରହି ଯାଇଛି । ଛୋଟ ପ୍ରଜାପତି । ରଙ୍ଗୀନ୍ ପ୍ରଜାପତି - ପିଠିରେ ଚିତାବାଘର ଶରୀର ସ୍ପଷ୍ଟ ଦୃଶ୍ୟମାନ, ସତରେ ଏହା ମୋତେ ଖୁବ୍ ଆନନ୍ଦ ଦେଲା ।

ମୋ ସାନପୁଅଟା ଏତିକିବେଳେ ମୋର ଦୃଷ୍ଟିଅନ୍ତରାଳେ କ'ଣ ଗୋଟାଏ ଧରି ଖସିଯିବାକୁ ଚେଷ୍ଟା କରୁଥିଲା; କିନ୍ତୁ ମୁଁ ତାକୁ ଠିକ୍ ଠଉରାଇ ନେଲି ।

''କିରେ ! କୁଆଡ଼େ ?'' ମୁଁ ସନ୍ଦେହ ମିଶା ଆଖିରେ ଚାହିଁଲି ''ନାଇଁ, କିଛି ନାହିଁ ବାପା ! ଏମିତି .... ।'' କିଛି କଥା ତା'ପାଟିରୁ ବାହାରିବାର ଉପକ୍ରମ ହୋଇ ପୁଣି ସମାପ୍ତ ଘଟିଲା ।

''ମାନେ ? କ'ଣ ଧରିଛୁ ସେ'ଟା ? ଦେଖି ।'' ମୁଁ ରାଗିବାର ଅଭିନୟ କଲି ।

ଆଗେଇଯାଇ ଦେଖିଲି ଉପନ୍ୟାସ ବହିଖଣ୍ଡେ ଧରି ମୋ ଆଡ଼କୁ ଭୟମିଶା ଆଖିରେ ଚାହିଁଛି ।

ଅବଶ୍ୟ ଗଳ୍ପପୁସ୍ତକ, ଉପନ୍ୟାସ ପାଇଁ ମୋର ହାଇସ୍କୁଲ ଜୀବନରୁ ଗୋଟାଏ ଦୁର୍ବଳତା ଥିଲା । କିନ୍ତୁ ମୋ ପୁଅ ଏତେ କମ୍ ବୟସରେ ଏ ଅଭ୍ୟାସକୁ ଆପଣେଇ ନେଉ- ଏକଥା ମୁଁ ଚାହୁଁ ନଥିଲି ।

ତାକୁ ହେଇହେଇ ବୟସ ସତର ହେବ । ମୋ ବଡ଼ ପୁଅର ଭାରି ଇଛା ଯେ ଟିକିଏ ଭଲ ପଢ଼ିଲେ ଏକୁ ନେଇ ସେ ଥିବା କମ୍ପାନୀରେ ରଖେଇ ଦେବ । ବଡ଼ପୁଅ ! ଦିଲ୍ଲୀରେ ଚାକିରୀ କରିଛି । ମୋଟା ଅଙ୍କର ଦରମା । ଏଟୋକା କ'ଣ ସେକଥା ବୁଝୁଛି । ୟାର ସାହିତ୍ୟ କହିଲେ ଜୀବନ ଯାଉଛି କି ଆଉଚି ।

ଅବଶ୍ୟ ତା'ର କିଛି କିଛି ଗଳ୍ପ, କବିତା କେତେକ ପତ୍ର ପତ୍ରିକାରେ ପ୍ରକାଶିତ ହେଲାଣି । ତେଣୁ, ତା'ର ଆତ୍ମବିଶ୍ୱାସଗୁଡ଼ାକ ଜମାଟ ବାନ୍ଧିଯାଇଛି । ଗୋଟାଏ ଚେଷ୍ଟା ଚଳେଇଛି । ହେଉ ...... ।

ମୁଁ ବେଳେବେଳେ ଏମିତି ବସିବା ଉଠିବା ବେଳେ ଏ ବିଷୟରେ ତାକୁ ମାନସିକ ଖୋରାକ ପୁଳାଏ ଯୋଗାଇଦିଏ; କିନ୍ତୁ ପାଠପଢ଼ା ପ୍ରଥମେ । ତା'ପରେ ଆଉ ଯାହାକିଛି - ଏକଥା କହିବାକୁ ଭୁଲିନଥାଏ ।

କାରଣ, ମୋ ମତରେ ଆଜିକାଲି ଗାଳ୍ପିକ, ଔପନ୍ୟାସିକ ସର୍ବୋପରି ସାହିତ୍ୟିକମାନେ ସମ୍ମାନ ପାଇପାରନ୍ତି । କିନ୍ତୁ ବଞ୍ଚିବାର ଖୋରାକ ପାଇବେ କେଉଁଠୁ ? ସାହିତ୍ୟ ଆଜି ବୁଡ଼ିବାକୁ ବସିଛି । ଆମର ଲେଖକ ବହୁତ ! କିନ୍ତୁ ତା' ତୁଳନାରେ ପାଠକ ସଂଖ୍ୟା ନଗଣ୍ୟ । ବୋଧହୁଏ ଯେଉଁମାନେ ଲେଖକ ସେଇମାନେ ହିଁ ପାଠକ ।

ଏ ଭିତରେ ସେ କେତେବେଳେ ଭିତରକୁ ଚାଲିଗଲାଣି । ମୁଁ ମୋ ରୁମ୍‌କୁ ଯିବାକୁ ବାହାରିଲି । କାରଣ ସନ୍ଧ୍ୟା ହୋଇ ଆସୁଥିଲା । ଏଣେ, ମଶାମାନଙ୍କ ଉପଦ୍ରବ ମଧ୍ୟ ଆରମ୍ଭ ହୋଇଗଲାଣି ।

ସନ୍ଧ୍ୟାବେଳର ନିତ୍ୟକର୍ମ ବେଳେ ହାଲୁକା ହାଲୁକା ହାଓ୍ୱାରେ ଦୂରରୁ ବିଲୁଆ ସମାଜର ସନ୍ଧ୍ୟାହେବାର ଘୋଷଣା ଶୁଣୁଥିଲି । ସେମାନେ ଜାଣିଥିବେ କ'ଣ ସେମାନଙ୍କର ଅଭିବ୍ୟକ୍ତି ?

ଧୀରେଧୀରେ ରାତ୍ରିର ବୟସ ବଢ଼ିବାକୁ ଲାଗିଲା । ଅନ୍ଧାର ବହଳିଆ ହେଲା, ଗଳିକନ୍ଦି, ରାସ୍ତାଘାଟ, ପାହାଡ଼ ପର୍ବତ ସମସ୍ତଙ୍କ ଉପରେ । ଝରକାରେ ବାହାରକୁ ଚାହିଁବାବେଳକୁ ଦୂରର ଶାଳବନସ୍ତ ଉପରୁ ସନ୍ତ୍ରାନ୍ତ, ସ୍ୱର୍ଣ୍ଣକାତର ଜହ୍ନଟା ଉଠୁଥିଲା । ସବୁଦିନ ତ ଜହ୍ନ ଏମିତି ଉଠେ; କିନ୍ତୁ, ଆଜି ଜହ୍ନ କାହିଁକି କୌଣସି ବାଦଲ ଉହାଡ଼ରେ ଲୁଚି ଯାଉନଥିଲା । ତେଣୁ, ମୁଁ ତାକୁ ସ୍ୱର୍ଣ୍ଣକାତର ବୋଲି ଧରି ନେଲି ।

ରାତିଟା ବି ଜୋର୍‌ରେ ମାତିଥିଲା । ରାତିର ସେଇ ଭିନ୍ନ ଚିତ୍କାର ମୋତେ ଭୀତତ୍ରସ୍ତ କରୁଥିଲା; କିନ୍ତୁ ସ୍ୱଚ୍ଛ ଚନ୍ଦ୍ରକିରଣକୁ ନୁହେଁ । ମୋତେ ଲାଗେ, ପୂର୍ଣ୍ଣିମା ଆଖପାଖ ପଡ଼ୋଶୀ ରାତିମାନଙ୍କରେ ଚନ୍ଦ୍ରକିରଣ ଖୁବ୍ ନିର୍ଭୀକହୋଇ ଯାଏ । ଖେଦିଯାଏ ଚଉଦିଗ ।

ହଠାତ୍ ମୋର ଟୋକାଟା କଥା ମନେପଡ଼ିଲା ।

ତା' ବୋଉ କେତେବେଳକୁ ରେଜେଇ ଘୋଡ଼ିହୋଇ ଶାନ୍ତିର ବାର୍ତ୍ତାବହ କେତୁଟା ଘୁଙ୍ଗୁଡ଼ି ମାରି ଶୋଇପଡ଼ିଲାଣି । ଟୋକାଟାର କାଲି ପରୀକ୍ଷା ଅଛି । ପ୍ରଥମ ସିଟିଂ ସାହିତ୍ୟ ଅଛି । ଯାଇ ଦେଖେ, କ'ଣ କରୁଛି ?

ମୁଁ ଯାଇ କବାଟ ଫାଙ୍କରେ ଚାହିଁବା ବେଳକୁ ସେଇ ଉପନ୍ୟାସ ଖଣ୍ଡକୁ ଆଡ଼େଇ ପଢୁଛି । କିନ୍ତୁ 'ଗଦ୍ୟମାଧୁରୀ' ବହିଖଣ୍ଡକ ଟେବୁଲ୍ ଉପରେ ପଡ଼ି ଅଝଟ କରୁଛି ।

ମୋତେ ଦେଖି ଛେପ ଢ଼ୋକି ଦେଲା !......ମୁଁ ମନେ ମନେ ରାଗି ଗଲି । ପାଖକୁ ଯାଇ ବହିଟା ଭିଡ଼ି ଆଣିଲି । ସେ କରିବ କ'ଣ ? ଓଲଟି ମୋତେ କହୁଛି । ''ବାବା ! ଏଇଟିନାଁ, ଓଡ଼ିଶାର ପ୍ରଖ୍ୟାତ କଥାଶିଳ୍ପୀ ଡଃ ରତିକାନ୍ତ ନାୟକଙ୍କର ସର୍ବଶ୍ରେଷ୍ଠ କୃତି 'ଝଡ଼ା ବଉଳ' (ଯାହାକି ଗତବର୍ଷ ସରସ୍ୱତୀସମ୍ମାନ ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲା) ।

ହଠାତ୍ ମୁଁ ଚମକି ପଡ଼ିଲି । ଖେଳିଗଲା ଆଶ୍ଚର୍ଯ୍ୟର ଢ଼େଉ, ଲହଡ଼ି ଭାଙ୍ଗି ଚାଲିଲା-ମୋ ନଖରୁ ମସ୍ତିଷ୍କ । ନାଁଟା କେମିତି ଚିହ୍ନାଚିହ୍ନା ଲାଗୁଛି ।

ମୁଁ ଆଉଥରେ ପଢ଼ିଲି । ଆଉଥରେ ପଢ଼ିଲି ।

ଚିତ୍କାର କରିଉଠିଲି ରତିକାନ୍ତ ନାୟକ....... । ଆରେ ହେ ! ଏତ ମୋର କଲେଜ୍ ପଢ଼ାବେଳର ସାଙ୍ଗ ।''

ମୋ ପୁଅ ଅପଲକ ନୟନରେ ମୋ ଆଡ଼କୁ ଚାହିଁଥାଏ । ମୁଁ ରତିକାନ୍ତ ସହିତ ମୋର ଘନିଷ୍ଠତାକୁ ସ୍ପଷ୍ଟଭାବେ ବୁଝାଇଲି ।

ପାଠପଢ଼ାବେଳେ ବିସେ ଗଳ୍ପ, କବିତା ଲେଖେ, କେତେଥର ମୁଁ ତାକୁ ମନାକରିଛି, ଆରେ କ'ଣ ମିଳିବ ସେଥିରୁ । ଚାରିପାଖରୁ କୌଣସି ଗଳ୍ପର ପ୍ଲଟ୍ ଖୋଜୁଥାଏ ।

ଆମବେଳର କଲେଜ୍‌ର ପ୍ରାଚୀର ପତ୍ରିକା ''ପ୍ରତିବିମ୍ବ''ର ସେ ମୁଖ୍ୟ ସମ୍ପାଦକ ଥିଲା । ଯାହାକି, ଅନେକ ଯୁବପ୍ରତିଭାକୁ ଖୋଜି ପାରିଥିଲା ।

ମୋ ପୁଅ ସେମିତି ଆଁଟା କରି ଚାହିଁଥିଲା । ଅବାଟରେ ମୁଣ୍ଡ ଟେକିଥିବା କୌଣସି ଗଛର ଗଣ୍ଡିରେ ଜନ୍ମ ନେଇ ନିଜକୁ ଅଭିଶପ୍ତ ମଣୁଥିବା ପରିତ୍ୟକ୍ତ କୋରଡ଼ ଭଳି ।

ମୋତେ ଏତେ ଆନନ୍ଦ ଲାଗୁଥିଲା ଯେ ମୁଁ ହସୁଥିଲି ....ହୋ .....ହୋ.....ହୋ

x x x x

ହଠାତ୍ ମୋ ନିଦ ଭାଙ୍ଗିଗଲା କାହାର ଟଣାଓଟରାରେ । ଆଖି ଖୋଲିବାବେଳକୁ ଦେଖିଲି, ମୋ ରୁମ୍‌ମେଟ୍ ସଂଜୟଭାଇ ମୋତେ ପଚାରୁଛନ୍ତି ''କ'ଣ ହେଲା ବିଭୂ ?'' ସ୍ୱପ୍ନ ଦେଖିଲୁ କି ? ''

ମୁଁ ମୋ ଦେହକୁ ଚିମୁଟିଲି । ଆରେ ହେ ! ମୁଁ ସ୍ୱପ୍ନ ଦେଖୁଥିଲି ରେ । ମନେ ମନେ ଲଜ୍ଜିତ ଅନୁଭବ କଲି ।

ବାହାରକୁ ଚାଲି ଆସିଲି । ମନେ ମନେ ହସୁଥିଲି । ଅକାଶରେ ମଲାମାଛର ଆଖି ଭଳି ମଳିନ ପଡ଼ି ଆସୁଥିବା ତାରାମାନେ ମୋତେ ଦେଖି କ'ଣ କଥା ହେଉଥିଲେ । ମୋତେ ଠିକ୍ ସେ ଶୁଣାଯାଉ ନଥିଲା । ମୁଁ ଠିଆହୋଇ ଲକ୍ଷ୍ୟ କରିଥିଲି ଦୂରରେ କୁଣ୍ଡଳାକୃତି ଖେଳାଉଥିବା ବୃକ୍ଷ ପାଞ୍ଝୋଟିଯାକ ଧୂଆଁଳିଆ ଦିଶୁଛନ୍ତି । ଆକାଶର ମୁହଁଟା ଦିଶୁଥିଲା ଅସ୍ୱାଭାବିକ ଗୋରା ! ମୁଁ ଅନୁଭବ କରୁଥିଲି ରାତ୍ରିର ମୋ ପ୍ରତି ରୁଚିହୀନ ବିଦ୍ରୁପ ''ଯା, ଶୋଇପଡ଼୍, ସକାଳ ହେବାକୁ ଅନେକ ବାକି'' ।

ସକାଳୁ ମୁଁ ଏକଥା ରତିକାନ୍ତ ଆଗରେ ବର୍ଣ୍ଣନା କଲି । ଏକଥା ଶୁଣି ସେ ହସିଥିଲା, ମୁଁ ହସିଥିଲି, ସଂଜୟଭାଇ ମଧ୍ୟ ହସୁଥିଲେ । ଆମ ସମସ୍ତଙ୍କୁ ଦେଖି ପ୍ରାଚ୍ୟାକାଶରେ ସକାଳୁ ସଜବାଜ ହୋଇ ବାହାରିଥିବା ସୂର୍ଯ୍ୟ ବି ହସୁଥିଲେ ।



# ଜହ୍ନ ଓ କଇଁଫୁଲ କଥା

ପ୍ରଫୁଲ୍ଲ କୁମାର ପଣ୍ଡା
+୩ ପ୍ରଥମ ବର୍ଷ ବିଜ୍ଞାନ (ଭୂତତ୍ତ୍ୱ ସମ୍ମାନ)

ପୋଖରୀର ପାଣି ଅକସ୍ମାତ ସ୍ଥିର ହୋଇଯିବାର ଦେଖି କଇଁଫୁଲଟି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା ।

ନିଜର କଇଁ କଇଁ କାନ୍ଦପାଇଁ କଇଁଫୁଲ ନିଜକୁ ଦୋଷାରୋପ କଲା । ନିଜର ଦୋଷ କଥା ଭାବି ନିଜକୁ ଦଣ୍ଡିତ କରିବାକୁ ଚାହିଁଲା । ଏଣୁ ଦଣ୍ଡପାଇଁ ଟୋପାଏ ଲୁହ ଯେ ଯଥେଷ୍ଟ ଏପରି ବିଶ୍ୱାସ ବି ହେଲା ।

ଟୋପାଏ ଲୁହପାଇଁ ଯେତେ ଚେଷ୍ଟା କଲେ ମଧ ଲୁହ ଟୋପେ ବାହାରିଲା ନାହିଁ । ଲୁହ ଟୋପାଏ ନ ବାହାରିବା ଯୋଗୁ ଦଣ୍ଡିତ ହେଇପାରୁ ନଥିବାରୁ ମନର କଷ୍ଟ କ୍ରମଶଃ ତାଳୁରୁ ତଳିପାଯାଏ ସଂଚରିବାକୁ ଲାଗିଲା ।

ଲୁହଟୋପେ ବାହାରିଥିଲେ କ'ଣ ହୋଇ ଥା'ନ୍ତା କି ? ଲୁହଟୋପାକ ସେଇ ସ୍ଥିରପାଣିରେ ବର୍ଷାବିନ୍ଦୁ ଭଳି ଖସି ପଡ଼ିଥାନ୍ତା । ସ୍ଥିରପାଣି ଅସ୍ଥିର ହୋଇଯାଆନ୍ତା । ଅସ୍ଥିର ପାଣି ସହିତ ହାତ ମିଳେଇ ଜହ୍ନ ବି ଅସ୍ଥିର ହୁଅନ୍ତା ।

କଇଁଫୁଲଟି ଜାଣେ ଜହ୍ନ ଆଦୌ ବେଶୀ ଦୂରରେ, ନାହିଁ । ହାତପାଆନ୍ତାରେ ଅଛି; କିନ୍ତୁ ହାତ ଥିଲେ ତ ! ହାତ ନଥିବା ମନଟି ପାଇଁ ହାତପାଆନ୍ତା ଦୂରତା ଗୋଟେ ପୁଣି କ'ଣ ? ମନ ଗୋଟେ ଅରଣ୍ୟ । ଅରଣ୍ୟରେ ସବୁକିଛି ଥିବାପରି ମନରେ କେତେ କ'ଣ ଥାଏ । ଏଇ ମନଟି ଯାହାର ହେଉନା କାହିଁକି କିଛି ଯାଏ ଆସେ ନାହିଁ ।

ନିଜକୁ ପ୍ରେମିକ ବୋଲି ଦାବିକରୁ ଥିବା କଇଁଫୁଲଟି ଅସ୍ଥିର ପାଣିରେ ପ୍ରେମିକ ଜହ୍ନର ଯେଉଁ ରୂପ ଦେଖେ, ସ୍ଥିର ପାଣିରେ ଠିକ୍ ସେଇ ରୂପ ଦେଖେନା । ଏଣୁ କଇଁ ଫୁଲଟି ଏତେ ଦୁଃଖପାଏ ଯେ ସ୍ଥିର ପାଣିକୁ ଅସ୍ଥିର, କରି ନଦେବା ଯାଏ ନିଦ ଭୁଲିଯାଏ ।

ସେଦିନ କିନ୍ତୁ କଇଁଫୁଲଟି ଅଂଗେ ନିଭେଇଲା ଯେ, ନିଦଭୁଲିଯିବା ଯେତିକି ସହଜ, କାନ୍ଦି କାନ୍ଦି ଲୁହଟୋପେ ଗଡ଼େଇବା ସେତିକି ଅସହଜ । ତଥାପି ସହଜ କାମଟି ପାଇଁ ମନ ଯେତେ ସତର୍କ ନୁହେଁ, ଅସହଜ କାମଟି ପାଇଁ ସେତେ ସତର୍କ କାହିଁକି ? କାହିଁକି ଅସହଜ ଆଡ଼କୁ ମନ ଏଡ଼େ ସହଜରେ ଆଗେଇଯାଏ ?

ଏଣୁ ହାତପାଆନ୍ତାର ଦୂରତାକୁ ଅନେକ ଦୂରବୋଲି ଯୁକ୍ତି ଦେଇ କଇଁଫୁଲଟି ମୁହଁ ଉଠାଇ ଉପରକୁ ଅନାଇଲା । ଦେଖିଲା, ପୋଖରୀର ନିର୍ମଳ ପାଣିଠୁ ଆହୁରି ନିର୍ମଳ ଗୋଟେ ଆକାଶ । ରାତି ହେଲେ କ'ଣ ହେବ, ଟିକି ଟିକି ତା'ରା ମାନେ କାକର ଭିଜା ସତେଜ ଫୁଲ ପରି ଜୀବନ୍ତ ଦିଶୁଛନ୍ତି । ଜହ୍ନର ଚେହେରା ପ୍ରେମିକଟେ କରି ଖୁବ୍ ସରଳ ଦିଶୁଚି । ହସ ହସ ମୁହଁଟି ଦେଖାଇ ଜହ୍ନ ଯେମିତି ଆଖିଠାରି ଡାକୁଛି, ଆସ, ଆଉଟିକେ ପାଖେଇ ଆସ ।

କଇଁ ଫୁଲଟିର ଅବଶ ଦେହ କଡ଼ ଲେଉଟାଇଲା ।

କଡ଼ ଲେଉଟାଇଲା ବେଳେ ଲାଗିଲା ତଡଲା କରେଇରେ ପଡ଼ି ଶେଷଥର ପାଇଁ ଛଟପଟ ହେଉଥିବା କଉମାଛ ପରି ମନଟା ଯେମିତି ନୂଆ ଏକ ଆଲିଙ୍ଗନ

ଲାଭକଲା । କଇଁଟି ମନେମନେ ଆହୁରି ଅଧିକ ଖୁସି ହୋଇଗଲା । ଅଜାଣତରେ ଏପରି ଖୁସି ଅନୁଭବ କରି ପ୍ରେମିକ ଜହ୍ନର ଆଖିଠାର ପାଇଁ ଲାଜେଇ ଲାଜେଇ ମୁରୁକି ମୁରୁକି ହସିଲା ।

ଏହାପରେ, କଇଁକୁ ଜଣାଗଲା ପୂର୍ବପରି ଆଉ ଅବଶ ଲାଗୁ ନାହିଁ । କାହିଁକି ଅବଶ ଲାଗୁନାହିଁ ତାହାର କାରଣ ଯେ ଏତେ ସହଜ ଓ ଏତେ ପାଖରେ ଏହା ଜାଣି କଇଁର ଦେହ ଓ ମନ ଏକ ନୂତନ ରୋମାଞ୍ଚରେ ଭରିଗଲା । ବୁଝିଲା ବେଳକୁ ତା'ର ହସ ହେଉଛି ଏକମାତ୍ର କାରଣ ।

ଏଥର, କଇଁ ନିଜକୁ ଦୋଷ ଦେବା ଆଗରୁ ଜହ୍ନକୁ ଦୋଷଦେଲା । ନିଜ ଦୋଷପାଇଁ ଦଣ୍ଡିତ ହେବା କଥା ଭୁଲି, ଏ ଯାଏ ଜହ୍ନ କାହିଁକି ଆଖିଠାରରେ, ମନ କଥା କହି ନଥିଲା; ସେଥିପାଇଁ ଜହ୍ନର ଦୋଷ ବୋଲି ଧରିନେଲା ।

ଜହ୍ନର ଦୋଷବାହାର କରି ଜହ୍ନଉପରେ, ଅଭିମାନ ଲଦିଦେବା ବେଳକୁ କଇଁର ମନରେ, କେତେ କେତେ ଅଳିଆ ଠୁଳ ହୋଇଗଲା । କଇଁ କଇଁ ହୋଇ କାନ୍ଦିବା ଓ ଲୁହ ଟୋପେ ଗଡ଼େଇବା ପାଇଁ ଶତଚେଷ୍ଟାରେ ରହି କଇଁଟି ଅନେକ ସମୟ ନଷ୍ଟ କରିଦେଇ ଥିବାରୁ ଅନୁତାପ କଲା । ଏଇମିତି କିଛି ଦୋଷ, କିଛି ଅଭିମାନ ଓ କିଛି ଅନୁତାପ ପିଠି ଉପରର ଓଜନିଆ ବୋଝପରି ପାଦଦୁଇଟିକୁ ଅଚଳ ଓ ଗୋଦରା କରି ଦେଲା ଯେ, କଇଁଟି ଆଉ ଆଗଭଳି ସ୍ୱାଧୀନ ହୋଇ ରହିଲାନାହିଁ । ଜେଲ ଭିତରେ ଥିବା କଏଦୀଟେ ଭଳି ନଜର ବଂଦୀ ହୋଇ ରହିଲା ।

ଅର୍ଥାତ୍; ଜହ୍ନ ପାଖରୁ ମୁହଁ ଫେରାଇ ଆଣି ତଳକୁ ମୁହଁ ପୋତି ରହିଲା । ପାଣିକୁ, ପବନକୁ, ଆକାଶକୁ ନ ଚାହିଁବାର ପଣକରି ଆଖି ବନ୍ଦ କଲା ଯେ କାହାରିକୁ ଦେଖିବ ନାହିଁ ବୋଲି ଗୋଟେ ନିଦା ଶପଥ କଥା ମନେ ପକାଇଲା । ହେଲେ ହେଲାନାହିଁ ।

ହେଲାନାହିଁ ମାନେ ଆଖିଥାଇ ଅନ୍ଧ ହେବ କେମିତି ?

ଏଣୁ ଆଖି ଅଛି ବୋଲି ଚାହିଁଲା । ଚାହିଁଲା ତ ସବୁଆଡ଼େ ଜହ୍ନ । ପାଣିରେ, ପବନରେ ଆକାଶରେ ଓ ସବୁଆଡ଼େ । ସବୁଆଡ଼େ ଜହ୍ନ ଆଉ ଜହ୍ନ ।

ଜହ୍ନର ଆଖିଠାର କଇଁକୁ ପାଗଳୀ କରିଦେଲା । କଇଁଟି ନିଜ ଜାଣିବାରେ ବି ପାଗଳୀ ହେଲା । ଜହ୍ନକୁ ଲୁଚି ଲୁଚି ଚାହିଁଲା । ହସିଲା, ଗପିଲା । ଲୁହ ଆଉ ହସ ଏକା ପରି ନୁହେଁ ବୋଲି ଜାଣିପାରିଲା ।

ପରେ ପରେ କଇଁଟି ମଧ ବୁଝିବାକୁ ସକ୍ଷମ ହେଲା ଯେ, ଲୁହ କେବେବି ଗୋଟେ ପ୍ରକାରର ନୁହେଁ । ଗୋଟେରୁ ଅଧିକ ପ୍ରକାର ଲୁହର ସଂଜ୍ଞା । ଗୋଟେ ହେଲା ସତ ସତିକା ଲୁହ ଓ ଅନ୍ୟ ଗୋଟେ ହେଲା ଛଳନା ଅର୍ଥାତ୍ କୁମ୍ଭୀର କାନ୍ଦଣା । ତେବେ ଆଜିକାଲି ସତ ସତିକା ଲୁହ ଦେଖି କେହି ଲୁହ ପୋଛିଦେବା ପାଇଁ ଆଗେଇ ଆସିବା କଥା ଭୁଲିଯାଉଛନ୍ତି । ଛଳନା ଅଥବା କୁମ୍ଭୀର କାନ୍ଦଣା ଲୁହ ଦେଖି ଅନେକ ଆଗେଇ ଆସୁଛନ୍ତି । ଆଉ ଏଇ ଘଟଣା ଯେ ମଣିଷର ମାନଙ୍କଠାରେ ବେଶୀ ଘଟୁଛି ଏ କଥା କଇଁଟି ଅଳ୍ପ ଅଳ୍ପ ବୁଝିବାକୁ ଆରମ୍ଭ କଲା ।

ଲୁହ ପରେ ହସର ସଂଜ୍ଞା ବୁଝିବାକୁ ଯାଇ କଇଁଟି ଜାଣିବାକୁ ପାଇଲା ଯେ, ହସ ମଧ ଅନେକ ପ୍ରକାରର । ନିଜେ ନିଜେ ହସିବା ଓ ଅନ୍ୟ ଜଣେ ହସୁଥିବାର ଦେଖି ନିଜେ ହସିବା ଏକାପରି ନୁହେଁ । ତେବେ ନିଜେ ହସିବାରେ ମନ ଫୁର୍ତ୍ତି ହେବା ଓ ଦେହ ହାଲୁକା ଲାଗିବାର ସୁଫଳ ଅନ୍ୟପ୍ରକାର ହସରେ ନାହିଁ । ଏମିତି ଘଟଣା ଯେ ବେଶୀ କେବଳ ମଣିଷମାନଙ୍କ ପାଖରେ, ଏହାର କିଛି କିଛି ଅଙ୍ଗେ ନିଭା ପ୍ରମାଣ କଥା ବି ମନେ ପଡ଼ିଲା ।

ଏତିକି ବେଳେ ମେଘ ଖଣ୍ଡେ କୁଆଡ଼େ ଥିଲା କେଜାଣି; ଉଡ଼ି ଉଡ଼ି ଆସି ଜହ୍ନକୁ ଘେରିଗଲା । କଇଁଟି ଜାଣିଲା କେମିତି କି ? ଲୁଚି ଲୁଚି ଅନେଇଲା ବେଳକୁ ଜହ୍ନର ହସ ହସ ମୁହଁ ଆଉ ଦିଶୁନି । କ'ଣ ହେଲା ବୋଲି ଜାଣିବାର ଇଚ୍ଛା ପ୍ରବଳ ହେଲା କଇଁର । ବେକ ସିଧା କରି ଆକାଶକୁ ଅନେଇଲା । ମେଘ ଆର ପାଖରେ ଜହ୍ନ ଲୁଚି ଯାଇଛି । ବୋଧହୁଏ ଛଟପଟ ହେଉଛି

ବାହାରିବାକୁ । କଇଁର ମନ ବୁଝିଲା ନାହିଁ । କେମିତି ଜହ୍ନର ମୁହଁ ଦେଖିବ, ସେ ପାଇଁ ଅନେକ ଚେଷ୍ଟା ବି କଲା । ତଥାପି ଦେଖି ପାରିଲାନି ।

ପାଣିକୁ ଅନେଇଲା । ପାଣି କେମିତି ଅସ୍ଥିର ହେବାକୁ ଆରମ୍ଭ କରୁଛି । କାରଣ କ'ଣ ଜାଣିବାକୁ ଚାହିଁଲା । ଜାଣିଲା ଯେ ପବନର ଗତି ବଢୁଛି । ମନେ ମନେ କଇଁଟି ଭାବିଲା, ଓ ! ଏପରି କଥା । ପବନ ତେବେ ପାଣିକୁ ଅସ୍ଥିର କରିବା ଚେଷ୍ଟାରେ ଅଛି । ଭଲ କଥା । ଏତିକି ବେଳେ କଇଁର ମନକୁ ପ୍ରଶ୍ନଟିଏ ଆସିଲା । ପ୍ରଶ୍ନଟି ହେଲା; ମେଘ ଖଣ୍ଡଟିକୁ ତ ଏଇ ପବନ ଜହ୍ନ ଉପରୁ ଉଡ଼େଇ ନେଇ ପାରନ୍ତା । ପାରୁ ନାହିଁ କାହିଁକି ? ଜହ୍ନର ଇଚ୍ଛା ନାହିଁ କି ଆଉ ?

ଜହ୍ନ କଥା ଭାବି ଭାବି କଇଁଟି ଦୁଃଖ ଅନୁଭବ କଲାବେଳେ ମଣିଷ କଥା ମନେ ପକାଇଲା । ମଣିଷତ ଦୁଃଖରେ ବି ହସିପାରୁଛି । ତେବେ ସେ କାହିଁକି ଏପରି ସମୟରେ ହସି ନ ପାରିବ । ଦୁଃଖୀ ନୁହେଁ, ସୁଖୀ ବୋଲି ନିଜକୁ ନିଜ ପାଖରେ ଦାବି କରି ନ ପାରିବ ?

ଏଣୁ ପାଣିକୁ ଅନେଇଲା ।

ପବନକୁ ଛୁଇଁଲା ।

ଆକାଶକୁ ଅନେଇଲା ।

ଯୁଆଡ଼େ ଦେଖିଲେ ସବୁଠି ଏକାପରି ଦିଶୁଛି ଜହ୍ନ । ପ୍ରେମିକ ଜହ୍ନ । ମନ ଖୋଲା ହସ ହସିବା ବେଳେ କଇଁଟି ନିଜକୁ ପ୍ରେମିକାଟେ ପରି ମନେ କଲା; ଆଉ ଦୁଇଜଣଙ୍କର ନିବିଡ଼ତା ଯେ ପ୍ରେମ ଏକଥା ବି ବୁଝି ପାରିଲା ।

ଆଉ ସେଇ ପୋଖରୀର ଅସ୍ଥିର ପାଣିକୁ ଅନେଇ କହିଲା; ସଖୀ ପବନ ! ତୁ ଯାଇ ଜହ୍ନ ଉପରୁ ସେଇ କଳାହାଣ୍ଡିଆ ମେଘ ଖଣ୍ଡଟିକୁ ଉଡ଼େଇ ନେଇଆ । ଏତକ କରି ସାରା ଜୀବନ ପାଇଁ ମୋର ପରମ ବାନ୍ଧବୀଟେ ହୋଇ ରହ । ଏକଥା ଶୁଣି ପବନ ଉଡ଼ିଗଲା ଜହ୍ନ ପାଖକୁ ।

କଇଁଟି ଅପେକ୍ଷା କରି ରହିଲା ପବନର ଫେରିବା ବାଟକୁ ।



# ରିଙ୍କୁର ପ୍ରଶ୍ନ

ଦୀପ୍ତିରଞ୍ଜନ ଜେଠୀ
+୩ ପ୍ରଥମ ବର୍ଷ ବିଜ୍ଞାନ (ରସାୟନ ବିଜ୍ଞାନ ସମ୍ମାନ)

ଗତବର୍ଷ ବଡ଼ଦିନ ଛୁଟିରେ ଶୀତଲ୍, ରିଙ୍କୁ ଓ ମୁଁ ପୁରୀ ଯାଇଥିଲୁ । ସବୁବେଳେ ରୁଟିନ୍‌ବନ୍ଧା କାମରେ ବ୍ୟସ୍ତ ଥିବାରୁ ଆମ ପରିବାର ପାଇଁ ଏଇଟା ଗୋଟେ ଛୋଟ ଅବସର ଥିଲା କହିଲେ ଭୁଲ୍ ହେବ ନାହିଁ । ଅଫିସ୍ କାମରେ ଆମେ ଦୁହେଁ ପ୍ରାୟ ସମୟ ବ୍ୟସ୍ତ ରହୁଥିବାରୁ ଏଇ 'ରିଙ୍କୁ' ପାଇଁ ଆମେ ଯେ ଯଥେଷ୍ଟ ସମୟ ଦେଇପାରୁନାହୁଁ, ତାହା କହିବା ଠିକ୍ ହେବ ।

ସେଦିନ ସକାଳୁ ପାଗ ପ୍ରାୟତଃ ଛାଇ ଛାଇଆ ଥିଲା । ତେଣୁ ଆମପାଇଁ ଯେ ଦିନଟା କିଛି ଅସୁବିଧା ହେବନି; ମୁଁ ଏକଥା ଭାବୁଥିଲି । ସେ ଯା'ହେଉ- ଦିନ ଏଗାରଟା ବେଳକୁ ଆମେ ପୁରୀରେ ପହଞ୍ଚି ସାରିଥିଲୁ । ପ୍ରୋଗ୍ରାମ ଅନୁଯାୟୀ ଜଗନ୍ନାଥଙ୍କ ମନ୍ଦିର ଦେଖିସାରିବା ପରେ ଆମେ ପାଖ ହୋଟେଲ୍‌ରେ ଲଞ୍ଚ୍ କରି ନେଇଥିଲୁ । ପ୍ରାୟ ଅପରାହ୍ନ ଦୁଇଟା ବେଳକୁ 'ସି ବିଚ୍' ଅଭିମୁଖେ ବାହାରିଲୁ । ଡିସେମ୍ବର ମାସର ଅପରାହଣ ହୋଇଥିବାରୁ ଏଠାରେ ପ୍ରାୟ ଗହଳି ଆରମ୍ଭ ହୋଇଯାଇଥିଲା । ଭାରତୀୟମାନଙ୍କ ଅପେକ୍ଷା ଯେ ଏଠାରେ ଅଣଭାରତୀୟମାନଙ୍କର ଭିଡ଼ି ପ୍ରବଳ ଭାବରେ ଜମିବାକୁ ଲାଗିଥିଲା । ଅଧା ଲଙ୍ଗଳା ଅନାବୃତ୍ତ ଶରୀର ପ୍ରଦର୍ଶନ କରି ବୁଲିବା ଯେମିତି ଏଠି ଗୋଟେ ସଉକ୍ ପାଲଟି ଯାଇଥିଲା । ଅନୁକରଣପ୍ରିୟ ଭାରତୀୟ ଗୋଷ୍ଠୀ ତ ଏଥିରେ ଆଗଭର । ବେଲୁନ୍‌ବାଲା, ଚେନାଚୁର୍‌ବାଲା, କଣ୍ଢେଇବାଲା, ଝାଲ୍ ମୁଢ଼ି ବିକାଳୀ, ସମୁଦ୍ର ପଥର ବିକାଳୀ ଆଦି କେତେ କିଏ ବହୁ ଆଗରୁ ବାଲି ଉପରେ ନିଜର ଆସ୍ଥାନ ଜମେଇ ସାରିଥିଲେ । ଏମାନଙ୍କର ପାଟିତୁଣ୍ଡରେ ବେଳାଭୂମି ଯେପରି ଉତ୍ସବ ମୁଖରିତ ହୋଇପଡୁଥିଲା । ପରିବେଶର ଗାମ୍ଭୀର୍ଯ୍ୟ ଯେ କେତେବେଳୁ ନଷ୍ଟ ହୋଇସାରିଥିଲା, ତା' ଆଉ କହିବା ବାକି ନାହିଁ ।

ଏହା ମଧ୍ୟରେ ଶୀତଲ୍ ଓ ମୋ ହାତ ଧରି ଆମ ଦୁହିଁଙ୍କ ମଝିରେ ଚାଲିଥିଲା ରିଙ୍କୁ, ପାଞ୍ଚବର୍ଷର ଅବୋଧ ବାଳକ । ତା'ର ଅସମାହିତ ପ୍ରଶ୍ନ ଯଦିଓ ଆମକୁ ବିରକ୍ତ କରୁଥିଲା, ତଥାପି ତା' ମନଲାଖି କିଛି ସନ୍ତୋଷଜନକ ଉତ୍ତର ଦେବାକୁ ହିଁ ପଡୁଥିଲା । ଅନେକ ସମୟରେ ସେ ମଧ୍ୟ କିଛି ବୁଝି ନପାରି ରାଗିଯାଉଥିଲା ଓ ଅନ୍ୟଆଡ଼େ ଆମର ଦୃଷ୍ଟି ଆକର୍ଷଣ କରୁଥିଲା । ତା' ମନ ବୁଝେଇବା ପାଇଁ ଆମେ ମଧ୍ୟ କେତେଥର ଯାଇ ପହଞ୍ଚି ସାରିଥିଲୁ କେତୋଟି ଖେଳନାବିକାଳୀଙ୍କ ପାଖରେ ତ କେତୋଟି ବେଲୁନ୍‌ବିକାଳୀଙ୍କ ପାଖରେ ।

ହଠାତ୍ ଗହଳି ମଧ୍ୟରେ ଏକ ସ୍ୱତନ୍ତ୍ରତା ଦେଖାଗଲା । ଜନ ସମୁଦ୍ରର ଏଇ ଗହଳି ଧୀରେ ଧୀରେ ସମୁଦ୍ରଠାରୁ ଦୂରେଇ ଯାଇ ଅନ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଦିଗରେ ଚାଲିଲା । ବେଲୁନ୍‌ବାଲା, ଚେନାଚୂରବାଲା, କଣ୍ଢେଇବାଲା ଠାରୁ ଆରମ୍ଭ କରି ସମସ୍ତେ ଦୌଡ଼ିଲେ ସେ'ଦିଗରେ । ଆଗନ୍ତୁକମାନେ ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଜାଗାରେ ଯାଇ ଭିଡ଼ ଜମାଇଲେ । ଉତ୍ସୁକତାବଶତଃ ଅମେ ମଧ୍ୟ ଚାଲିଲୁ ସେଇଆଡ଼େ ।

ପରିସ୍ଥିତି ଏକ ଗମ୍ଭୀର ରୂପ ଧାରଣ କରିସାରିଥିଲା । ପାଞ୍ଚ-ଛ' ବର୍ଷର ଦୁର୍ବଳ ପିଲାଟି ଉପରେ ଚାଲିଥିଲା ଏକ ବିରାଟକାୟ ବପୁବନ୍ତ ଲୋକର ଆକ୍ରମଣ । ଚଟକଣା, ବିଧା ବର୍ଷଣ କରିଚାଲିଥିଲା ସେ ସେଇ ନିରୀହ ଶିଶୁ ଉପରେ ।

''ଚୋର'' ! ମୋ ଦୋକାନରେ ଭିକାରୀ ହୋଇ ପଡ଼ି ରହିବ; ପୁଣି ଚୋରି କରିବ ।'' ଏତିକି କହି ସେ ପୁଣି ପିଟି ଚାଲିଥିଲା ପିଲାଟି ଉପରେ । ବିକଳରେ ପିଲାଟି ଜନସମୁଦ୍ରକୁ ଅନେଇ ରହିଥାଏ । ଯେମିତିକି ନିଜର ଜୀବନ ବଞ୍ଚାଇବା ପାଇଁ ସେ କାହାକୁ ଆକୁଳ ନିବେଦନ କରୁଛି । ଏ ଅବସ୍ଥାରେ କାନ୍ଦିବା ଦୂରେ ଥାଉ ସେ ଟିକେ ପାଟି କରିବା ମଧ୍ୟ ମୁଁ ଦେଖିନି । ସମସ୍ତେ

କେବଳ ନୀରବଦ୍ରଷ୍ଟା ସାଜି ଏ ଦୃଶ୍ୟ ଦେଖୁଥାନ୍ତି । ଛୁଆଟି ପାଇଁ କେତେକ ଅଲୋଡ଼ା ହତାଶ ଭାବ ମଧ ପ୍ରଦର୍ଶନ କରୁଥାନ୍ତି । କେତେକଙ୍କ ପାଟିରେ ସେଇ ଏକା କଥା– ''ଏଡ଼ିକି ବକଟେ ଛୁଆ, କେତେ ସାହସ ଦେଖ । ଚୋରୀ କରୁଛି ?''

ଏ ଘଟଣାଟି ମତେ କେମିତି ଅଡୁଆ ଅଡୁଆ ଲାଗୁଥାଏ । ଶୀତଲ୍ ଯଦିଓ ଏ ଦୃଶ୍ୟ ଦେଖି ନୀରବ ଥାଏ; କିନ୍ତୁ ରିଙ୍କୁ ''କୌଣସି ଏକ ବିଜ୍ଞାନସମ୍ମତ ପ୍ରଶ୍ନର ସମାଧାନ ଯେମିତି ଶୁଣୁଛି'', ସେମିତି ଧ୍ୟାନ ଦେଇ ଦେଖିଚାଲିଥାଏ ।

ହଠାତ୍ ଗହଳି ଭିତରୁ ଦଶ-ବାର ବର୍ଷର ଝିଅଟିଏ ବାହାରି ଆସିଲା । ମୁଣ୍ଡର ବାଳ ସଂପୂର୍ଣ୍ଣ ବିପର୍ଯ୍ୟସ୍ତ, କେଇ କେରା ମୁହଁ ଉପରେ ଆସି ପଡ଼ିଛି । ସତେ ଯେମିତି ଜନ୍ମରୁ ସେ ଦର୍ପଣ ସାମ୍ନାରେ ଠିଆ ହୋଇନି । ଆଖି ଦୁଇଟି ଭିତରକୁ ପଶି ଯାଇଛି । ମୁହଁ, ଓଠ ସଂପୂର୍ଣ୍ଣ ଶୁଖି ଯାଇଛି । ଆଣ୍ଠୁ ଲୁଚୁ ନଥିବା ଜାମାଟିଏ ପିନ୍ଧିଛି ସେ । ମଇଳା ଓ ଦୁଇ ଚାରିଜାଗାରେ ଯେପରି ବାରମ୍ବାର ସିଲେଇ ହୋଇଛି ସେଥିରେ । ଛାତି ଉପରକୁ କିଛି ଅଂଶ ଝାପ୍‌ସା ଝାପ୍‌ସା ଦେଖାଯାଉଛି ସେଥିରେ ଥିବା ଦୁଇ ତିନୋଟି ଚିରା ଜାଗା ଦେଇ ଦେଖଣାହାରୀଙ୍କ ଦୃଷ୍ଟି ଏବେ ତା' ଆଡ଼କୁ ଧୀରେ ଧୀରେ ଯାଉଛି । ଦୃଷ୍ଟିର ପ୍ରତ୍ୟେକ ସୁଅ ଯେମିତି କ୍ଷିପ୍ର ଗତିରେ ଛୁଟି ଯାଉଛି ତା''ର ଅନାବୃତ୍ତ ଛାତି ଆଡ଼କୁ ।

ହଠାତ୍ ଝିଅଟି ଆସି ମୋଟା ଲୋକଟିର ଗୋଡ଼ତଳେ ପଡ଼ିଗଲା । ''ଝାଡ଼ିଦିଅ, ମୋ ଭାଇକୁ ଛାଡ଼ିଦିଅ ।'' ''ସେ 'ଚୋର' ନୁହେଁ । ଏବେ ବର୍ତ୍ତୁଳାକାୟ ଲୋକଟିର ଦୃଷ୍ଟି ଛୋଟ ଛୁଆଠାରୁ ଆସି ସେ ଝିଅ ଉପରେ ପଡ଼ିଲା । ଝିଅଟି ହାତକୁ ତା' ଆଡ଼କୁ ଭିଡ଼ି ନେଇ ତା' ମୁହଁକୁ ଚଟକଣାଟାଏ ପକାଇଦେଲା ଓ ତା'ପରେ ତାକୁ ଛିଞ୍ଚାଡ଼ି ଦେଲା । ଝିଅଟି ଦେହରେ ଯେପରି କିଛି ବଳ ନ ଥିଲା, ସିଧା ଯାଇ ବାଲି ଉପରେ ପଡ଼ିଲା ଓ ନିଜ ଭାଇ ଉପରେ ନିଜର ନିସ୍ତେଜ ହାତ ଦୁଇଟିକୁ ରଖି ତାକୁ ଯେପରି ଆଶ୍ରୟ ଦେଉଥିଲା । ସେ ଯେପରି ସାନ୍ତ୍ୱନା ଦେଇ ଚାଲିଥିଲା । ନିଜର ଛୋଟ ଭାଇଟିକୁ । ପୋଛି ଦେଉଥିଲା ତା'ର ଏଇ କୁନି ଭାଇର ଆଖିରୁ ଝରି ଆସୁଥିବା ତତଲା ଲୁହ କେଇବୁନ୍ଦା ଓ ଥାପୁଡ଼ାଇ ଦେଉଥିଲା ତା'ର ପିଠିକୁ ।

ଇତି ମଧ୍ୟରେ ଯେ କେତେବେଳୁ ସେ ଲୋକଟି ସେଠାରୁ ରାଗ ତମ୍ ତମ୍ ହୋଇ ଚାଲିଯାଇଥିଲା । ଧୀରେ ଧୀରେ ଜନଗହଳି ଅନ୍ୟ ଦିଗରେ ସେଠାରୁ ପଳାଇ ଯାଉଥିଲେ । ସତେ ଯେମିତି ଏଇ ସବୁ ନିରୀହ, ଦୁର୍ବଳ ନୀରବଦ୍ରଷ୍ଟାଙ୍କୁ ଏଇ ସମୟରେ ଏଠାକୁ ବିଚାରର କର ମାନ୍ୟତା ଦିଆଯାଇଥିଲା ?

ତଥାପି ଏପର୍ଯ୍ୟନ୍ତ ଘଟଣାର ସବିଶେଷ ବିବରଣ ମୁଁ ପାଉ ପାରୁନଥିଲି । ସମସ୍ତେ ଚାଲିଗଲା ପରେ ସେଠି ସେମାନଙ୍କ ପାଖରେ ଆମେ ତିନିଜଣ ହିଁ ଥିଲୁ । ଶୀତଲ୍ କାନ୍ଦ କାନ୍ଦ ହୋଇ ଯାଇଥିଲା, ଯଦିଓ ଏଇନା ଖରା ହେଉ ନ ଥିଲା, ତଥାପି କେଜାଣି କାହିଁକି ତା'ର ଚନ୍ଦ୍ରମା ପରି ଗୋରା ଟକ୍ ଟକ୍ ମୁହଁଟା ଲାଲ୍ ପଡ଼ିଯାଇଥିଲା । ମୁଁ ତା' ଆଡ଼େ ଅନାଇବାରୁ ସେ ସମୁଦ୍ର ଆଡ଼େ ମୁହଁ ବୁଲାଇଦେଲା । ସତେ ଯେପରି ସେ ଏଇ ଘଟଣା, ଘଟଣା କାହିଁକି ଦୁର୍ଘଟଣା ବିଷୟରେ ସଂପୂର୍ଣ୍ଣ ଅଜ୍ଞ ଥିଲା । ରିଙ୍କୁ କିନ୍ତୁ ତଳେ ଠିଆ ହୋଇ ଏକ ଗବେଷକର ଦୃଷ୍ଟିକୋଣରୁ ନିରୀକ୍ଷଣ କରିଚାଲିଥିଲା ଏ ଦୃଶ୍ୟ । ଆଶ୍ଚର୍ଯ୍ୟ ଲାଗିଲା, ଯେଉଁ ପିଲା ଏଇ ଅଧଘଣ୍ଟା ପୂର୍ବରୁ ଅସଂଖ୍ୟ ପ୍ରଶ୍ନ ପଚାରିବାରେ ବ୍ୟସ୍ତ ଥିଲା, ସେ ଏବେ କ'ଣ କିଛି ପ୍ରଶ୍ନ ପାଉ ନାହିଁ ପଚାରିବାକୁ ? କାହିଁକି ତା'ର ଏ ନୀରବତା ।

ହଠାତ୍ ରିଙ୍କୁ ଉପରୁ ଦୃଷ୍ଟି ଫେରାଇ ନେଇ ମୁଁ ଦେଖିଲି, ବାଲୁକାମୟ ରାଶିରେ ନିଜକୁ ହଜାଇ ଦେଇଥିବା ସେଇ ବେସାହାରା ଭାଇଭଉଣୀ ଦୁଇଟିକୁ । ହଠାତ୍ ସେମାନଙ୍କୁ ଅଧଘଣ୍ଟା ପୂର୍ବର ସେଇ ଘଟଣା ଉପରେ ପଚାରିବାରୁ ଝିଅଟି ଥମ୍ ଥମ୍ ହୋଇଗଲା ଓ ଯା' କହିଲା ସେଥିରେ ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ କହିଲା, ''ଚିନୁ (ତା'ଭାଇ) ଓ ମୁଁ ଏଠାରେ ଦୁଇବର୍ଷ ହେଲା ରହୁଛୁ । ଆମ ଘର ଏର୍‌ସମାରେ । ବାତ୍ୟାରେ ଆମ ଘର ଭାସିଗଲା; ବାପା ବୋଉ କେଉଁଆଡ଼େ ଚାଲିଗଲେ, ଆମେ ସେମାନଙ୍କୁ ଖୋଜି ଖୋଜି ପାଇଲୁନାହିଁ । ଏଇଠି ରହି ଆମେ ଫୁଲରେ ମାଳ ତିଆରି କରି ବିକୁ ।''

ସେ ପୁଣି କହିଲା, ''ଗତ ଦି' ଦିନ ହେବ ମତେ ଜର ହୋଇଥିଲା । ତେଣୁ ଆମେ ଭୋକରେ ଥିଲୁ । ଏଇ, ଭୋକ ସମ୍ଭାଳି ନ ପାରି ସେ ଦୋକାନରୁ ଗୋଟେ

ରୁଟି ନେଇଆସିଲା ।''..... ଏତିକି କହି ଝିଅଟି ଭୋ ଭୋ ହୋଇ କାନ୍ଦି ପକାଇଲା । ତା' ଭାଇଟି ଆକାଶକୁ ଏକା ଲୟରେ ଚାହିଁ ରହିଥିଲା । ସେ ଆକାଶରୁ କ'ଣ ଖୋଜୁଥିଲା ତା' କେବଳ ତାକୁହିଁ ଜଣା । ତିନି ବର୍ଷ ବୟସରୁ ବାପା ମା'ଙ୍କୁ ହରାଇଥିବା ପିଲାର ମାନସିକ ଅବସ୍ଥା– କେବଳ ସେ ହିଁ ବୁଝି ପାରିବ, ଯେ ତା'କୁ ଜନ୍ମ ଦେଇଛି; କିନ୍ତୁ ସେ ତ' ତା' ପାଇଁ ଏବେ ମୃତ ?.........

ହଠାତ୍ ମୋର ଦୃଷ୍ଟି ପଡ଼ିଲା, ନିକଟରେ ଦୁଇ ଚାରୋଟି ବୁଲା କୁକୁରଙ୍କ କାମୁଡ଼ା କାମୁଡ଼ି ଶବ୍ଦ ଉପରେ । ବାଲିରେ ପଡ଼ି ନଷ୍ଟ ହୋଇଯାଇଥିବା ଗୋଟିଏ ରୁଟି ପାଇଁ ଏମାନଙ୍କ ଭିତରେ ଆକ୍ରମଣ ଚାଲିଥିଲା । ମୋର ଆଖିର କେଉଁ ନିବୃତ୍ତ କୋଣରୁ ଦୁଇ ଧାର ଲୁହ ଝରି ଆସିଲା । ଯେତେବେଳେ ମୁଁ ଦେଖିଲି ଆକାଶକୁ ଏକ ଲୟରେ ଅନେଇଥିବା 'ଚିନୁ' ଏବେ ଏକ ଲୟରେ ଭୋକିଲା ଆଖିରେ ଅନେଇ ରହିଛି ସେଇ ବାଲି ଉପରେ ପଡ଼ି ରହିଥିବା ରୁଟିଟିକୁ । ସେ ଏବେ କ'ଣ ଭାବୁଥିବ ? ହୁଏତ ଭାବୁଥାଇପାରେ, କୁକୁରଟିଏ ହୋଇ ଥାଆନ୍ତାକି, ଅନ୍ତତଃ ରୁଟି ଖଣ୍ଡିକ ପାଇଁ ସେ ବି ଏଇ ଭୀଷଣ ଖାଦ୍ୟ ଲଢ଼େଇରେ ଭାଗ ନେଇପାରନ୍ତା !!!

ସମ୍ବିତ୍ ଫେରିପାଇଲି ମୁଁ, ଶୀତଲ୍‌ର ଡାକରେ । ''ଏଇ, ପାଞ୍ଚଟା ବାଜିବ; ଘରକୁ ଯିବାନି କି ?'' ରିଙ୍କୁ ଏଯାବତ୍ ମଧ୍ୟ ଦେଖି ଚାଲିଥିଲା ଏ ଦୃଶ୍ୟ ନୀରବଭାବରେ । ତାକୁ ମୁଁ କୋଳେଇ ଧରିଲି ଓ ଆମେ ଫେରିବାକୁ ବାହାରିଲୁ । ସେମାନେ ଆମ ଆଡ଼କୁ ଏକ ଲୟରେ ଚାହିଁଥାନ୍ତି । ଯେପରିକି ଆଶ୍ରୟହୀନ ଶିଶୁ ଦୁଇଟି ପାଇଁ ଆମେ ଥିଲୁ ଏଇ ଅପରାହ୍ଣରେ ଆଶ୍ରୟର ସ୍ଥଳ ଓ ଆମେ ଫେରିଆସିବା ପରେ ସେମାନେ ପୁଣି ହୋଇ ଯାଉଛନ୍ତି, ଆଶ୍ରୟହୀନ, ଏକାକୀ । ହଠାତ୍ ଶୀତଲ୍ ରିଙ୍କୁ ଓ ମୋ ହାତ ଛାଡ଼ି ଦୌଡ଼ିଗଲା ସେମାନଙ୍କ ପାଖକୁ ଓ ଝିଅଟିର ହାତରେ ଦୁଇଟି ଶହେ ଟଙ୍କିଆ ନୋଟ୍ ବଢ଼ାଇ ଦେଇଥିଲା ଓ ଫେରିଆସିଲା ।

ସଂଜ ନଇଁ ଆସୁଥିଲା । ସୂର୍ଯ୍ୟ ଅସ୍ତ ହେବାକୁ ବସିଥିଲେ । ଆମେ ଫେରିଆସୁଥିଲୁ । ଭାଇ ଭଉଣୀ ଦୁଇଟି ଆମକୁ ଏକ ଲୟରେ ଚାହିଁ ରହିଥିଲେ ଓ ରିଙ୍କୁ ପଛକୁ ବୁଲି ବୁଲି ସେମାନଙ୍କୁ ବାରମ୍ବାର ଚାହୁଁଥିଲା । ଧୀରେ ଧୀରେ ଲୁଚିଗଲେ ସେମାନେ ଆମ ଦୃଷ୍ଟିର ଅନ୍ତରାଳରୁ । ପୁଣି ଶୁଣାଯାଉଥିଲା କୁକୁରମାନଙ୍କର ଭୁକିବାର ଶବ୍ଦ ।

ଏହା ଭିତରେ ଯେ କେତେବେଳେ ଆମେ ଘରେ ଆସି ପହଞ୍ଚି ସାରିଥିଲୁ । ''ରିଙ୍କୁ'' ଏକାବେଳେକେ ନୀରବ ହୋଇଯାଇଥିଲା । ଆମ ଘରର ପୋଷାକୁକୁର 'ମାଷ୍ଟର' ସାଙ୍ଗରେ ସେ ସଂଜବେଳେ ଖେଳ ଜମାଏ । ହେଲେ ଆଜି ଚୁପ୍‌ଚାପ୍ ବସିରହିଥିଲା । 'ଡିନର୍' ସାରି ଶୋଇବାକୁ ଗଲୁ ।

ଏତେବେଳଯାଏଁ ନୀରବଥିବା ରିଙ୍କୁ ହଠାତ୍ ପଚାରି ପକାଇଲା, ''ବାପା !! 'ଚିନୁ ତ ଖାଇବା ପାଇଁ ରୁଟି ଆଣିଥିଲା, ନା ? ତାକୁ ସେ ଲୋକ 'ଚୋର' କାହିଁକି କହିଲା ? ସେ କ'ଣ ଚୋରି କରୁଥିଲା ?? ମୋର ନୀରବତା ଦେଖି ପୁଣି ସେ ପ୍ରଶ୍ନ କଲା, ବାପା !! ଚିନୁର ବାପା ମା' କୁଆଡ଼େ ଯାଇଛନ୍ତି ? ସେମାନେ କ'ଣ ଆଉ ଫେରିବେନି ? ସେମାନଙ୍କୁ ଛାଡ଼ିଦେଇ କାହିଁକି ଚାଲିଗଲେ ? ସତରେ, ସେମାନେ ଆଉ ଫେରିବେନି ? ତା'ହେଲେ –''ଚିନୁ'କୁ କିଏ ଗପ ଶୁଣେଇ ଶୁଆଇ ଦେବ ? ତାକୁ ଖାଇବାକୁ କିଏ ଦବ ? ତାକୁ କିଏ ଗାଧେଇ ଦବ ? ସତରେ, ସେମାନେ କ'ଣ ଆଉ ଫେରିବେନି ?.......

ଯା' ଭିତରେ ରିଙ୍କୁକୁ କୋଳେଇ ଶୀତଲ୍ ଶୋଇଯାଇଥିଲା; କିନ୍ତୁ ରିଙ୍କୁର ପ୍ରଶ୍ନ ମୋ ଭିତରେ ସୃଷ୍ଟି କରିଥିଲା ଏକ ଆଲୋଡ଼ନ । ଆଖିକୁ ନିଦ ଆସୁନଥିଲା ? ତା' ସବୁ ପ୍ରଶ୍ନର ଉତ୍ତର ଦେବାର ସମାର୍ଥ୍ୟ ରଖୁଥିବା ଏଇ 'ମୁଁ'ଟି ଆଜି ହାରିଯାଇଥିଲି ତା'ର ସମସ୍ତ ପ୍ରଶ୍ନ ନିକଟରେ । ନିଜକୁ ନିଜେ ମୁଁ ବାରମ୍ବାର ପଚାରି ହେଉଥିଲି –

''ସତରେ, ସେମାନେ କ'ଣ ଆଉ ଫେରିବେନି ?''

???

# ଅସମାପ୍ତ ଜୀବନର ଆତ୍ମଲିପି

( ଏକ ପ୍ରତୀକାତ୍ମକ ଗଳ୍ପ )

*ଲକ୍ଷ୍ମୀପ୍ରିୟା ତ୍ରିପାଠୀ*
+୩ ଦ୍ୱିତୀୟ ବର୍ଷ (ଶିକ୍ଷା ସମ୍ମାନ)

ସମୟର କାଳସ୍ରୋତରେ ହଜିଯାଇଛି ଅଭୁଲା ଦିନର ସ୍ମୃତି ସବୁ । ନିଃସଙ୍ଗତା'ର ଜୀବନ ନେଇ ବଞ୍ଚି ରହିଛି ପୂର୍ଣ୍ଣତାର ପ୍ରତିଛବି । ଭଗ୍ନତାର ଶରୀରରେ ରହିଯାଇଛି ଇତିହାସର ଅମଳିନ କଳାନୈପୁଣ୍ୟ । ଜୀବନର ପ୍ରତିଟି ମୂହୂର୍ତ୍ତରେ ସେ ଭାବୁଛି ଅତୀତର ସ୍ମୃତିକୁ । କିଶୋର ଜୀବନର ପ୍ରତିଟି ସମୟକୁ ଭଲ ପାଇବାର ସେଇ ଆପଣାର ମଣିଷଟିକୁ । ଯାହାକୁ ସେ ଜୀବନଠୁ ବେଶୀ ଭଲ ପାଇଥିଲା । ଯାହା ପାଇଁ ସେ ଭୁଲି ଯାଇଥିଲା ସବୁକିଛି ।

ବହୁବାର ଚେଷ୍ଟା କରିଛି କୋଣାର୍କ, ଅତୀତର ସ୍ମୃତିକୁ ଭୁଲିଯିବା ପାଇଁ । ହେଲେ ପାରୁନାହିଁ ସେ । ଏସବୁ କ'ଣ କିଏ ଭୁଲିପାରେ । ଅପଲକ ନେତ୍ରରେ ସେ ଚାହିଁ ରହିଛି । ତା'ର ସାଥୀ ଚନ୍ଦ୍ରଭାଗାକୁ । ପାଇବାର ଆଶାନେଇ ସେ ଅପେକ୍ଷା କରିଛି । ଚନ୍ଦ୍ରଭାଗା ଆସିବ । ସେ କେବେ ବି ଭୁଲି ପାରିବନି କୋଣାର୍କକୁ । ହେଲେ କାହିଁ କେତେ କାଳରୁ ତ ଚନ୍ଦ୍ରଭାଗାର ଦେଖା ନାହିଁ । ଚନ୍ଦ୍ରଭାଗା କ'ଣ ଭୁଲିଗଲା ମୋତେ । ଅତୀତ ଦିନ ଗୁଡ଼ାକର ସ୍ମୃତିକୁ କ'ଣ ପାସୋରି ପକାଇଲା ଚନ୍ଦ୍ରଭାଗା । ଭଲ ପାଇବାର ବନ୍ଧନକୁ ସେ କ'ଣ ଚୂର୍ଣ୍ଣ କରି ଦେଇଛି । ନା ନା ସେ ସବୁକୁ କ'ଣ କିଏ ଭୁଲିପାରେ । ଛିର୍ଣ୍ଣ କରିପାରେ ।

ସୂର୍ଯ୍ୟ ମନ୍ଦିରରେ ଅଦୃଶ୍ୟ ଭାବେ ବଞ୍ଚି ରହିଥିବା ସେଇ ରାଜକୁମାର କୋଣାର୍କ । ନିକଟରେ କଳକଲ୍ଲୋଳ ଧ୍ୱନିରେ ବହି ଯାଉଥିବା ଚନ୍ଦ୍ରଭାଗା ନଦୀର ସୁନୀଳ ଜଳରାଶିରେ ବାସ କରୁଥିଲା ରାଜଜେମା ଚନ୍ଦ୍ରଭାଗା । କୋଣାର୍କ ଓ ଚନ୍ଦ୍ରଭାଗାଙ୍କ ମଧ୍ୟରେ ଗଢ଼ି ଉଠିଥିଲା ପ୍ରେମ ସଂପର୍କ । ପରସ୍ପର ପରସ୍ପରକୁ ଭଲ ପାଇଥିଲେ; କିନ୍ତୁ ସମୟର କରାଳ ଗର୍ଭରେ ଲୀନ ହୋଇ ଯାଇଥିଲା ଚନ୍ଦ୍ରଭାଗା । କୋଣାର୍କକୁ ଏକା ଛାଡ଼ି ଚାଲିଯାଇଥିଲା । କୋଣାର୍କ ହୋଇଯାଇଥିଲା ନିଃସଙ୍ଗ । ସୀମାହୀନ ଜୀବନର ପ୍ରତିଟି ମୂହୁର୍ତ୍ତ କୋଣାର୍କ ପାଇଁ ଆଣି ଦେଉଥିଲା ଅସହ୍ୟ ଯନ୍ତ୍ରଣା କାରାଗାର । ଚନ୍ଦ୍ରଭାଗା ବିନା ଯେ ସେ ଆଉ ବଞ୍ଚି ପାରିବନି ।

କୋଣାର୍କ ମନେ ପକାଇଛି ଅତୀତକୁ । ରୂପବତୀ ଲାବଣ୍ୟମୟୀ ଚନ୍ଦ୍ରଭାଗାକୁ । ତା'ର ପ୍ରେମିକା ଚନ୍ଦ୍ରଭାଗାକୁ । ଯାହାକୁ ସେ ପ୍ରଥମ ଦେଖାରେ ଭଲପାଇ ବସିଥିଲା । ନିଜର ସବୁକିଛି ତ୍ୟାଗ କରିଥିଲା ଚନ୍ଦ୍ରଭାଗା ପାଇଁ । ପାଗଳ ହୋଇଯାଇଥିଲା ଯା ପାଇଁ । ଯେଉଁ ଚନ୍ଦ୍ରଭାଗାକୁ ସେ ଜୀବନର ସାଥୀରୂପେ ବାଛି ନେଇଥିଲା । ଈଶ୍ୱରଙ୍କ ନିକଟରେ ଯା ପାଇଁ ଶୁଭ ମନାସୁଥିଲା ।

ରାତ୍ରିର ଆଗମନରେ ସଂସାରୀ ମଣିଷର ଯାତାୟତ ବନ୍ଦ ହେବା ପରେ ସୂର୍ଯ୍ୟ ମନ୍ଦିରର ଶୋଭା ଦ୍ୱିଗୁଣିତ ହୁଏ । ଜୀବନ୍ତ ହୋଇଉଠେ ସୂର୍ଯ୍ୟମନ୍ଦିର । ମନ୍ଦିର ଗାତ୍ରରେ ଖୋଦିତ ଚିତ୍ରଗୁଡ଼ିକ ଜୀବନ୍ତ ହୋଇ ଉଠନ୍ତି । ଜୀବନ୍ତ ହୋଇ ଉଠନ୍ତି ପଶୁପକ୍ଷୀ, ନରନାରୀ, ଗନ୍ଧର୍ବ, କିନ୍ନରୀ, ଅପ୍‌ସରାଗଣ । ରାତ୍ରିସାରା ଆପଣାର ସାଥି ସହ ମଜ୍ଜି ରହନ୍ତି ସେମାନେ । ପରସ୍ପର ପରସ୍ପରକୁ ଅନୁଭବ କରନ୍ତି । ମନ୍ଦିରର ଚତୁଃପାର୍ଶ୍ୱରେ ବିଚରଣ କରନ୍ତି । ହସ ଖୁସିରେ ଫାଟି ପଡ଼େ ସୂର୍ଯ୍ୟ ମନ୍ଦିର । ରାତ୍ରିସାରା ଘୁରି ବୁଲନ୍ତି ସେମାନେ । ରାଜକୁମାର କୋଣାର୍କ ଚାଲିଯାଏ ଚନ୍ଦ୍ରଭାଗା ନଦୀ କୂଳକୁ । ନଦୀ କୂଳରେ ବସି ରହେ ଏକା ଏକା ।

ଚନ୍ଦ୍ରଭାଗା ନଦୀର ସେଇ ସ୍ୱଚ୍ଛ ସୁନିଳ ଜଳରୁ ବାହାରି ଆସେ ରାଜଜେମା ରୂପସି ଚନ୍ଦ୍ରଭାଗା । ନିଜର

ତନୁବଲ୍ଲରୀକୁ ବିଛାଇ ଦିଏ ନଦୀ କୂଳରେ । ଅପଲକ ନେତ୍ରରେ ଚାହିଁ ରହେ ମନ୍ଦିର ଆଡ଼େ । ଦୂରକୁ ଦୁଇଟି ବୀପରିତ ହୃଦୟର ମିଳନକୁ ଲକ୍ଷ୍ୟ କରେ ଚନ୍ଦ୍ରଭାଗା । ସାଥିଟିଏ ଖୋଜେ । ଜୀବନକୁ ଉପଭୋଗ କରିବାର ମନ ବଳାଏ । ତା' ନିକଟରେ ରହିଛି ସେ ଅପରୂପ ଲାବଣ୍ୟ । ଜଣେ ପୁରୁଷକୁ ଆକୃଷ୍ଟ କରିବାର ମହନୀୟ ରୂପ । ସେ ଯେ ପୂର୍ଣ୍ଣ ଯୌବନା । ନିଜର ଶରୀରର ସୌନ୍ଦର୍ଯ୍ୟକୁ ଦେଖି ତୁଚ୍ଛ ମଣେ ଚନ୍ଦ୍ରଭାଗା । ରାତ୍ରିସାରା ଚାହିଁଥାଏ ମନ୍ଦିର ଆଡ଼କୁ । ରାତ୍ରିର ଶେଷରେ ପୁଣି ଚାଲିଯାଏ ନଦୀ ମଧ୍ୟକୁ ।

ଈଶ୍ୱରଙ୍କ ସୃଷ୍ଟିତ ଅତି ବିଚିତ୍ର । କାହାସଙ୍ଗେ କାହାର ପରିଚୟ ଯେ କେତେବେଳେ ହେବ ଏକଥା କିଏ ଜାଣେ । ମନ ଖୋଜୁଥିବା ଆପଣାର ମଣିଷ ଯେତେବେଳେ ମିଳିଯାଏ ସେତେବେଳେ ଈଶ୍ୱରଙ୍କୁ ଧନ୍ୟବାଦ ଦେବା ବ୍ୟତୀତ ଅନ୍ୟ କ'ଣ କରାଯାଇପାରେ । ହଠାତ୍ ଗୋଟିଏ ରାତ୍ରିରେ ଚନ୍ଦ୍ରଭାଗା ସହ କୋଣାର୍କର ଦେଖାହୁଏ । ଚନ୍ଦ୍ରଭାଗାର ଅପରୂପ ଲାବଣ୍ୟ ଆକୃଷ୍ଟ କରେ କୋଣାର୍କକୁ । ଚନ୍ଦ୍ରଭାଗାର ରୂପ କୋଣାର୍କକୁ ପାଗଳ କରିଦିଏ । ଚନ୍ଦ୍ରଭାଗା ଭଲ ପାଇବସେ କୋଣାର୍କକୁ । କୋଣାର୍କକୁ ସବୁଠୁ ଆପଣାର ବୋଲି ଭାବେ । ଜୀବନଠୁ ବେଶି ଭଲପାଏ । ପ୍ରତିଟି ରାତିରେ ଚନ୍ଦ୍ରଭାଗା ଓ କୋଣାର୍କ ଏକାଠି ହୁଅନ୍ତି । ଏକାଠି ବସନ୍ତି ସାଗର କୂଳରେ ଅତି ପାଖାପାଖି ହୋଇ । ମନ ଖୋଲି ଘୂରି ବୁଲନ୍ତି ସାଗର କୂଳେ କୂଳେ ଅନେକ ବାଟ । କ୍ଲାନ୍ତ ହୋଇ ଚନ୍ଦ୍ରଭାଗା କୋଣାର୍କର କୋଳରେ ମୁଣ୍ଡ ଗୁଞ୍ଜେ । ନିଜର କ୍ଲାନ୍ତ ଶରୀରକୁ କୋଣାର୍କ କୋଳରେ ବିଛାଇ ଦିଏ । କୋଣାର୍କର ସଙ୍ଗ ଲାଭକରି ସେ ଭୁଲିଯାଏ ସବୁକିଛି । ଆପଣେଇ ନିଏ କୋଣାର୍କକୁ । ନିଜର ସତ୍ତାକୁ ହଜାଇ ଦିଏ କୋଣାର୍କ ନିକଟରେ । ଚନ୍ଦ୍ରଭାଗାର କେଶରାଶିରେ ହସ୍ତ ସଞ୍ଚାଳନ କରେ କୋଣାର୍କ । ଜଣେ ପୁରୁଷର ସ୍ପର୍ଶ ପାଇ ଚନ୍ଦ୍ରଭାଗା ହଜାଇ ଦିଏ ନିଜକୁ ।

ପୂର୍ଣ୍ଣିମାର ରାତ୍ରିରେ ଦୁହେଁ ଆସି ବସନ୍ତି ସୂର୍ଯ୍ୟ ଦେବତାଙ୍କ ନିକଟରେ । କୋଣାର୍କ ସୂର୍ଯ୍ୟଙ୍କ ପ୍ରସାଦ ଚନ୍ଦ୍ରଭାଗାକୁ ନିଜ ହାତରେ ଖୁଆଇ ଦିଏ । ଧର୍ମ ଦେବତାଙ୍କ ପାଖରେ ଦୁହେଁ ଏକାଠି ରହିବାର ପଣ କରନ୍ତି । କୋଣାର୍କର ଅବୁଝା ମନ କିନ୍ତୁ ବୁଝେ ନାହିଁ । କୁହେ ନ୍ଦ୍ରଭାଗା, ତୁମେ ମୋତେ ଭୁଲି ଯିବନିତ ? ଆମର ଏ ସଂପର୍କ ତୁଟି ଯିବନିତ ? ମୋତେ ଅଲଗା କରି ଦେବନିତ ? କୋଣାର୍କର ପାଗଳାମି ଦେଖି ହସି ଦିଏ ଚନ୍ଦ୍ରଭାଗା । କହେ ତୁମର ଓ ମୋର ସଂପର୍କ ବହୁ ଦିନର । ଆମ ଦୁହିଁଙ୍କର ଜୀବନତ ଗୋଟିଏ ଡୋରୀରେ ବନ୍ଧା । ସାଗର କ'ଣ କେବେ ଶାମୁକାକୁ ଭୁଲିପାରେ । ଚାତକ କ'ଣ କେବେ ବର୍ଷା ଜଳକୁ ଭୁଲିପାରେ । କ୍ରମଶଃ ଚନ୍ଦ୍ରଭାଗା ଓ କୋଣାର୍କର ପ୍ରେମ ଘନିଷ୍ଠ ହୋଇଉଠେ । ଦୁହେଁ ଦୁହିଁଙ୍କୁ ଭଲ ପାଇ ବସନ୍ତି ଜୀବନଠୁ ଆହୁରି ବେଶୀ । ଜଣକର ବ୍ୟତିରେକ ଅନ୍ୟ ଜଣକର ସ୍ଥିତି ଯେମିତି କିଛି ନାହିଁ ।

ପ୍ରତି ରାତ୍ରିରେ ଚନ୍ଦ୍ରଭାଗା ଆସେ କୋଣାର୍କ ପାଖକୁ । ଦୁହେଁ ମିଶନ୍ତି, ବୁଲନ୍ତି । କୌଣସି ରାତ୍ରିରେ ଚନ୍ଦ୍ରଭାଗାର ଅନୁପସ୍ଥିତି କୋଣାର୍କକୁ ଅସହ୍ୟ ଯନ୍ତ୍ରଣା ଦିଏ । ଚନ୍ଦ୍ରଭାଗା ପାଇଁ ପାଗଳ ହୋଇଉଠେ କୋଣାର୍କ । ଚନ୍ଦ୍ରଭାଗାକୁ ଖୋଜି ବୁଲେ ଚାରିଆଡ଼ । ସବୁ ସୁଖ ଯେମିତି ଉଭେଇ ଯାଏ କୋଣାର୍କର । ମନରେ ଅନେକ ଭାବନା ଜାଗିଉଠେ । ଚନ୍ଦ୍ରଭାଗା ଉପରେ ଅଭିମାନ କରେ । ମନେ ମନେ ରାଗିଯାଏ । ହେଲେ ପରଦିନ ରାତ୍ରିରେ ଚନ୍ଦ୍ରଭାଗାକୁ ଦେଖି ସବୁ ଯେମିତି ଭୁଲିଯାଏ କୋଣାର୍କ । ଅଭିମାନ ଆପେ ଆପେ ଅପସରି ଯାଏ । ସବୁ ରାଗ ପାଣି ଫାଟିଯାଏ, ଚନ୍ଦ୍ରଭାଗାର ଶାନ୍ତ, ସୁନ୍ଦର, କୋମଳ ମୁହଁକୁ ଦେଖି କୋଣାର୍କ ସବୁକିଛି ଭୁଲିଯାଏ । ଦୁନିଆ ତା' ନିକଟରେ ତୁଚ୍ଛ ଗଣ୍ୟ । ଚନ୍ଦ୍ରଭାଗା ଯେ ତା'ର ସବୁଠୁ ନିଜର । ଦୁନିଆରେ କୋଣାର୍କର ଯଦି କେହି ସବୁଠୁ ଆପଣାର ଥାଏ ସେତ ଚନ୍ଦ୍ରଭାଗା । ଆପଣାର ମଣିଷ ଉପରେ କିଏ କ'ଣ ରାଗିପାରେ । ଅଭିମାନ କରିପାରେ । ଚନ୍ଦ୍ରଭାଗାର ପ୍ରତିଟି କଥା କୋଣାର୍କ ପାଇଁ ଆଣିଦିଏ ସ୍ୱର୍ଗୀୟ ସୁଖ । ଦୁଇଟି ହୃଦୟ ମଧ୍ୟରେ ନ ଥାଏ କୌଣସି ପ୍ରତିବନ୍ଧକ । କୌଣସି ବାଧାବିଘ୍ନ । ଚନ୍ଦ୍ରଭାଗା ବି ଅନେକ ଥର ଅଭିମାନ କରିଛି

କୋଣାର୍କ ଉପରେ କିନ୍ତୁ ନିବିଡ଼ ପ୍ରେମ ଯେମିତି ସବୁ ରାଗ ଅଭିମାନକୁ ଦୂରେଇ ଦେଇଛି । ଯେଉଁଠି ଦୁଇଟି ହୃଦୟର ମିଳନ ହୋଇଛି ସେଠି ଏ ମାନ, ଅଭିମାନ ରାଗ, ରୋଷର ସ୍ଥାନ ବା କାହିଁ ।

ସମୟର ଗତି ବଡ଼ ବିଚିତ୍ର । ସେ ଯେ କାହାର ଦୁଃଖ ସୁଖକୁ ଅପେକ୍ଷା କରେନା । କାହା ପାଇଁ ପ୍ରତୀକ୍ଷା କରେନା । କାହାର ଦୁଃଖ ସୁଖକୁ ବୁଝିବାକୁ ତା' ନିକଟରେ ତ ସମୟ ନ ଥାଏ । ସମୟ ନିକଟରେ ତ ସବୁ ତୁଚ୍ଛ, କ୍ଷଣିକ, ମୂଲ୍ୟହୀନ ।

ସମୟର କାଳସ୍ରୋତରେ ଦିନେ ସେ ଲୀନ ହୋଇଯିବ ଏକଥା ଚନ୍ଦ୍ରଭାଗା ଜାଣେ । ତା'ର ଯେ ସମୟ ସରି ଆସୁଛି । ସେ ଅନ୍ତିମ ଆଡ଼କୁ ଗତି କରୁଛି । ଏସବୁ କିନ୍ତୁ ଆଣି ଦେଉଛି ଅସହ୍ୟ ଯନ୍ତ୍ରଣା ଚନ୍ଦ୍ରଭାଗା ପାଇଁ । କେମିତି ସେ ବୁଝାଇବ କୋଣାର୍କକୁ ସମୟ ଯେ ତାଙ୍କୁ ଅଲଗା କରିଦେବ । ଦୁହେଁ ବିଚ୍ଛିନ୍ନ ହୋଇଯିବେ ପରସ୍ପରଠାରୁ । ବହୁଦିନ ଧରି ଗଢ଼ି ଥିବା ପ୍ରେମର ପ୍ରାସାଦ ଭାଙ୍ଗି ଚୁରମାର ହୋଇଯିବ । ସବୁ ଆଶା ସ୍ୱପ୍ନ ମାଟିରେ ମିଶିଯିବ । ଏ ସବୁ କ'ଣ କୋଣାର୍କ ସହ୍ୟ କରିପାରିବ । ସହଜରେ ବୁଝିଯିବ ଯେ ତାଙ୍କ ସଂପର୍କ ଯେତିକିଦିନ ପାଇଁ ଥିଲା ତାହା ଶେଷ ହୋଇଯାଇଛି । ଏଣିକି କୋଣାର୍କକୁ ବିତାଇବାକୁ ହେବ ଏକାକୀ ଜୀବନ ।

ଶେଷ ଦେଖାରେ ଚନ୍ଦ୍ରଭାଗା ମନ ଭରି ଦେଖିଛି କୋଣାର୍କକୁ । କେମିତି ସେ ଭୁଲିଯିବ କୋଣାର୍କକୁ । ଜୀବନରେ ପ୍ରଥମ ଥର ପ୍ରେମ କରିଥିବା ସେଇ ମଣିଷଟିକୁ । ଚନ୍ଦ୍ରଭାଗାର ଆଖିର ଅମାନିଆ ଲୁହ ବାଧା ମାନେ ନାହିଁ । ଝରିଯାଏ ଧାରା ଶ୍ରାବଣ ପରି । କୋଣାର୍କ ଚନ୍ଦ୍ରଭାଗାର ଆଖିରୁ ଲୁହ ପୋଛିଦିଏ । ବୁଝାଇ ଦିଏ ନିଜର ପ୍ରେୟସୀ ଚନ୍ଦ୍ରଭାଗାକୁ ସମୟର ବିଚାର କିଭଳି କଠୋର ଦାରୁଣ । କୁହେ ସମୟ କ'ଣ ଆମର ଭଲ ପାଇବାକୁ ଦୂରେଇଦେବ । ଆମ ପ୍ରେମ ତ ବଞ୍ଚିରହିବ ସବୁଦିନ ପାଇଁ । ପ୍ରେମ ଆମର ଅକ୍ଷୟ ଅମଳିନ ।

ସେଇ ଦିନଠାରୁ ଆଉ କୋଣାର୍କ ନିକଟକୁ ଆସୁନାହିଁ ଚନ୍ଦ୍ରଭାଗା । ସମୟର ସ୍ରୋତରେ ହଜିଯାଇଛି ବିଲୀନ ହୋଇଯାଇଛି ତା'ର ସତ୍ତା । ଲୁଚି ଯାଇଛି ତା'ର ସ୍ଥିତି ।

କୋଣାର୍କ ଆଜି ନିଃସଙ୍ଗ । ପ୍ରତିଟି ରାତ୍ରିର ଅନ୍ଧାର ଭିତରେ ସେ ଖୋଜି ବୁଲୁଛି ତା'ର ମନର ମଣିଷ ଚନ୍ଦ୍ରଭାଗାକୁ । ଏକା ଏକା ଲୁହ ଗଡ଼ାଉଛି ବସି ଚନ୍ଦ୍ରଭାଗାର ଶୁଷ୍କ ଶଯ୍ୟା ଉପରେ । ବାଲିକୁ ଚୁମ୍ବନ କରୁଛି । ନିଜର ଆଖିର ଲୁହରେ ଗଢ଼ିବାକୁ ଚେଷ୍ଟା କରୁଛି ଏକ ଚନ୍ଦ୍ରଭାଗା ନଦୀ । ହଜିଯାଇଛି ତା'ର ସବୁ ସୁଖ । ରାତ୍ରିର ନିସ୍ତବ୍ଧ ପ୍ରହରରେ ସେ ଚିତ୍କାର କରି ଡାକୁଛି – ''ତୁମେ ଫେରିଆସ ଚନ୍ଦ୍ରଭାଗା ।'' ଥରେ ଦେଖାଦିଅ । ଦେଖିଯାଅ ମୁଁ କିଭଳି ବଞ୍ଚି ରହିଛି ଅସମାପ୍ତ ଜୀବନର ଅଭିଶପ୍ତ କାହାଣୀକୁ ନେଇ । ବଞ୍ଚିରହିଛି ତୁମର ସ୍ମୃତିକୁ ସାଇତି ରଖି । ତୁମର ଭଲ ପାଇବାକୁ ଛାତି ଭିତରେ ଲୁଚାଇ ରଖି । ମୁଁ ପାରୁନି ଚନ୍ଦ୍ରଭାଗା । ଆଉ ବଞ୍ଚିପାରୁନି ତୁମ୍ଭର ବ୍ୟତିରେକ । ତୁମେ ଫେରିଆସ ଚନ୍ଦ୍ରଭାଗା, ଫେରିଆସ..... । କୋଣାର୍କର ଡାକ ଥରାଇ ଦିଏ ରାତ୍ରିର ଦିଗନ୍ତକୁ । ପ୍ରତିଧ୍ୱନିତ ହୁଏ ସୂର୍ଯ୍ୟ ମନ୍ଦିରରେ । ସାଗରର ଲହରିମାଳାରେ ଧକ୍କା ଖାଇ ଫେରିଆସେ ପୁଣି ଥରେ । କୋଣାର୍କ ନିକଟକୁ । କେବେବି କୋଣାର୍କ ଚନ୍ଦ୍ରଭାଗାର ଦେଖା ପାଏନି । ନିରାଶ ହୋଇ ଫେରିଆସେ ବିଷାଦ ହୃଦୟ ନେଇ କୋଣାର୍କ ।

କୋଣାର୍କ ଆଜି ପରାଜିତ ନାୟକ । କିନ୍ତୁ ସେ ଭୁଲ କରିନି, ଚନ୍ଦ୍ରଭାଗାକୁ ଭଲପାଇ । ପ୍ରେମ ତ ଶାଶ୍ୱତ, ଚିରନ୍ତନ ଦୁଇଟି ହୃଦୟର ମିଳନ । ଏକ ଅଭୁଲା ସ୍ମୃତି ।



# ନିଅାଁ

ସଞ୍ଜୟ କୁମାର ମହାପାତ୍ର
+୨ ଦ୍ୱିତୀୟ ବର୍ଷ କଳା

ପିତାଙ୍କ ଶବ ଅନ୍ତିମ ଚିତାରେ ଜଳୁଥିବା ଦେଖି ଅଜସ୍ର ଦୁଃଖ ଜର୍ଜରିତ ଓ ବ୍ୟାକୁଳ ଯନ୍ତ୍ରଣାଦଗ୍ଧ ଟୁନାକୁ ମନେ ହେଉଥିଲା ବାପା ତା'ର ଏଇ ଧୂମ୍ର କୁଣ୍ଡଳୀ ସହ ସତେ ଯେମିତି ସ୍ୱର୍ଗକୁ ଯାଉଛନ୍ତି । ଜଳି ଜଳି ଶେଷକୁ ଚିତାଟି ଲିଭିଗଲା । ନିଅାଁ ଆଉ ଧୂଆଁ ଶାନ୍ତ ହୋଇଗଲେ । ବାପାଙ୍କ ଶରୀର ଏଇ ଥିଲା, ଏଇ ନାହିଁ । ବାପା ବୃଦ୍ଧ ହେଲେବି ଥିଲେ ବେଶ କର୍ମଠ ଓ ପରିଶ୍ରମୀ । କତା ବଳୁଥିଲେ, ଖଟ ବୁଣୁଥିଲେ, ବାପା କେତେବେଳେ ବିଲକୁ ଯାଉଥିଲେ ତ କେତେବେଳେ ଘର ଜଗୁଥିଲେ ବାଡ଼ିପଟେ କୂଅଟିଏ ଅଛି । ବିଭିନ୍ନ ଋତୁରେ ବିଭିନ୍ନ କିସମର ଚାଷ କରାଯାଏ । ଏ ଚାଷ ପ୍ରତି ବାପାଙ୍କର ନିଘା ଥିଲା ଅତି ବେଶୀ । ଯେତେବେଳେ ବାପାଙ୍କୁ ଘର ଜଗିବାକୁ ହୁଏ ସେତେବେଳେ ଦେଖି ସେ ବାରିରେ ହିଁ ଥିବେ । କେତେବେଳେ ଘାସ ବାଛୁ ଥିବେ ତ କେତେ ବେଳେ ପୁଣି ହାତରେ ଖୁସୁଣି ଧରି ମାଟି ତାଡୁଥିବେ । ଗଛର ଯତ୍ନ ନେବା ତାଙ୍କର କାମ । ଖୁବ ନିରଳସ ଓ ଗୁଣଗ୍ରାହୀ । ବାପାଙ୍କ ଦୟାରୁ ଘରେ ପରିବା କିଣା ଖର୍ଚ୍ଚରୁ ମୁକ୍ତି ମିଳୁଥାଏ । ଦଉଡ଼ି ବଳି, ଖଟ ବୁଣି ଯେଉଁ ରୋଜଗାର ସେ କରୁଥିଲେ ତାହା ମଧ ସେ ପରିବାର ପାଇଁ ଦେଉଥିଲେ ।

ମଶାଣୀରୁ ଆତ୍ମୀୟଙ୍କ ସହ ଫେରି ଦେଖିଲା ଘରେ ଚମ୍ପା ମଥାନତ କରି ଆଖି ଲୁହ ପୋଛୁଛି । ମୁହଁ କଳାକାଠ ପଡ଼ିଛି । ବାପା ଚମ୍ପାକୁ ଝିଅ ପରି ଦେଖୁଥିଲେ । ଚମ୍ପା ବି ଶ୍ୱଶୁରଙ୍କୁ ଭକ୍ତି କରୁଥିଲା । ରୀତିମତ ସେବା କରୁଥିଲା ତାଙ୍କର । ଲୋକଙ୍କ ସନ୍ତ୍ୱାନା ଓ ପ୍ରବୋଧନାରେ ଟୁନା ଆଉ ଚମ୍ପା ମନକୁ ସିନା ବୋଧଦେଲେ । ମାତ୍ର ସାମାଜିକ ବିଧି ଓ ବିଶ୍ୱାସର ଯେଉଁ ପରମ୍ପରାଗତ କର୍ତ୍ତବ୍ୟ ଅଛି ତାକୁ ସେମାନେ ଭୁଲି ଯାଆନ୍ତେ କିପରି ? ଏକ ଅନିବାର୍ଯ୍ୟ କର୍ମ ଯାହାକୁ ଶୁଦ୍ଧିକ୍ରିୟା ବୋଲି କୁହାଯାଇଥାଏ । ତାକୁ ଏଡ଼ାଇଇବା ଦୁଷ୍କର ଭଳି ମନେ ହେଲା ସ୍ୱାମୀ, ସ୍ତ୍ରୀ ଦୁହିଁଙ୍କୁ ।

ଗତବର୍ଷ ଚମ୍ପାକୁ ଟୁନା ବିବାହ କରିଥିଲା । ଗୁଡ଼ାଏ ଖର୍ଚ୍ଚାନ୍ତ ମଧରେ ମଙ୍ଗଳବେଦୀରେ ପଡ଼ିଥିଲା । ସେମାନଙ୍କ ମଙ୍ଗଳସୂତ୍ର । ଟୁନାର ବାପା ଦରିଦ୍ର ହେଲେ ବି ଖୋଲା ମନରେ ଖର୍ଚ୍ଚ କରିଥିଲେ । ସମସ୍ତଙ୍କ ପାଇଁ ଉତ୍ତମ ପାନ ଭୋଜନର ବ୍ୟବସ୍ଥା କରିଥିଲେ । ସେଇ ତା'ର ବିବାହ ପାଇଁ ଯେଉଁ ଧାର ହୋଇଥିଲା ଏବେ ବି ଶୁଝା ହୋଇନାହିଁ । ସହସା ଘଟିଛି ବାପାଙ୍କର ବିୟୋଗ । କ'ଣ କରଯିବ ବୋଲି ଚିନ୍ତାରେ ପଡ଼ିଲେ ଟୁନା । ବାପାଙ୍କ ଶୁଦ୍ଧିକ୍ରିୟା ହେବ କିପରି ? ଭାବି ଭାବି ଶୋଇ ପାରୁ ନଥିଲେ ସେ । ଦୁଃଖ ଲାଘବ କରିବାକୁ ପ୍ରକୃତରେ ଆସନ୍ତି କେତେଜଣ ? ଯେଉଁମାନେ ଆସିଥାନ୍ତି କେବଳ କଥାରେ କାର୍ଯ୍ୟରେ ସହଯୋଗ ଦେବା ସେମାନଙ୍କର ଉଦ୍ଦେଶ୍ୟ ନୁହେଁ । ଆପଣାର ଅଭିଳାଷ ଚରିତାର୍ଥ ପାଇଁ ସେମାନେ ଆସିଥାନ୍ତି କେଉଁ ଜଣେ ବ୍ୟକ୍ତିର ମୁହଁରୁ ଏକଥା ଶୁଣିଥିଲା ଟୁନା । ଶୁଣିଥିଲା ସିନା ଟୁନା ହେଲେ କେବେ ପରୀକ୍ଷା କରିନାହିଁ । ସେଦିନ ରାମବାବୁ ଆସିଲେ । ସେ ଏଇ ଗାଁର ଜଣେ ଭଦ୍ର ବ୍ୟକ୍ତିଗୁଡ଼ାଏ

ସମ୍ପତ୍ତିର ମାଲିକ ଗାଁର ବି ମୁରବୀ ହୋଇଛନ୍ତି ଏବେ । ଟୁନା ତାଙ୍କର ଯଥାବିଧି ମାନ୍ୟ ଓ ସତ୍କାର କଲା । ରାମବାବୁ ଟୁନାକୁ କୁଶଳ କାରଣ ପଚାରିଲେ । ଟୁନା କହିଲା-ଛିଣ୍ଡା ଲୁଗା ଯୋଡ଼ି ହୁଏ ନାଇଁ ବାବୁ କି ଗରିବର ଦୁଃଖ କେବେ ଘୁଞ୍ଚେ ନାହିଁ । ମୋର ଆଉ ଭଲ କ'ଣ । ବାପାତ ମରିଗଲେ । ଶ୍ରାଦ୍ଧ କେମିତି କରିବି ? ରାମବାବୁ ପାଲଟା ମନ୍ତବ୍ୟ ଦେଇ କହିଲେ - କରି ନେଉନା, ରଖିବ କାହିଁକି ? ଟୁନା ନୀରବ ରହିଲା ତା'ର ଅସହାୟତା ରାମବାବୁ ବୁଝି ପାରିଲେ । ସେ କିନ୍ତୁ ଭିନ୍ନ ଏକ ଉଦ୍ଦେଶ୍ୟ ନେଇ ଆସିଥିଲେ । ସେଥି ପାଇଁ ଟୁନା ସହ ସମ୍ପର୍କ ଯୋଡ଼ିବା ଆବଶ୍ୟକ ଥିଲା, ମନର ଭାବକୁ ଗୋପନ ରଖି ସେ କହିଲେ - ଜାଣେ, ଜାଣେ ସବୁ । ତୁମର ଅସହାୟତା କ'ଣ ତାହା ଜାଣିଛ (ତା'ର ସମାଧାନ କିପରି କରାଯିବ ସେଥିପାଇଁ ତ ଆସିଚି ତେବେ ତମେ ଯଦି ରାଜି ହୁଅ । ଟୁନା କିଛି କହିବା ଆଗରୁ ଚମ୍ପା କହିଲା କୁହନ୍ତୁ ଆଜ୍ଞା ! ଆପଣତ ବଡ଼ ଲୋକ, ଆପଣଙ୍କ କଥା ନମାନି ଆଉ କାହା କଥା ମାନିବୁ ? ରାମବାବୁ ଚାହିଁଲେ ଚମ୍ପା ଆଡ଼େ । ଚମ୍ପା ଶ୍ୟାମାଙ୍ଗୀ ହେଲେ ବି ଥିଲା ଖୁବ୍ ସୁନ୍ଦରୀ । ଶ୍ୱଶୁରଙ୍କ ବିୟୋଗରେ ସାମାନ୍ୟ ବିଷର୍ଣ୍ଣ ଦିଶୁଥିଲେ ବି ମୁଖଶ୍ରୀର ଶୋଭା ଅଦ୍ୟାବିଧି ମଳିନ ପଡ଼ି ନଥିଲା । ରାମବାବୁଙ୍କ ଆଖିରେ ଆଖି ମିଶାଇ ସେ କହିଲା କିଛି ଉପାୟ ବତାନ୍ତୁ, ବାବୁ । ଶ୍ୱଶୁରଙ୍କ ଶୁଦ୍ଧିକ୍ରିୟା ପାଇଁ ଆମେ କିଛି ଟଙ୍କା ଚାହୁଁ । କହନ୍ତୁ ବାବୁ ଆମକୁ ଏତେ ଟଙ୍କା କିଏ ଦେବ ? ରାମବାବୁଙ୍କର ମନେ ହେଲା ଚମ୍ପା ଯେପରି ତା'ର ଲୋଭନୀୟ ଚାହାଣୀ ଫିଙ୍ଗୁଛି ଆଉ ସେ ଚାହାଣୀରେ କ'ଣ କି ଯାଦୁ ଅଛି କେଜାଣି, ଜାଳି ଦେଉଛି ସର୍ବାଙ୍ଗ । ନିଜକୁ ନିଜେ ସମ୍ଭାଳି ନେଇ ରାମବାବୁ କହିଲେ - କହିବାକୁ ଆସିଚିତ ମାନିବ ଯଦି.... । ଗାଁର ଉତ୍ତର ପଟେ ଟୁନାର ଯେଉଁ ଚାରି ଡିସିମିଲି ପିତୃଅର୍ଜିତ ଡିହଖଣ୍ଡେ ଥିଲା ରାମବାବୁ ସେ ପ୍ରସଙ୍ଗ ଉଠାଇଲେ । ଚୁକ୍ତି ହେଲା ଯେ ଟୁନା ସେ ଜମି ଖଣ୍ଡକ ରାମବାବୁଙ୍କୁ ଦେବ ଓ ରାମବାବୁ ତା'ର ମୂଲ୍ୟ ବିନିମୟରେ ଦଶହଜାର ଟଙ୍କା ଦେବେ । ଟୁନାର କିନ୍ତୁ ଶବ୍ଦ ଶୁଣି ଆଶ୍ଚର୍ଯ୍ୟ ହେଲେ ରାମବାବୁ । ଟୁନା ଗମ୍ଭୀର ଦେଖାଗଲା କହିଲା - ଯେଉଁ ଜମି ବାପା ବିକି ନଥିଲେ, ସେଇ ଜମି ଆଜି ମୁଁ ବିକିବି ? ରାମବାବୁ କହିଲେ ଜମି ଆଉ ଥାଏ କାହିଁକି ? ସୁବିଧା ଅସୁବିଧାରେ ଯଦି କାମରେ ନ ଲାଗିଲା ତେବେ ସିଏ କୋଉ କାମକୁ ? ମନବ୍ୟଥା ମନରେ ଚାପି ରଖି ଶେଷରେ ରାମବାବୁଙ୍କୁ ଜମି ବିକିଦେଲେ ଟୁନା । ବାପାଙ୍କ ଶୁଦ୍ଧିକ୍ରିୟା ସରିଲା ଟିକିଏ ଶାନ୍ତିରେ ନିଃଶ୍ୱାସଟିଏ ନେଲା ଟୁନା । ଦିନେ ସ୍ତ୍ରୀ ଚମ୍ପା କହିଲା - ରାମବାବୁ ଜଣେ ଭଲ ଲୋକ । ଟୁନା ନିଜର ଅନିଚ୍ଛା ସତ୍ତ୍ୱେ ବି ହଁ କହିଲା । ପରକ୍ଷଣରେ ଅନ୍ୟମନସ୍କ ହୋଇଗଲା ମଧ୍ୟ । ଜମି କିଣା ଦିନୁ ରାମବାବୁ ଆତ୍ମୀୟ ଭଳି ଜଣା ପଡୁଛନ୍ତି । ସେ ନିୟମିତ ଟୁନା ଘରକୁ ବୁଲି ଆସୁଛନ୍ତି ଓ ଭଲମନ୍ଦ ଆଳାପ ଆଲୋଚନା ଅନ୍ତେ ଫେରି ଯାଉଛନ୍ତି । ତାଙ୍କର ଏହି ଆତଯାତ ପାଇଁ ସମୟ ସୀମା ଆଦୌ ନାହିଁ, କେତେବେଳେ ବଡ଼ି ଭୋରରୁ ଆସୁଛନ୍ତିତ କେତେବେଳେ ବାରଟାରେ କିମ୍ବା କେତେବେଳେ ସନ୍ଧ୍ୟାରେ । ଦିନେ ପୁଣି ହଠାତ୍ ଚମ୍ପା କହିଲା ରାମବାବୁ ଆସିଥିଲେ । ଆସିତ ଥିଲେ ମାତ୍ର କାହିଁକି ? ତାଙ୍କର କି କାମ ଥିଲା ? ଏଁ ତମେ ଶୁଣିଲେ ଭାରି ଖୁସିହେବ । ଟୁନା ଅନ୍ୟମନସ୍କ ହେଲା । ତା'ର ଧାରଣା ଥିଲା ଭିନ୍ନ । ସେ ଚମ୍ପାକୁ ସନ୍ଦେହ କରୁଥିଲା । ଭାବୁଥିଲା ରାମ ବାବୁ ଚମ୍ପାପ୍ରତି ଆକୃଷ୍ଟ ନୁହନ୍ତିତ ? ଆଗେଇ ଆସିଲା ଚମ୍ପା । ଟୁନାର ଖୁବ୍ ନିକଟତର ହୋଇପଡ଼ି ସୁହାଗିଆ ଢ଼ଙ୍ଗରେ ଟୁନା କାନ୍ଧରେ ଦୁଇ ବାହୁ ଛନ୍ଦି କହିଲା - ରାମବାବୁ ଜଣେ ଖୁବ୍ ଭଲଲୋକ । କହୁଥିଲେ କାଲିଠାରୁ ଆମ ଦୁହିଁଙ୍କୁ ତାଙ୍କ କାମରେ ଲଗାଇବେ । ପ୍ରତିଦିନ ମଜୁରୀ ଦେବେ । ଦୁହେଁ ରୋଜଗାର କରିବା କ୍ଷତି କ'ଣ ? ଟୁନା କହିଲା ଠିକ୍ ଅଛି, ଏଥିପାଇଁ ମୁଁ ରାଜି ଅଛି । କୌଣସି

ବ୍ୟକ୍ତିଙ୍କୁ ବିନା ପ୍ରମାଣରେ ଭ୍ରମ ଆଶଙ୍କା କରି ଦୋଷାରୋପ କରିବା ଦୋଷାବହ । ଏ କଥାଟିକୁ ବର୍ତ୍ତମାନ ଅଙ୍ଗେ ଅଙ୍ଗେ ଅନୁଭବ କରୁଥିଲା ଟୁନା । ଚମ୍ପାକୁ ଦୋଷ ଲଦୁଥିଲା । ରାମବାବୁଙ୍କୁ ସନ୍ଦେହ କରୁଥିଲା । ସହସା ନିଜର ଧାରଣା ଭ୍ରାନ୍ତ ମନେ ହେଲା ତାକୁ । ବରଂ ରାମବାବୁ ଜଣେ ଭଦ୍ର, ନିଷ୍ପାପ, ଓ ଉଦାର ବ୍ୟକ୍ତି ବୋଲି ବିଶ୍ୱାସ ହେଲା ତା'ର । ମାସ ତିନୋଟି ଅତିବାହିତ ହେଲାଣି । ଟୁନା ଆଉ ଚମ୍ପା ରାମବାବୁଙ୍କ ଚାଉଳ ମିଲ୍‌ରେ କାମ କରୁଛନ୍ତି । ଟୁନା ମିଲ୍‌ରେ ମିସ୍ତ୍ରୀ କାମ କରୁଛି ମେସିନ୍‌ର ଷ୍ଟାର୍ଟ କାର୍ଯ୍ୟ ଆରମ୍ଭରୁ ବସ୍ତାବସ୍ତା ଧାନ ପେଷାଉଛି । ଚମ୍ପାବି ମିଲ୍ ଘରେ ଝାଡୁ ମାରିବା, କୁଣ୍ଡା ଅଧିକ ହେଲାପରେ ବିରାଟ ଗଦାକୁ ଖାଲି କରିବା । କୁଣ୍ଡାରୁ ଖୁଦକି ଚାଉଳ ଅଲଗା କରିବା ଆଦି କାର୍ଯ୍ୟ କରୁଛି । ସନ୍ଧ୍ୟାରେ ଦୁହେଁ ଫେରୁଛନ୍ତି ଘରକୁ । ତା' ପରେ ରନ୍ଧାବଢ଼ା କରୁଛନ୍ତି । ଟୁନାର ବେଳେବେଳେ ମନେପଡ଼େ ବାପାଙ୍କ କଥା । ସେ କହୁଥିଲେ ବାବୁରେ ! ମଣିଷ ଜାତି ବଡ଼ କୃତଘ୍ନ; ଜଗିରଖି ଚଳୁଥିବୁ । ବାପାଙ୍କୁ କାଠ ଉପରେ ଶୁଆଇ ଦେଇ ନିଆଁଢାଳି ଆସିଥିଲା ଟୁନା । ବାପା ସିନା ନାହାଁନ୍ତି; କିନ୍ତୁ ଜୀବନ୍ତ ଅଛନ୍ତି ସେ କହି ଯାଇଥିବା କେଇପଦ କଥା ଓ ଉପଦେଶ । ସେଦିନ ମିଲ୍ କାର୍ଯ୍ୟ ହୋଇ ପାରୁ ନାହିଁ । ଯାନ୍ତ୍ରିକ ଗଣ୍ଡଗୋଳ ହେତୁ କଳ ବନ୍ଦ । ସେ ଗଦାଗଦା ଧାନ ନାହିଁକି ଲୋକଭିଡ଼ ନାହିଁ ଟୁନା ଭାବୁଥିଲା, ଦିନଟାକୁ ଛୁଟି ଦିନ ରୂପେ ପାଳନ କରିବ । କୁକୁଡ଼ା ଫୁକୁଡ଼ା କରି ମାଂସ ଖାଇ ଦିନଟାକୁ ବେଶ୍ ମୌଜ ମଜ୍‌ଲିସିରେ କଟାଇବ । ଚମ୍ପା କହିଲା ବାବୁଆଣୀ କହିଛନ୍ତି ଆଜି ମୁଁ ଘରେ ରହିବି ନାହିଁ । ଟୁନା ପଚାରିଲା କାହିଁକି ଆଜି ମୁଁ ଯାଉନାହିଁ, ତୁ କୁଆଡ଼େ ଯିବୁ ? ଚମ୍ପା କହିଲା ବାବୁଆଣୀ କହୁଥିଲେ ତାଙ୍କ ଶୋଇବା ଘର କୋଠରୀଟା ସଫା କରିଦେବାକୁ । ବେଳାଟାଏ କାମ କରିଦେଲେ ସରିଯିବ । ହଉ ଯା ମୁଁ ଯାଏ ଟିକିଏ ମାଂସ ନେଇ ଆସେ ରନ୍ଧାରନ୍ଧି କରି ରଖିଥିବି ତୁ ଆସିଲେ ଖାଇବା । ଚମ୍ପା ଚାଲିଗଲା ଟୁନା ବି ଚାଲିଗଲା ବଜାର ସଉଦା କରିବାକୁ । ସଉଦା କରି ପାନ ଦୋକାନରୁ କଠାଏ ବିଡ଼ି ଓ ଡ଼ିଆସିଲିଟିଏ ନେଇ ସେ ପହଞ୍ଚିଗଲା କୁକୁଡ଼ା ଦୋକାନରେ । କୁକୁଡ଼ା ଦୋକାନରେ ତା'ର ଦେଖା ହୋଇଥିଲା ରାମବାବୁଙ୍କ ଘରର ଚାକରାଣୀ ବୁଢ଼ୀ ସହ । ଟୁନା ପଚାରିଲା ଆଜି କ'ଣ ମାଂସ ଯାଉଚିକି ? ଚାକରାଣୀ ବୁଢ଼ୀ କହିଲା - ହଁ ବାବୁ ପରା କହିଛନ୍ତି । ବାବୁଆଣୀ ଆଜି ସକାଳୁ ବାପଘରକୁ ଚାଲିଯାଇଛନ୍ତିତ ! ବାବୁଆଣୀ ଥିଲେ କ'ଣ କୁକୁଡ଼ା ମାଉଁସ ପୂରେଇ ଦିଅନ୍ତେ ଘରେ ? ଟୁନା ଦେହରେ ନିଆଁ ଚରିଗଲା । ଏଁ ବାବୁଆଣୀ ଆଜି ସକାଳୁ ବାପ ଘରକୁ ଯାଇଛନ୍ତି !!! ଚମ୍ପାତ କହୁଥିଲା ବାବୁଆଣୀ ତାକୁ କହିଥିଲେ ତାଙ୍କ ଶୋଇବା ଘର ସଫାହେବ ବୋଲି ! ଚମ୍ପା ତାକୁ ତାହାଲେ ମିଛ କହିଲା ? ଟୁନାର ମନେ ପଡ଼ିଗଲା ଚମ୍ପାର କଥା - ରାମବାବୁ ଭାରି ଭଲ ଲୋକ.... ଟୁନାର ଦେହରେ ନିଆଁ ଧୀରେ ଧୀରେ ମୁଣ୍ଡକୁ ଉଠୁଥିଲା ... ।



# କଟକରୁ ବାଙ୍କୀ : ଏକ ଯାତ୍ରାନୁଭୂତି

*ସରିତା ସାହୁ*
+୨ ପ୍ରଥମ ବର୍ଷ କଳା

ପ୍ରଥମରୁ ମୁହଁଟା କେଉଁଠି ଦେଖିଲା ଦେଖିଲା ପରି ଲାଗୁଛି । ଠିକ୍ କିନ୍ତୁ ମନେ ପଡୁନି ? ସତରେ ଭାରି ବିରକ୍ତ ଲାଗେ । ଚିହ୍ନିବା ପରି ଲାଗୁଥିବା ବ୍ୟକ୍ତି ଅଥଚ ଚିହ୍ନି ପାରୁନ ଥିବ । ହଁ କଟକରୁ ଟାକ୍ସି ଗାଡ଼ି ଭଡ଼ା କରି ଆଣିବା ଯାହା ତାହା ଘୋଡ଼ା ୬ ଟଙ୍କାକୁ ଦାନା ୯ ଟଙ୍କା ପରିକା । ତେଣୁ ବାଧହୋଇ ବସ୍‌ରେ ଆସିଲି, ଜାଣି ଜାଣି ଅନ୍ୟମନସ୍କ ହେବାକୁ ଚେଷ୍ଟା କରି ମୁଁ ଝରକା ଦେଇ ବାହାରକୁ ଚାହିଁଲି । ବସ୍‌ଟା କ୍ଷିପ୍ର ଗତିରେ ଚାଲିଛି । ବାହାରର ଦୃଶ୍ୟ ଏକ ସବୁଜ ଶ୍ୟାମଳ ବନାନୀ କ୍ଷେତ ଏବଂ ଦୂର ପାହାଡ଼ ଓ ମହାନଦୀର ଗତିଶୀଳ ପଥ ପରି ।

କିନ୍ତୁ ବସ୍‌ରେ ଯିବା ଆସିବା ଆଦୌ ଭଲ ଲାଗେନି । ଯଦି ଏଇଟା ବସ୍ ନହୋଇ ଟ୍ରେନ ହୋଇଥାନ୍ତା ଆଉ ଝରକା ଦେଇ ଧାନ ଗଛଗୁଡ଼ାକ ଦେଖୁ ଦେଖୁ ବାଦାମ୍ ଗୋଟେ ଗୋଟେ ପାଟିରେ ପକାଉଥାନ୍ତି ।

ହୋ - ବୁଢ଼ାବାବୁ

ଅସ୍ୱାଭାବିକ ବିରକ୍ତପୂର୍ଣ୍ଣ ସ୍ୱରରେ ଫେରି ଚାହିଁଲି । ସର୍ଟ ସାଟ୍, ଲମ୍ୱାକଲୀ ଧାରି ଜଣେ ଯୁବକ ।

ମୁଁ ଏହି ସିଟ୍‌ରେ ପେପରଟା ପକାଇ ଡ୍ରାଇଭର ସାଂଗେ ଟିକେ କଥା ହୋଇ ଆସୁ ଆସୁ ତୁମେ ପେପ୍‌ର ଟାକୁ ଉଠାଇ ସାଙ୍ଗେ ସାଙ୍ଗେ ବସିଗଲଣି । ଉଠ, ସତେଯେପରି ଏ ସିଟ୍‌ଟା ପାଇଁ ଇଏ ଟିକେଟ୍ କାଟି ବସିଛନ୍ତି - ଉଠ ନ ହେଲେ ଗୋଟେ ଜାବୁଡ଼ା ପକାଇ ଦେବି ?

''ନାଇଁ ବାବା ମୁଁ ଜାଣେନି ତୁମେ ରଖିଛ ବୋଲି । ବୁଢ଼ା ଲୋକ ଛିଡ଼ା ହେବାକୁ ବଳ ପାଉନି '' ।

ବଳ ଯଦି ନ ପାଉଛି ଠିଆ ହେବାକୁ ତେବେ କାର୍‌ରେ ଆସୁନ । ଉଠ ଉଠ ହାତଧରି ଉଠାଇ ଦେଲେ ଯୁବକ ଜଣକ ''ବୃଦ୍ଧଙ୍କୁ'' ଓଃ ମଣିଷ କେତେ କଷ୍ଟରେ ପଇସା ଦେଇ ଟିକେଟ୍ କାଟି ଝରକା ପାଖ ସିଟ୍‌ଟା ରଖିଛି । ଶଳା, କଣ୍ଡକ୍ଟର ଏଠି ଛିଡ଼ା ହୋଇ ଘୁମାଉଛି । ଆଉ ଦେଖିପାରୁନି ମୁଁ ଏଠି ସିଟ୍‌ଟା ରଖି ପେପରଟା ପକାଇ ଟିକେ ଡ୍ରାଇଭର ସାଙ୍ଗେ କଥାବାର୍ତ୍ତା ହୋଇ ଭିଡ଼ ଠେଲି ଆସୁ ଆସୁ ଏ ଶଳା ବୁଢ଼ାଟା ସିଟ୍‌ଟା ଅଧିକାର କରିସାରିଲାଣି ।

ମୁହଁରେ ବିଜୟୀର ହସନେଇ ସିଟ୍‌ରେ ବସି ପଡ଼ିଲେ ଲମ୍ୱାକଲିଧାରୀ ଯୁବକ ଜଣଙ୍କ; କିନ୍ତୁ ବୃଦ୍ଧ ଜଣଙ୍କ ସତରେ ଛିଡ଼ା ହେବାକୁ ବଳ ପାଉ ନଥିଲା । ମିଛ କହୁ ନଥିଲେ ସେ ଭାରି ଖରାପ ଲାଗିଲା ମତେ ପଛ ସିଟ୍‌ରେ ବସି ।

''ମଉସା ଆପଣ ଏଠି ବସନ୍ତୁ ମୋ ସିଟ୍‌ରେ ଛିଡ଼ା ହୋଇପଡ଼ି କହିଲି ମୁଁ । ମୋ ମୁହଁକୁ କେତେ ସମୟ ଯାଏ ଅନେଇଲେ ବୃଦ୍ଧ ଜଣକ ।

ନାଇଁଲୋ ଝିଅ ତୁ ବସ୍, ଝୁଅ ପିଲାଟା, ଠିଆ ହେବୁ କ'ଣ ?

ନାନା ମୋର ଚଳିବ । ବେଳେବେଳେ ଭିଡ଼ ଯୋଗୁ ଠିଆ ହୋଇ ହୋଇ ବାଙ୍କୀ ଆସେ । ଆପଣ ଏଠି ବସନ୍ତୁ ।

ତୁ କ'ଣ ପାଠ ପଢୁଛୁ ଝିଅ ? ବସିକରି ପଚାରିଲେ ବୃଦ୍ଧ ଜଣକ ।

ଏଁ........ହଁ ।

ଅନ୍ୟମନସ୍କ ଥାଇ ଉତ୍ତର ଦେଲି –ଭାରିତ ଦରଦ । ବୃଦ୍ଧ ଜଣଙ୍କୁ ସିଟ୍‌ରୁ ଉଠାଇ ସିଟ୍ ଅଧିକାର କରିଥିବା ସବଳ ଯୁବକଙ୍କ ଏଇ ମନ୍ତବ୍ୟରେ ସାମାନ୍ୟ ଅନ୍ୟମନସ୍କ ହୋଇ ପଡ଼ିଲି ମୁଁ । ଧେତ୍ କ'ଣ ମିଳିବ ସେ ବାଜେ କଥାରୁ ? ମୋର ସତରେ ଭାରି ଗୋଟେ ବାଜେ ଅଭ୍ୟାସ ଟିକେ କଥାକୁ ବଡ଼ କରି ଭାବିବା । ମନକୁ ବୁଝାଇବାକୁ ଚେଷ୍ଟା କଲି । ଏମିତି ଚଳନ୍ତା ବସ୍‌ରେ ଛିଡ଼ା ହୋଇ ଆଉ କ'ଣ କରାଯାଇପାରେ ? ଝରକା ଦେଇ ମହାନଦୀକୁ ଅନେଇଲି ନା ଚେଷ୍ଟା କରି ମଧ ପାରୁନି । କାରଣ ବୃଦ୍ଧଙ୍କ ଉପରେ ନଜର ପଡ଼ିଲା । ଚିହ୍ନା ଚିହ୍ନା ଲାଗୁଛି ଧେତ୍ ସେହି ପ୍ରୋବ୍ଲେମ୍ ପୁଣି ।

ବାଙ୍କୀ ଆଉ କେତେ ବାଟ ରହିଲା ? ବସ୍‌ଟା ରହିଲା ଛୋଟ ଗୋଟେ ଗାଁରେ । ବାଙ୍କୀ ଆସିବା ବାଟରେ ହଜାର ଗାଁ ପଡ଼ିବ ଯାହାର ନାଁ ବହୁତ ଥର ବି ଚେଷ୍ଟା କରି ମନେରଖି ପାରୁ ନାହିଁ । ସହଜେତ ବାଙ୍କୀରେ ରହୁଛି । ବାହାରକୁ ଗଲାବେଳେ ମାଉସୀ ଝିଅ, ମାମୁଁ ଝିଅ ଓ ପୁଅ ''ବାଙ୍କୀ ନାନୀ'' ବୋଲି କହି ବସେଇ ଉଠେଇ ଦେଉନାହାନ୍ତି ।

ଜଣେ ଯୁବତୀ ସେଇ ଗାଁରୁ ବସ୍‌କୁ ଉଠିଲେ । ଜାଗାତ ନାହିଁ ବସିବେ କେଉଁଠି ? ଅନେକ ଥର ଦେଖାହୋଇଛି ପାଖ ଗାଁର ସ୍କୁଲରେ ସେ ସେଠାରେ ଶିକ୍ଷୟିତ୍ରୀ ଅଛନ୍ତି ।

''କିଛି ଯଦି ନ ଭାବନ୍ତି ଏଇଠି ବସିଯାନ୍ତୁ । ମୁଁ ଛିଡ଼ା ହୋଇ ଯାଉଛି ।''

ଶେଷ ପର୍ଯ୍ୟନ୍ତ ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଲମ୍ବା କଲିଧାରୀ ଯୁବକଙ୍କ ମୁହଁରେ ଏ କଥା । ଯୁବତୀଙ୍କ ଉଦ୍ଦେଶ୍ୟରେ କହିଲା ସେ ଯୁବକଟି ମୋ ପାଖରେ ଛିଡ଼ା ହୋଇ ଯୁବତୀ ଜଣକୁ ସିଟ୍ ଛାଡ଼ିଲା । ମୁହଁରେ ହସ ଫୁଟାଇ ବସୁ ବସୁ ଧନ୍ୟବାଦ ଜଣେଇଲେ ଶିକ୍ଷୟିତୀ ଜଣକ । ବସ୍ ଚାଲିଲା ...... ।

ବାଙ୍କୀ ଆହୁରି ଅନେକ ବାଟ । ପୁଣି ବୋର.... ବୃଦ୍ଧ ଜଣକ ମୋ ମୁହଁକୁ ଚାହିଁଛନ୍ତି କିଛି ପଚାରିବା ଉଦ୍ଦେଶ୍ୟରେ । ମୁଁ ଆଗତୁରା ପଚାରିଲି ବୃଦ୍ଧ ଜଣଙ୍କୁ ।

– କେଉଁଠିକି ଯିବେ ମଉସା ।

– ମତେ କହୁଛ ଝିଅ ? ମୁଁ ବାଙ୍କୀ ଯିବି

– ବାଙ୍କୀ

ଦୁଇ ଜଣ ତା'ହେଲେ ଗୋଟିଏ ଗନ୍ତବ୍ୟସ୍ଥଳକୁ ଯାଉଛେ ।

ହଁ ବାଙ୍କୀ ଯିବି ତୋରି ପରି ଝିଅ ପାଖକୁ । ହଷ୍ଟେଲରେ ରହେ ସିଏ । ତୋ ପରି ହୋଇଯିବଣି ପରା ।

ଦଶ ବରଷ ତଳେ ଦେଖିଥିଲି ତାକୁ-

''ସେ କ'ଣ ଆପଣଙ୍କର ନାତୁଣି''

''ନାଁ କିଛି ନୁହେଁ ସେ ମୋର'' ମୁଁ ଯେତେବେଳେ ଟେଲିଫୋନ୍ ଏକସ୍‌ଚେଞ୍ଜରେ କାମ କରୁଥିଲି, ସେ ଆମ ଘର ପାଖରେ ରହୁଥିଲା । ସେ ମତେ ଗେଲରେ କ'ଣ ଡାକୁଥିଲା ଜାଣିଛୁ-ହାଲୋ ସାହେବ୍-କେତେ ବରଷ ତଳେ ବଦଳି ହୋଇଗଲେ ସେମାନେ । ତା'ପରେ ଆଉ ଦେଖା ହେଇନି । ଏବେ କେତେଦିନ ତଳେ ତା' ବାପାଙ୍କ ସହିତ ଦେଖା ହୋଇଥିଲା । ତାଙ୍କ ଘର ଖବର ସହିତ ତାକୁ ଖୋଜିଲି । ତା' ବାପା କହିଲା ସେ ବାଙ୍କୀ କଲେଜରେ ପଢୁଛି, ଆଉ ହଷ୍ଟେଲରେ ରହୁଛି - ।

ସେ ଗପି ଚାଲିଛନ୍ତି ।

ମୁଁ ଅଟକି ଗଲି ''ହାଲୋ ସାହେବ ପାଖରେ । ଏଇ କ'ଣ ଆଉ ''ହାଲୋ ସାହେବ'' ? ଯାହାଙ୍କ କଥା - ଲିଟି-ସବୁବେଳେ କୁହେ । ପିଲାବେଳେ ସେ ତାଙ୍କୁ ବହୁତ ଭଲ ପାଉଥିଲା । ଏ କ'ଣ ସେଇ ହାଲୋ ସାହେବ୍ ଆଉ ଇଏ ଯାଉଛନ୍ତି ଲିଟିକୁ ଦେଖିବାକୁ । ଲିଟି ମୋ ସାଙ୍ଗ । ଭାରି ଭଲ ଝିଅ ଅଟେ । ଏବେ କିନ୍ତୁ ତା' କଥା ମନେପଡ଼ିଲେ ଛାତି ଭିତରଟା କେମିତି କେମିତି ହୋଇଯାଉଛି ।

ସେ ଦିନର ଖବର କାଗଜଟାକୁ ଦେଖୁ ଦେଖୁ ବାହାରି ପଡ଼େ, ଲିଟି ଓ ଗୋଟିଏ କଲେଜ ଛାତ୍ର ଗୋଟିଏ ଆମ୍ବଗଛ ଡାଳରେ ରଶିଲଗାଇ ଆତ୍ମହତ୍ୟା କରିଥିଲେ । ଫଟୋଟିକୁ ଦେଖୁ ଦେଖୁ ସେଦିନ ଛାତି ଭିତରଟା କ'ଣ ହୋଇଗଲା । ସେଇ ଲିଟିକୁ ମଉସା ଦେଖିବାକୁ ଯାଉଛନ୍ତି । କଲେଜକୁ ? ସେ ତ ମହାଯାତ୍ରାର ଅନନ୍ତ ପଥର ଅଫେରାଯାତ୍ରୀ ହୋଇ ଗଲାଣି ।

କ'ଣ ହେଲା ଝୁଅ ? ମୋ କଥା ବୋଧେ ତତେ ଭଲ ଲାଗୁନି ମୁହଁଟା ଏମିତି କରୁଛୁ କ'ଣ ?

ନା, ନା ମଉସା ଖରାପ ଲାଗିବ କାହିଁକି ? ତରତରରେ କହିଦେଲି । ଆଛା ମଉସା ସେଇ ଝିଅଟିର ନାମ ଲିଟି ନୁହେଁ ?

ହଁ ହଁ ଲିଟି । ହେଲେ ମୁଁ ତାକୁ ଗେହ୍ଲାରେ ଲି ବୋଲି ଡାକେ । ତୁ ତାକୁ ଚିହ୍ନୁ ଝୁଅ ? ସେତ କଲେଜର ହଷ୍ଟେଲରେ ରହେ ।

ଏକ'ଣ ମୁଁ ଶୁଣୁଛି ? ମୋର ଅନୁମାନ ତେବେ ମିଛ ନୁହେଁ । ହେଲେ ମୁଁ କ'ଣ ଉତ୍ତର ଦେବି ? କହି ଦେବିକି ଗେହ୍ଲା ଲି ତୁମର ଆଉ ନାହିଁ ....... । ନାଁ ନାଁ ଏକଥା ମୁଁ କହିପାରିବିନି, ବିଚରା ନିରୀହ ବୃଦ୍ଧ ଜଣକ ଦୁଃଖରେ ଭାଙ୍ଗି ପଡ଼ିବେ । ଦୀର୍ଘ ଦଶବର୍ଷର ସାଇତା ସ୍ନେହ ତା' ପାଖେ ଅଜାଡ଼ି ଦେବାକୁ ଏ ବୁଢ଼ା ବୟସରେ ସେ ଏତେ ପରିଶ୍ରମ କରି ଯାଉଛନ୍ତି । ତାଙ୍କୁ ମୁଁ କ'ଣ ସହଜରେ କହି ଦେଇ ପାରିବି । ସେ ଯାଉଛନ୍ତି ଶୂନ୍ୟରେ କୁହୁଡ଼ି ପହଁରିବାକୁ । ମୋ ଆଖିରେ ଟିକେ ଲୁହ ଆସିଗଲା । ପୁଣି ସେହି ପ୍ରଶ୍ନ ?

ତୁ କ'ଣ ତାକୁ ଚିହ୍ନିଛୁ ?

ମୁଁ ଜାଣିପାରୁନି କ'ଣ ଉତ୍ତର ଦେବି । କହି ଦେବିକି ଚିହ୍ନିନି ବୋଲି ।

ନା - ହଠାତ୍ ମୋ ପାଟିରୁ ବାହାରି ପଡ଼ିଲା ।

ଲମ୍ବା କଲିଧାରୀ ଯୁବକ କଥା ମୁଁ ଭୁଲି ଯାଉଛି । ହଠାତ୍ ବସଟି ବ୍ରେକ୍ ଦେଇ ରହିଲା । ମୁଁ ଚାହିଁ ଦେଖିଲା ବେଳକୁ ବାଙ୍କୀରେ ଆସି ବସ୍‌ଟି ରହିଲା । ସବୁ ଲୋକ ଗୁଡ଼ାକ ଓହ୍ଲାଇଲା ଭିତରେ ମୁଁ ଦେଖୁଥିଲି ବୁଢ଼ା ମଉସା କେତେ ଶୀଘ୍ର କଲେଜ ଆଡ଼େ ଚାଲିଯାଉଛନ୍ତି ।



# ଅନୁର ଅଧିକାର

ସନ୍ତୋଷ କୁମାର ରାଉତ
+୩ ତୃତୀୟ ବର୍ଷ ବିଜ୍ଞାନ

ମୋ ବାପାଙ୍କର ଘର, ମୁଁ ଯାହାକୁ ରଖିବି - ଏତେ ଟିକିଏ ଜାଗାରେ କ'ଣ ମୋର ଅଧିକାର ନାହିଁ ?

ନଅ ବରଷର ଝିଅଟି ଦୁଇହସ୍ତରେ କୁକୁର ଛୁଆଟି ଧରିଛି, ଆଉ ଅଗ୍ନିବର୍ଷୀ ଦୃଷ୍ଟିରେମା'ଙ୍କୁ ଦେଖୁଛି ।

ସୁରମା ସ୍ଥିର ହୋଇଯାଆନ୍ତି, ସୁରମା ପଥର ହୋଇଯାଆନ୍ତି । ତାଙ୍କ ତୁଣ୍ଡରୁ କଥା ବାହାରେ ନାହିଁ । ସୁରମା, ଅନୁର ମା' ।

ନ' ବରଷର ଅନୁ ମୁହଁରୁ ଏତେ ବଡ଼ କଥାଟେ ବାହାରିଲା, ଏହା ବୁଝିବାକୁ ତାଙ୍କୁ ବେଶି ସମୟ ଲାଗିଲା ।

ଅନୁ କିନ୍ତୁ ଶାନ୍ତ ଶିଷ୍ଟ ପିଲା ନୁହେଁ । ଜାମା, ପେଣ୍ଟ ପସନ୍ଦ ନହେଲେ, ମା'ଙ୍କର ବାଳକୁଣ୍ଡା ପସନ୍ଦ ନହେଲେ ରାଗିଯାଇ କହେମୋର ଇଚ୍ଛାମତେ ଫ୍ରକଖଣ୍ଡେ ପିନ୍ଧିବାକୁ ମିଳୁନାହିଁ କାହିଁକି ? ମୋ ବାପା ତ ମୋତେ ଏତେ ଫ୍ରକ କିଣି ଆଣୁଛନ୍ତି । ସୁରମାଙ୍କ ପସନ୍ଦ ଅନୁସାରେ ଅବଶ୍ୟ ତାକୁ ପିନ୍ଧିବାକୁ ପଡ଼େ । ଅନୁର ମୁହଁ କିନ୍ତୁ ରାଗରେ ଲାଲ ପଡ଼ିଯାଏ ।

ତା'ପରେ ଆଡୁଆଳରେ ରମେଶ କହନ୍ତି ସୁରମାଙ୍କୁ— ଏତେ ତୁଚ୍ଛ କଥାରେ ତାକୁ କାହିଁକି ରଗାଇ ଦିଅ ? ତା' ଇଚ୍ଛାରେ ସେ ପିନ୍ଧୁ କ୍ଷତି କ'ଣ ? ରମେଶ ଅନୁର ବାପା । ସୁରମା କହନ୍ତି ଏତେ ଛୋଟ ଦିନରୁ ସ୍ୱେଚ୍ଛାଚାରୀ ହେଲେ ଚଳିବ କେମିତି ? ସେ ଯାହା ହେଉ ଅନୁ ଏକଥା କହିଲା କାହିଁକି ? ଘରଟା ମୋ ବାପାଙ୍କର ସେଥିରେ ମୋର ଅଧିକାର ଅଛି । ଏ ବୁଦ୍ଧି ତାକୁ ଦେଲା କିଏ ? ଗେହ୍ଲା କରି କେତେବେଳେ ବାପା କହିଛନ୍ତି ନିଶ୍ଚେ । କଥାର ଓଜନ ଥିବା କଥା ରମେଶ ବୁଝନ୍ତି ନାହିଁ । ବର୍ତ୍ତମାନ ଝିଅ ମନରେ ଅଧିକାରର ପ୍ରଶ୍ନ ଉଠିଲାଣି । ପଛରେ ବୁଝିବ ସେ । ସୁରମା ତରକାରୀଟା ବସାଉଛନ୍ତି । କୁକୁର ଭୁକିଲା ଭଳି ଶବ୍ଦ ଶୁଣିଲେ । ଚାକର ଘନଶ୍ୟାମ ପାଖରେ ନାହିଁ । ତା'କୁ ପାଟିକରି କହିଲେ, କ'ଣ କ'ଣ କୁକୁର ଭୁକିଲା ଭଳି ଶବ୍ଦ ହେଉଛି ଦେଖ୍ ତ । ଏତିକି କହି ସେ ଘାଣ୍ଟୁଥିବା ଚାମଚଟି ଧରି ଡ୍ରଇଁ ରୁମକୁ ଧାଇଁଗଲେ । ଯାହାଦେଖିଲେ ତା'ଙ୍କ ମୁଣ୍ଡ ଗରମ ହୋଇଗଲା । ଅନୁ ରୋଗା କୁକୁର ଛୁଆଟିଏ ନର୍ଦ୍ଦମାରୁ ଗୋଟାଇ ଆଣି କୋଳରେ ଧରିଛି । କାଦୁଅ ସରସର କୁକୁର ଛୁଆଟି କାଉଁ କାଉଁ ହେଉଛି -

ସୁରମା ଅନୁକୁ ଉଦ୍ଦେଶ୍ୟ କରି ରାସ୍ତା ଆଡ଼କୁ ହାତ ଦେଖାଇ ସ୍ଥିର ଗଳାରେ କହିଲେ, ଯା ବାହାରେ ଛାଡ଼ିଦେଇଆ ଏକୁ ଭିତରେ । ଅନୁ କିନ୍ତୁ ଭ୍ରୁକ୍ଷେପ କଲା ନାହିଁ । ପକେଟରୁ ବାହାର କରି ବିସ୍କୁଟ୍ ଖଣ୍ଡେ ଖୁଆଇ ବାକୁ ଲାଗିଲା । ସୁରମା ପାଖକୁ ଦୌଡ଼ିଯାଇ ପଚାରିଲେ କ'ଣ ହେଉଛି ଏଇଟା ? ଅନୁ କୁକୁରଟିକୁ ଅଭୟରେ ଆଉ ଟିକେ ଜାବୁଡ଼ି ଧରିଲା । ସୁରମା ଆଦେଶକୁ ଆଉ ଟିକେ ପ୍ରାଞ୍ଜଳ କରି କହିଲେ — ଅନୁ ଯା ଏଟାକୁ ଫିଙ୍ଗି ଦେଇ ଜାମା, ପେଣ୍ଟ ବଦଳି ପକା; କିନ୍ତୁ ଅନୁ କହିଲା 'ନା' । ସୁରମା ଅନୁର ଅବଜ୍ଞା ଦେଖି ରାଗରେ ଜଳି ଉଠି ଘନଶ୍ୟାମକୁ କହିଲେ ଯା' - ଏଟାକୁ ଫିଙ୍ଗିଦେଇ ଚାରିଆଡ଼େ ଫିନାଇଲ ପକାଇ ସଫାକରିଦେ । ଘନଶ୍ୟାମ ପାଖରେ ଥିଲା ଦୌଡ଼ି ଆସିଲା । ଅନୁ ଗର୍ଜି ଉଠିଲା, କହିଲା - ତୁ ଏହା ଦେହରେ ହାତଦେଇ ଦେଖ ତତେ କ'ଣ କରୁଛି । ମାରିକରି ପକେଇ ଦେବି । ସରମାଙ୍କ କଥା ଉପରେ କଥା କହୁଛି - ଏଇ ନଅ ବରଷର ଛୁଆଟି ? ତାଙ୍କ ତୁଣ୍ଡରୁ କଥା ବହାରିଲା ନାହିଁ । ତା'ଦେହରେ କେତେ ରୋଗଜୀବାଣୁ ଅଛି, ତୁ କ'ଣ ଜାଣିନୁ ?

ଅନୁ କହିଲା ହଁ ଜାଣିଛି । କିନ୍ତୁ ୟା'କୁ ବାହାରେ ପକେଇ ଦେଲେ, ମରିଯିବ ଯେ, ମୁଁ ୟାକୁ ବଞ୍ଚାଇବି ମା', ମତେ ଆଉ କିଛି କହ ନାହିଁ । ମା'ଙ୍କ ଉଗ୍ରମୂର୍ତ୍ତିକୁ ଭୟ ନକରି କୁକୁର ଛୁଆଟିକୁ ବଞ୍ଚାଇବାର ଚେଷ୍ଟାରେ ଲାଗିପଡ଼ିଲା । କୁକୁର ଛୁଆଟି ଘର ଭିତରେ ପାଣି, ବିସ୍କୁଟ୍, ଖାଇ ଯେମିତି ଟିକେ ସୁସ୍ଥ ହୋଇଛି, ସଙ୍ଗେ ସଙ୍ଗେ ତା'ର କୁଁ କୁଁ ସ୍ୱରରେ ଚିତ୍କାର ଆରମ୍ଭ କରିଦେଲା ।

ସୁରମା କହିଲେ ତୁ ତ ୟାକୁ ବଞ୍ଚାଇବୁ, ତତେ ବଞ୍ଚାଇବ କିଏ ? ଅନୁ ରାଗିଯାଇ ମନେ ମନେ କୁକୁର ଉଦ୍ଦେଶ୍ୟରେ କହିଲା ତୋ'ର ତ ଏଇ ଗୁଣ ଯୋଗୁଁ ତୁ କଷ୍ଟ ପାଉଛୁ ? ନ ହେଲେ ନାଳରେ ଫୋପଡ଼ା ହୋଇ ଥା'ନ୍ତୁ କାହିଁକି ? ତୋ ଯୋଗୁଁ ମୁଁ ମଧ୍ୟ କଷ୍ଟ ପାଉଛି । ଦେଖୁଛୁ ତ ମୋ ମା' କେତେ ରାଗୀ ? ଏମିତି କିଏ ତୋ ମା'ଠାରୁ ତୋତେ ଟାଣି ଆଣି ଫିଙ୍ଗି ଦେଇଛି । ଅନୁମା ବାପାଙ୍କ କଣ୍ଠସ୍ୱର ଶୁଣିବାକୁ ପାଇଲା । ବାପା, ଏତେ ଡେରିକଲ କାହିଁକି ? ବାପା ଉତ୍ତର ନ ଦେଇ କୁକୁର ଆଡ଼େ ଦେଖିବସିଲେ । ଦେଖିସାରି କହିଲେ, ଏଡ଼େ ଦୁର୍ବଳ କୁକୁରଟେ କୁଆଡୁ ଆଣିଲୁ ? କ୍ଷୀର ଟିକେ ଦେଇ ଦେଲୁ ନାହିଁ ? ମୁଁ ତ ସେଇ ଚେଷ୍ଟାରେ ଅଛି ବାପା । ନ ହେଲେ ବଞ୍ଚିବ କେମିତି ? ମୁଁ ସେତିକି ବେଳୁ ଖାଲି ତୁମର ଆସିବାକୁ ଅନାଇ ବସିଛି । ରମେଶ କ'ଣ ଏଇ ସରଳ ଶିଶୁର ବିଶ୍ୱାସକୁ ଭାଙ୍ଗିଦେବ । ନା'ପାରିବେ ନାହିଁ । ମୁଁ ତ କେତେ କହିଲି ଘନଶ୍ୟାମକୁ, କ୍ଷୀର ଟିକେ ଦେଲା ନାହିଁ । ଆଉ ମା' କଥା ତ ଜାଣୁଛ । ରମେଶ କହିଲେ ହଁ, ମା'ତ ଠିକ କହିଛନ୍ତି । ଏହା ଦେହରେ ନାନାରୋଗ ଜୀବାଣୁ ଥିବେ, ତୁ ଏହାକୁ କୋଳରେ ଧରିଛୁ-ଏହା କ'ଣ ଭଲ ? ଅନୁ ଜାଣିଲା ବାପା ସବୁ ଶୁଣିସାରିଛନ୍ତି, କହିଲା ତା' ହେଲେ ଟିକେ ଗାଧୋଇ ଦେଲେ ହୁଅନ୍ତା ନାହିଁ । ପୁଣି ଟିକେ ଭାବି କହିଲା, ବାପା, ଜ୍ୱର ଥିଲେ କ'ଣ ଗାଧାନ୍ତି ?

ମୁଁ ଜାଣିଛି ବାପା ୟାକୁ ଧରିବା ଦ୍ୱାରା ମତେ କେତେ ରୋଗ ହୋଇପାରେ; କିନ୍ତୁ ୟା'ର ମରିଯିବା ଅପେକ୍ଷା ମୋର ସାମାନ୍ୟ ଅସୁସ୍ଥ କ'ଣ ବଡ଼ ଜିନିଷ ? ବାପା ମୁହଁ ତଳକୁ କଲେ । ଘରକୁ ଆସି ଘନଶ୍ୟାମକୁ କହିଲେ କୁକୁର ଛୁଆଟାକୁ ଟିକେ କ୍ଷୀର ଦେ । ସୁରମା କିନ୍ତୁ ଏତେଟା ଆଶା କରି ନଥିଲେ । ଭାବିଥିଲେ, ଅନୁକୁ ବୁଝାଇ କୁକୁର ଛୁଆଟା ଫିଙ୍ଗିଦେବେ ।

ସୁରମାଙ୍କୁ ଖୁବ୍ ଅପମାନ ଲାଗିଲା, ଏତେଟା ସୁବିଧା ଦେବା କ'ଣ ଠିକ୍ ? ସେ ଟଙ୍କା ଅର୍ଜନ କରୁଛନ୍ତି ବୋଲି କ'ଣ ମୁଣ୍ଡଟା କିଣିଛନ୍ତି ? ତାଙ୍କ ଆଖି ଜଳିଉଠିଲା । କହିଲେ ହଉ ଦେଖିବା । ତାଙ୍କ ମୁହଁଟା କ୍ରମଶଃ କଠୋର ହୋଇଉଠିଲା । ଘନଶ୍ୟାମ କ୍ଷୀର ଆଣିଲା । ବାପା କ୍ଷୀର ଆଣିବାକୁ ଘନଶ୍ୟାମକୁ କହିଲେ । ଅନୁ ଆଗ ଖାଇସାରି ଏହା ଦେହରେ ହାତ ଦେବୁ ବୋଲି ତାଗିଦ୍ କଲେ । ଘନଶ୍ୟାମର କ୍ଷୀର ଆଣିବା ଦେଖି ଅନୁ ଖୁସିରେ ଖାଇବସିଲା । ଅନୁ ଆଜି ପେଟଭରି ଭାତ ଖାଇଲା । ସୁରମା ତାଙ୍କର ଓ ରମେଶଙ୍କ ଭାତ ଆଣି ଟେବୁଲ ଉପରେ ଥୋଉଛନ୍ତି । ହଠାତ୍ ଏକ ଚିତ୍କାର ଶୁଣିଲେ, ଅନୁ ପାଗଳ ଭଳି ପାଟିକରି ଚିତ୍କାର କରିଛି 'ବାପା, ତୁମେ କାହିଁକି ମତେ ଗାଧୋଇବାକୁ, ଖାଇବାକୁ ପଠାଇଲ ? ଏକ ସଙ୍ଗେ ଚାରିଜଣ ଜାକ ଦେଖିଲେ ଛୋଟ କୁକୁର ଛୁଆଟି ଏକ ବିଭତ୍ସଭଙ୍ଗୀ କରି ମରିପଡ଼ିଛି । ତା'ପାଟିରୁ ଲାଳ ବୋହି ଯାଉଛି ।

ରମେଶ ଅନୁର ମୁହଁକୁ ଚାହିଁଲେ । ତା'ପରେ କଠୋର ଦୃଷ୍ଟିରେ ସୁରମା ମୁହଁକୁ ଚାହିଁ ରହିଲେ । ସୁରମାଙ୍କ ମୁହଁରେ ଝଲସି ଉଠୁଥିଲା ବିଷାକ୍ତ କୁଟିଳ ହସ.... ।



# ହତ୍ୟାକାରୀ

*ସନ୍ଦିପ୍ ରଞ୍ଜନ ସାହୁ*
+୨ ପ୍ରଥମ ବର୍ଷ ବିଜ୍ଞାନ

ଆଜି ବସ୍ ରେ ପ୍ରବଳ ଭିଡ଼ । ସିଟ୍ ଟାଏ ଖୋଜୁ ଖୋଜୁ କହାର ପାଦ ଉପରେ ଗୋଡ଼ଟା ପଡ଼ିଗଲା ଯେ ! ସେ ଗୁଡ଼ିଏ ଅଶ୍ରାବ୍ୟ ଭାଷାରେ ବର୍ଷଣ କରିଗଲା । ବିଚରା ଗଦାଧରବାବୁଙ୍କ ଉପରେ । ଓଃ ! ଏ ଭୀଷଣ ଖରାରେ ସେ ଗାଳିର ବର୍ଷଣ ମଧ୍ୟ କୌଣସି ଉପଶମ କରିପାରିଲାନି । ପ୍ରତି ଶନିବାର ଏହି ପରି ଏକ ପରିସ୍ଥିତିରେ ସମ୍ମୁଖୀନ ହେବାକୁ ପଡ଼ିଥାଏ ତାଙ୍କୁ । ବଡ଼ମ୍ବାରୁ ଆଠଗଡ଼ ପୁଣି ଆଠଗଡ଼ରୁ ବଡ଼ମ୍ବା ବସ୍‌ଯାତ୍ରାରେ ହିଁ ସତେଯେପରି ତାଙ୍କର ସମସ୍ତ ଜୀବନ ବ୍ୟୟ ହୋଇଯାଉଥାଏ । ପୁଣି ତା' ଉପରେ ପତ୍ନୀଙ୍କ ଫରମାସ୍ ଏଇଟା ନାହିଁ ସେଇଟା ନାହିଁ, ଅମୁକ ର ବାହାଘର ସମୁକର ବ୍ରତଘର ଇତ୍ୟାଦି...ଇତ୍ୟାଦି.... । ଏ ଖରାଟା ପୁଣି ଏତେ ପ୍ରଚଣ୍ଡ ଯେ ମଣିଷ ଦେହରୁ ସବୁ ପାଣି ନିଗାଡ଼ି ଦେଉଛି । ମଣିଷ ଘରକୁ ଗଲେ ଟିକେ ଶାନ୍ତି ପାଇବ । ନଚେତ୍ ଏ ଗରମ ସାଙ୍ଗକୁ ଏ ଠେଲା ପେଲା ତା' ସାଙ୍ଗକୁ ପୁଣି ଏ ଝାଳର ଦୁର୍ଗନ୍ଧ । ସତେ ଯେପରି ନର୍କ ଯନ୍ତ୍ରଣା । ଗଦାଧରବାବୁ ପାନଖଣ୍ଡେ ପକେଟ୍‌ରୁ ବାହାର କରି ପାଟିରେ ଦେଲେ । ଏଇଟା ତାଙ୍କର ଏକ ଦୁର୍ଗୁଣ । ଯେକୌଣସି ପରିସ୍ଥିତିରେ ଥାଆନ୍ତୁ ପଛକେ ସ୍ଥାନ କାଳ ପାତ୍ର ବିଚାର ନକରି ପାନ ଖଣ୍ଡେ ଗାଈ ଭଳି ପାକୁଳି କରୁଥିବେ ଓ ନାଲି ରଙ୍ଗରେ ପାଖ ଆଖର ସମସ୍ତ ଖୋଲା ବନ୍ଦ ସ୍ଥାନ କୁ ରଙ୍ଗୀନ କରି ଚାଲିଥିବେ । କିନ୍ତୁ ତାଙ୍କର ଅନ୍ୟ କୌଣସି ଖରାପ୍ ଅଭ୍ୟାସ ଯେପରି କି ସିଗାରେଟ୍ ଅଫିମ ଇତ୍ୟାଦି ନଥିବାରୁ ସେ ନିଜକୁ ଏକ ସୁଗୁଣସମ୍ପନ୍ନ ବ୍ୟକ୍ତି ବୋଲି ଭାବୁଥିଲେ ।

ପାଟିଟା ତାଙ୍କର ପାନ ପିକରେ ପୂର୍ଣ୍ଣ ହୋଇଗଲାଣି, କେଉଁଠି ଟିକିଏ ହେଲେ ସ୍ଥାନ ମିଳିଲାନି ତାଙ୍କୁ ଛେପଟିକିଏ ପକାଇବା ପାଇଁ । କାଳେ କାହା ଦେହରେ ରଙ୍ଗ ଲାଗି ଦାଗ ହୋଇଯିବ ଏବଂ ଉତ୍ତମ ମଧ୍ୟମ ବି, ଟା ମଧ୍ୟ ମିଳିଯିବାର ଭୟ ତାଙ୍କୁ ନିୟନ୍ତ୍ରିତ କଲା । ଦୁଇ ହାତରେ ଦିଟା ବ୍ୟାଗ୍ ସାଙ୍ଗକୁ କାନ୍ଧରେ ମଧ୍ୟ ଆଉ ଗୋଟିଏ । ତେଣୁ ହଲିବାର ସୁଯୋଗ ନାହିଁ । ଏହି ସମୟରେ ଡାହାଣ ପାଖ ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ଏକ ସିଟ୍ ଖାଲିହେବାରୁ ତା' ଉପରେ କାହାକୁ ଠେଲି ପେଲି ବସିଗଲେ । ପଛ ପଟରୁ କେତେକ ଅସ୍ପଷ୍ଟ ଅଶ୍ରାବ୍ୟ ତଥା କଟୂକ୍ତି କାନରେ ପଡ଼ିଲେ ମଧ୍ୟ ଝରକା ପାଖରେ ସିଟ୍ ଖଣ୍ଡେପାଇ ନିଜକୁ ଧନ୍ୟ ମନେ କରୁଥିଲେ ଯେପରି କୌଣସି ରାକ୍ଷସ ସମ୍ରାଟ ସ୍ୱର୍ଗାଧିପତିଙ୍କ ସିଂହାସନ ପ୍ରାପ୍ତ ହୋଇଛି । ସେହି ସମୟରେ କଣ୍ଡକ୍ଟର ଆସି ତାଙ୍କୁ ଉଠିବାକୁ କହିବାରୁ ସେ ଅନ୍ୟଏକ ସିଟ୍ ଦେଖାଇ ସେଠାରେ କାହିଁକି ଜଣେ ମହିଳା ବସିଛନ୍ତି ଯଦିଓ ସେଇଟା ମହିଳାଙ୍କ ସିଟ୍ ନୁହେଁ, ବୋଲି ଯୁକ୍ତି ବାଢ଼ିଲେ । ତେଣୁ କଣ୍ଡକ୍ଟର ବିଚରା ନାଚାର ହୋଇ ଚୁପ୍ ଚାପ୍ ନିଜ କାମରେ ଲାଗିପଡ଼ିଲା । ତା' ପରେ ଅନ୍ତତଃ ପାନପିକ ପକାଇବାର ସୁଯୋଗ ମିଳିବାରୁ ଖୁସିରେ କୁହୁଳି ଉଠିଲେ ଗଦାଧରବାବୁ ।

ବସ୍ ନିଜ ଗତିରେ ଚାଲିଛି । ପାନ ଛେପ ବାହାରକୁ ପିଚ୍ କରିପକାଇ ଦେଇ ଆତ୍ମସନ୍ତୋଷ ଲାଭ କଲେ ଶ୍ରୀମାନ୍ ଗଦାଧର ଚୌଧୁରୀ । ମାତ୍ର ତାଙ୍କର ଏହି ଆତ୍ମ ସନ୍ତୋଷ କ୍ଷଣିକ ଥିଲା । ଯେହେତୁ ପଛ ପାଖ ସିଟ୍‌ରୁ ପାଟିତୁଣ୍ଡ ଶୁଭିବା ଆରମ୍ଭ ହୋଇ ଯାଇଥିଲା । ସେତେବେଳେ ଗଦାଧରବାବୁଙ୍କର ପିଳେହି ପାଣି

ହୋଇଗଲା । ଯେତେବେଳେ ସେ ଜାଣିବାକୁ ପାଇଲେ ଯେ ପଛରେ କାହା ମୁଁହରେ ପାନଛେପ ପଡ଼ିଯାଇଛି । ସେ ଆଡ଼କୁ ଅନାଇ ଦେଖିବାର ମଧ ସାହାସ ନଥିଲା ତାଙ୍କର । ପାନଛେପ ଆଉ କାହା ଉପରେ ନୁହେଁ ସେ ଅଞ୍ଚଳର ଜଣେ ଖ୍ୟାତନାମା ରାଜନେତାଙ୍କର ଡାହାଣ ହାତ ବୋଲାଉଥିବା ଟୋକାଜଣକ ଉପରେ ପଡ଼ିଥିଲା । ସେଇଟା ତାଙ୍କ ଅଞ୍ଚଳ ହୋଇଥିବାରୁ ପ୍ରମାଦ ଗଣିବାକୁ ଆରମ୍ଭ କଲେ ଗଦାଧରବାବୁ । ଗାଡ଼ି ମଧ ଅଟକି ଗଲାଣି । ବଜାର ପାଖ ହୋଇଥିବାରୁ ଦଳେ ଟୋକା ମଧ ଘେରି ଗଲେଣି । କେହି ଜଣେ ଭିଡ଼ ଭିତରୁ ପାଟିକରି ଉଠିଲା -ଜଣ ଜଣ କରି ସମସ୍ତଙ୍କ ପାଟି ଦେଖିବାକୁ। ଭୟରେ ପାଟି ଭିତରେ ଥିବା ଅବଶିଷ୍ଟ ପାନତକ ଔଷଧ ଗିଳିଲାପରି ସେ ଗିଳିପକାଇଲେ । ସେତିକି ବେଳେ କେହି ଜଣେ ଏକ ବୃଦ୍ଧକୁ ଦେଖି ପାଟିକରି ଉଠିଲା - ଆରେ ଏଇତ ପାନ ଖାଇଛି । ବୃଦ୍ଧ ଜଣକ ଅତି ଧୀର ଓ ନମ୍ର ଭାବରେ ସେ ପାନଛେପ ପକାଇଥିବା କଥା ମିଛ ବୋଲି ଯେତେ କହିଲେ ମଧ କେହି ଶୁଣିଲେ ନାହିଁ । ଆଉ ଦଳେ ଆସି ସେତେବେଳେ ନିଜ ନିଜର ହାତ ସଫା କରିବାରେ ଲାଗିଗଲେଣି । ବୃଦ୍ଧଙ୍କର ପାଟି କେବଳ ଶୁଭୁଥାଏ ଗଦାଧରବାବୁଙ୍କୁ । କିନ୍ତୁ ସେ ଆଡ଼କୁ ଅନାଇ ସତକଥା କହି ବୃଦ୍ଧଙ୍କୁ ରକ୍ଷା କରିବାର ସତ୍ ସାହସ ମଧ ନଥିଲା ତାଙ୍କର । ହୀନମନ୍ୟତାରେ ପୂର୍ଣ୍ଣ ହୋଇଯାଇଥିଲେ ସେ; କିନ୍ତୁ ସେ ପରିସ୍ଥିତିରେ ସତ କହି ବର୍ତ୍ତିଯିବାର ଆଶା ମଧ ଖୁବ୍ କମ୍ ଥିଲା ତାଙ୍କର । ତା' ପରେ ବହୁ ପାଟିତୁଣ୍ଡ ହଇଚଗୋଳ ପରେ ବସ୍ ଛାଡ଼ିଲା । ତଥାପି ମଧ ବୃଦ୍ଧ ଜଣକଙ୍କର ଆର୍ତ୍ତଚିତ୍କାର ବା ଯନ୍ତ୍ରଣା ଜର୍ଜରିତ କଣ୍ଠସ୍ୱର ଶୁଣି ପଛକୁ ଫେରିଚାହିଁଲେ ନାହିଁ ଗଦାଧରବାବୁ । କେବଳ ଶୁଣିବାକୁ ପାଇଲେ ବୁଢ଼ାଜଣକ କୁଆଡ଼େ ଜଣେ ଅବସରପ୍ରାପ୍ତ ସ୍କୁଲ୍ ମାଷ୍ଟର ।

ସେଦିନ ଘରକୁ ଫେରୁ ଫେରୁ ବହୁତ ଡେରି ହେଲା । ଏକ ପକ୍ଷେ ବସ୍ ସମସାହ ପୁଣି ଗୃହିଣୀଙ୍କ ଚାହିଦା ମୁତାବକ ତଟକା ପରିବା, ତାଜାଫଳ ଖୋଜି ଗାଁ ପାଖ ହାଟରୁ ଫେରି ଘରେ ପହଞ୍ଚିଲା ବେଳକୁ ରାତି ଦଶଟା । ପିଲାଏ ଅପେକ୍ଷା କରି କରି ଶୋଇଗଲେଣି । ଶ୍ରୀମତୀ ଘରେ ପଶୁ ପଶୁ ଫଣ ଫଣ ହୋଇ ହାତରେ ଏକ Medicine List ଧରାଇ ଦେଲେ । ପୁଣି ରାତି ଅଧରେ ବଜାରକୁ ଯାଇ ଔଷଧ ଆଣି ଖାଇପିଇ ଶୋଇଲା ବେଳକୁ ଗୃହିଣୀଙ୍କ ଠାରୁ ଶୁଣିବାକୁ ପାଇଲେ ତାଙ୍କ ବାପା ଗାଁ ରୁ ଆସି ପହଞ୍ଚିଛନ୍ତି । ବାପା ଆସିବାର ଜାଣି ଶ୍ରୀମତୀଙ୍କ ଉଖୁରା ପାଟର କାରଣ ଜାଣିଗଲେ । ବାପାଙ୍କର କ'ଣ ହୋଇଛି ପଚାରିବାକୁ ଯାଇ ଜାଣିବାକୁ ପାଇଲେ ଯେ କେଉଁଠି ଗୋଟେ ପାନ ଛେପ ପକାଇ ବସ୍‌ଲୋକଙ୍କଠାରୁ ମାଡ଼ଖାଇ ଆସିଛନ୍ତି । ଆଗ ଛାମୁଦାନ୍ତ ଚାରିଟା ଗଳିପଡ଼ିଛି, ତା' ସାଙ୍ଗକୁ ଦେହସାରା ଫାଟି ରକ୍ତ ବୋହୁଛି ! ଝିଅ ବାହାଘର ପାଇଁ ସାନପୁଅ ପାଖକୁ ଭୁବନେଶ୍ୱର ଯାଇ କିଛି ଟଙ୍କା ଆଣି ଆସୁଥିଲେ, ସେତିକ ମଧ ସେଥିରେ ଗଲା, ଧୋତି-କୁର୍ତ୍ତା ଫାଟିଛି ସେ ଅଲଗା । ଏସବୁ ଶୁଣି ପାଦତଳୁ ଯେପରି ଭୂମି ଖସିଯାଇଥିଲା । ତାଙ୍କର ମନେ ପଡୁଥିଲା ଛୋଟ ବେଳେ ଯାହା ଭୁଲକଲେ କିମ୍ବା କିଛି ଜିନିଷ ଭାଙ୍ଗି ଦେଲେ କୋଉଠୁ ଗାଳି ଖାଇବା ଭୟରେ ସେ ବାପାଙ୍କ ପଛରେ ଲୁଚି ଯାଉଥିଲେ । ତାଙ୍କର ମନେ ପଡୁଥିଲା ଛୋଟ ବେଳର ଏକ କଥା ''ସତ କହିବାକୁ କିଆଁ ଡରିବି ସତ କହିପଛେ ମଲେ ମରିବି'' । ବାପାଙ୍କ ଆଗକୁ ଯିବାର ସତ୍‌ସାହାସ ହରାଇ ବସିଥିଲେ । ଯଦିଓ ସେ ଜାଣିନଥିଲେ ଯେ ବାପା ତାଙ୍କୁ ବସ୍‌ରେ ଦେଖିନାହାନ୍ତି । ତାଙ୍କୁ ଅନୁଭବ ହେଉଥିଲା ସତେଯେପରି ସେ ଏକ ହତ୍ୟାକାରୀ । କିନ୍ତୁ କାହାର ? ବାପାଙ୍କ ବିଶ୍ୱାସର, ମାନବିକତାର ନା ତାଙ୍କ ନିଜ ବିବେକର ? ଏ ସବୁ ପ୍ରଶ୍ନ ଯେପରି ଏକ ବୁଢ଼ୀଆଣି ଜାଲପରି ତାଙ୍କୁ ଘେରି ଯାଉଥିଲା କିନ୍ତୁ ଛୋଟ ପତଙ୍ଗଟିଏ ପରି ସେଥିରୁ ମୁକୁଳିବାର ଶକ୍ତି ତାଙ୍କର ନଥିଲା



# ଫାଇଭ ଷ୍ଟାର୍ 'ଠୋ'

ମାନସ କୁମାର ସାହୁ
+୩ ଦ୍ୱିତୀବର୍ଷ କଳା (ରାଜନୀତି ବିଜ୍ଞାନ)

ଚଟୁ ହଲେଇ ହଲେଇ ସଚିନ୍ ଷ୍ଟାର ବନିଗଲା । କାଠି ହୁଗାଳି ହୁଗାଳି କପିଳାଟା ଷ୍ଟାର ବନିଗଲା ଆଉ ଅଣ୍ଟା ହଲେଇ ହଲେଇ ବଚ୍ଚନଟା ଷ୍ଟାର କ'ଣ ସୁପରଷ୍ଟାର ହୋଇଗଲା । ହଉ ହେଲା ଆମେ କ'ଣ ଅପାରଗ୍ ଖୁଣ୍ଟା ! ଆମେ କ'ଣ ସେମିତି କିଛି ହଲେଇ, ଦୋହଲେଇ ପାରିବୁନି କି ହୁଗୁଳେଇ ପାରିବୁନି । ଆମେ ପାଞ୍ଚଜଣ ବସି ଚିନ୍ତାକଲୁ, ମାନେ ମୁଁ, ମୋ ସାଙ୍ଗ ମାନସ, ମୁନା, ଲପନ ଆଉ ଗଣେଶ । ନିଜ ନିଜର ଟ୍ୟାଲେଣ୍ଟ ବିଷୟରେ ସମୀକ୍ଷା କରିବାକୁ ଲାଗିଲୁ । ଶେଷରେ ଦେଖିଲୁ ଆମ ସମସ୍ତଙ୍କର କିଛିନା କିଛି ଅଛି । ତେବେ ଆଉ ଡେରି କାହିଁକି । କାମରେ ଲାଗିଗଲୁ, ମାନେ ନିଜ ନିଜର ପ୍ରତିଭା ଝିଡ଼ି ଟାଣି ଖୋଜି, ତା'ର ଭରପୁର ବିକାଶ କରିବାରେ ଆଣ୍ଠୁଗଣ୍ଠି ଛିଣ୍ଡେଇ ଲାଗିଲୁ । ମାନସ ଦେଖି ଦେଖି ଦେଖିଲା ତା'ର ଆଉ ସବୁ ଅପେକ୍ଷା ପଢ଼ାଟା ଭଲ ହଉଚି । ତେଣୁ ଚାକିରି ବାକିରି ନମିଳୁ ପଛେ, ଯାହା ହୋଇଯାଉ ପଛେ ସେ ପଢ଼ା ବହି ଧରି ଖାଲି ବହି ଘୋଷିଲା । ଆଉ କାଗଜ କଲମରେ ପ୍ରବଳ ରମ୍ପାରମ୍ପି କଲା । ସେଠୁ ଏମିତି ହେଲା ଯେ ତାକୁ ଯେତେବେଳେ ଦେଖିଲେ, ପଚାରିଲେ ସେ ଖାଲି ପଢ଼ା କଥା ହିଁ କହିଲା । ଛାଡ଼ ତା' କଥା, ସେ ପଢ଼ା ପିଲା ଧାଡ଼ି ଦେଖିକି ମାଡ଼ିଯିବ, ବିଲ୍‌କୁଲ୍ ବାଁ ଡାହାଣ ହେବ ନି ।

ଲପନ - ସେ ସେମିତି ନ ପଢ଼ି ମଧ୍ୟ ଓଳିଆରୁ ଗଜେଇ କାମଚଳା ପଣ୍ଡିତ । ତେଣୁ ପଢ଼ାକୁ ଅଧିକ ନ ଦେଖି ସେ ତା'ର ଟେହେଣିଆ ହାତକୁ ହଲେଇ, ଗୋଡ଼କୁ ଷ୍ଟାଇଲ୍‌ରେ ଫେରକେଟେଇ ନାଚିଲା । ଆଉ ତା'ର ରଫି, କିଶୋର କୁମାର ଫେଣ୍ଟାଫେଣ୍ଟି ସ୍ୱରରେ ଗଳା ଫଟେଇ ଗାଇ ଲାଗିଲା । ହଁ, ମୁନା– ତା' କଥା କ'ଣ କହିବି । ତା' ଭିତରେ ଭରପୂର ଆକସ୍ମିକ ବିକଳ ପ୍ରତିଭା ଏହାର ଅର୍ଥ ହେଲା ହଠାତ୍ ସେ ଯଦି କିଛି ଗୋଟେ ଭଲ କଥାଟେ ଦେଖିଦେଲା, ତେବେ କଥା ସରିଲା । ସେ ଆଉ କ'ଣ ସମ୍ଭଳା ପଡ଼ିବ କି ? ଖାଲିତ କନ୍‌କନ୍ ଛନ୍ ଛନ୍ ହୋଇ ଉଠି ବସିଲା ହାଉଳି ଖାଇବ । କେମିତି ସେ ସେକଥା କରିବ, ସେପରି ହେବ । ଯେମିତି ଫିଲ୍ମିରେ ହିରୋ ହିରୋଇନ୍ କଥା ଚିନ୍ତା କରିବା ମାତ୍ରକେ – କଳ୍ପନା ରାଜ୍ୟରେ କେଉଁଠି ଯାଇ ନଈ ତୁଠରେ ଟହଲା ମାରନ୍ତି ତ, କେଉଁଠି ପାର୍କର ଫୁଲ ଗାଲିଚା ମଧ୍ୟରେ ଡିଆଁ ମାରନ୍ତି , ସେପରି ମୁନାର ଅବସ୍ଥା । ଥରେ ସେ ସମାଜରୁ ନିଯୁକ୍ତି ବିଜ୍ଞାପନ ସୂଚନା ପଢ଼ି ଏତେ କାଉଳା ହେଲା ଯେ ସେଇ ଦିନ ପାହାନ୍ତାରୁ ଆଣ୍ଠୁଗଣ୍ଠି ଛିଣ୍ଡେଇ ଦୌଡ଼ିବା ଅଭ୍ୟାସ ଜାରି ରଖିଲା, ଏବେ ସୁଦ୍ଧା ମଧ ଦୌଡୁଛି, ବୋଧହୁଏ ଭଗବାନ ତା' ଲକ୍ଷ୍ୟ ପୂରଣ କରିଦେବେ ।

ଏହାପରେ ଗଣେଶବାବୁଙ୍କ କଥା କ'ଣ ବା କହିବି ? ନାଁ ସିନା ଗଣେଶ । ହେଲେ ଏଇ କେଉଁ ଗଣଙ୍କର ଇଶ ନୁହଁନ୍ତି ! ନା ଦେବଗଣରେ ଯା'ନ୍ତି, ନା ମାନବଗଣରେ ଯା'ନ୍ତି, ନା ରାକ୍ଷସଗଣରେ ଯା'ନ୍ତି, ଯେଉଁଥିରେ ନବ ସେଥିରେ ଯିବ । କିଛି ତା'ର କମ୍ପ୍ଲେନ୍ ନାହିଁ । ଯାହା ତା'.... ସାରୁ ପରିବାଟା ତ । ଟିକିଏ ନାକୁଆ ସିନା; କିନ୍ତୁ ଘାଣ୍ଟ ତରକାରୀକୁ ଏକଦମ୍ ଠିକ୍ ।

ଏମିତି ସ୍ୱଭାବ ମଧ୍ୟ ଏକ ପ୍ରକାର ପ୍ରତିଭାରେ ଗଣା । ନାଁ କ'ଣ କହୁଛ ? ଆମ ପାଞ୍ଚ ଜଣିଆ ମେଣ୍ଟରେ ରହି କିଛି କରି ଦେଖାଇବାର ଇଚ୍ଛା ରଖିନଥିଲେ ମଧ୍ୟ କରେଣ୍ଟରେ ଫେଜ୍ ନିଉଟ୍ରାଲ୍ ରହିବା ପରି ଇଏ ବି ଆମ ସାଥିରେ ନିଉଟ୍ରାଲ ପ୍ରତିଭାରେ ଥିଲା ।

ଆଉ ଶେଷରେ ମୋ କଥା କ'ଣ ବା ଅଧିକ କହିବି, ଲାଜ ଲାଗୁଛି କହିଲା ବେଳକୁ । ହେତୁ ପାଇବା ପରଠାରୁ +୨ ଯାଏ ବହୁ ସମୟ ଘରେ କେବଳ ଝରକା ପାଖ ଚେୟାର୍‌ରେ ବସି ବସି ଘରର ଚାରିକାନ୍ଥ ମଧ୍ୟରେ ସୀମିତ ରହିଁ ଉପର ଓରା, ଶେଣୀ ଗଣି ଗଣି ବହୁତ ସମୟ ଲୋକ୍‌ସାନ୍ କରିବାକୁ ପଡ଼ିଛି । +୩ ଫାଷ୍ଟ ଇୟର ବେଳକୁ ମୋ'ଠେଇ ବୋଧେ ଟିକେ ଅକଲ ପଶିଲା । ବାହାର ଲୋକ ମୋତେ ଆସ୍ତେ ଆସ୍ତେ ଜାଣିଲେ । ମୋର **ଷ୍ଟାଣ୍ଡାର୍ଡ଼** ଏକରକମ୍ ଫିଗର ଦେଖି ଟାଉନ୍ କ୍ଲବର ଭଲିଟିମ୍ ମୋତେ ତାଙ୍କ ସହ ଯାଇ ମିଶିବାକୁ , ଖେଳିବାକୁ ଡାକିଲେ । ସେଥିରୁ ଗୋଟେ ସାଉଁଳିଆ ଟୋକା ମୋତେ କାଉଳିଆ କଲାପରି କହିଲା– ''ହଇରେ ଖାଲି ଏମିତି ଘର କୋଣଟାରେ କ'ଣ ବଇଚୁ ? ଆରେ ଏ ଯୁବା ବୟସରେ ଗୋଟେ ଫିଟିଂ ଫାଟିଂ ବଡ଼ିଟେ ପାଇଚୁ । ଚାହିଁଲେ କେତେ କ'ଣ କରିପାରନ୍ତୁ । ବାହାରକୁ ଟିକେ ଆସ୍, ପାଞ୍ଚ ଲୋକଙ୍କ ସାଙ୍ଗରେ ମିଶ୍ । ବ୍ୟାୟାମ୍ ଫ୍ୟାୟାମ୍ କର, ପାହାନ୍ତିଆ ଦୌଡ଼ା ଦୌଡ଼ି କର– ଦେଖିବୁ ତୁ ସବୁ କରିପାରିବୁ, ସବୁ ଦେଖେଇ ପାରିବୁ । ତା'ର ଏଇ ଖେଞ୍ଚାକଥା କେତେ ପଦରେ ମୋ ଭିତରେ ମେଞ୍ଚା ହୋଇ ଜମାଟ ବାନ୍ଧିଥିବା ଅସ୍ପଷ୍ଟ ପ୍ରତିଭାଗୁଡ଼ାକ ସତେ ଯେପରି ମୋତେ ଭିତରେ ଭିତରେ ଅଥୟ କରିବାକୁ ଲାଗିଲା । ସେଥିପାଇଁ ମୁଁ ତା' ପରଠାରୁ ବହୁତ ବାହାରେ ମିଶିଲି, ଭଲି ଖେଳିଲି, ବ୍ୟାୟାମ କଲି, ପାହାନ୍ତିଆ ଦୌଡ଼ିଲି । ପ୍ରକୃତରେ କ୍ରମେ ଦେଖିଲି ମୋ ଭିତରେ ଥିବା ପ୍ରତିଭାଗୁଡ଼ିକ ଯେପରି ବର୍ଷାଦିନରେ ଟାଙ୍ଗର ପଡ଼ିଆରେ ବଢୁଥିବା କଅଁଳ ଛନଛନିଆ ଦୁବ ଘାସ ପରି କେନା ମେଲି ବଢ଼ିବାକୁ ଲାଗିଲେ । ମୋର ଏ ପରିବର୍ତ୍ତନ ଦେଖି ଆମ ଘର ଲୋକଙ୍କଠୁ ଆରମ୍ଭ କରି ସାଙ୍ଗସାଥୀ ଅନ୍ୟମାନଙ୍କ ପର୍ଯ୍ୟନ୍ତ ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଏସବୁ ଦେଖି ମୁଁ ମନେ ମନେ ବହୁତ ଖୁସି ହେଉଥିଲି । ମୋର ଏମିତି ଖୁସି ହେବାର ଦେଖି ଥରେ ଲପନ, ମାନସ, ମୁନା, ଗଣେଶ ମୋତେ କହିଲେ – ''ଆରେ ଏତିକିରେ କ'ଣ ଖୁସି ହେଉଛୁ ପ୍ରକୃତରେ ଆମେ ପାଞ୍ଚଜଣ ଯଦି ଏକାଠି ହୋଇଯିବା, ଏକମନ ଏକ ପ୍ରାଣରେ ଯେକୌଣସି କାର୍ଯ୍ୟରେ ହାତ ମାରିବା ତାହା ନିଶ୍ଚୟ ହେବ । ଆଉ ଆମର ଏକତା ବଳ ଦେଖି ଅନ୍ୟମାନେ ଆମକୁ ଭୟ କରିବେ, ଖାତିର ମଧ୍ୟ କରିବେ । ଆମମାନଙ୍କର ଭାଉ ମଧ୍ୟ ବଢ଼ିବ । କଥାଟା ମୋ ମନକୁ ପାଇଲା । ମୁଁ କହିଲି ତେବେ ଆଉ ଡେରି କାହିଁକି ? ମୋର ଗୋଟେ ସେପାରେଟ୍ ରୁମ୍ ଅଛି । ସେଇଠି ହିଁ ଆମେ ଏକାଠି ହେବା, ଅଫିସ୍ ଖୋଲିବା, ସବୁ କିଛି ଆଳାପ ଆଲୋଚନା, ଯୋଜନା, କାର୍ଯ୍ୟ ଏଇଠୁଁ ହିଁ ହେବ । ଏଥିରେ ସମସ୍ତେ ଏକମତ ହେଲେ । ଫିଲିମ୍ ଦେଖି ଦେଖି , କ୍ରିକେଟ୍ ଖେଳି ଖେଳି, ସାପ୍ତାହିକ ପଢ଼ି ପଢ଼ି ଆମେ ପାଞ୍ଚଜଣ ନିଜ ନିଜକୁ ଜଣେ ଜଣେ ଷ୍ଟାର ଭାବୁଥିବାରୁ ସମସ୍ତେ ମିଶିକରି ଫାଇଭ୍‌ଷ୍ଟାର ଏବଂ ଆମର ସେ ଘରର ନମ୍ବର ଛଅଶହ ଏକ ହୋଇଥିବାର ଗୋଟେ ଥର ଶିବ (ଆମ ସାଙ୍ଗ) ସେଠାକୁ ଆସି ଇଂଲିସ୍‌ରେ ଲେଖା ହୋଇଥିବା ସେ ଘର ନମ୍ବରକୁ ଓଡ଼ିଆରେ 'ଠୋ' ବୋଲି ପଢ଼ିଦେବାରୁ ସେଇଦିନଠାରୁ ଆମ ମେଣ୍ଟର ନାଁ ହେଲା – ଫାଇଭ୍‌ଷ୍ଟାର 'ଠୋ' । ତା'ପରଠାରୁ କଲେଜ ଟାଇମ୍ ବାଦ୍ ସବୁ ସମୟରେ ରାତିରେ ଦିନରେ, ଦ୍ୱିପ୍ରହରରେ ସେଇ ରୁମ୍‌ରେ ମିଟିଂ ଚାଲିଲା । ଆମ ପାଞ୍ଚଜଣଙ୍କ ବାଦ୍ ବାବୁ, ଶିବ, ସୁଦୀପ୍ତ, ବୁଟୁ, ଟିପୁ ଆଦି ଆଉ କେତେଜଣ ମଧ୍ୟ ଆମ ପାଖକୁ ଧାଡ଼ି ଲଗେଇଲେ । ରୀତିମତ ଧୁମ୍‌ଧାମ୍ ଦିନାକେତେ ଅନାବନା କ୍ଲାସ ଆମର ଚାଲିଲା । ସେଠୁ ଏହା ଏମିତି ନିଶାରେ ପରିଣତ ହୋଇଗଲା ଯେ, ଆମମାନଙ୍କର ମେଣ୍ଟଟା କେବଳ ଘରର ଚାରିକାନ୍ଥ ମଧ୍ୟରେ ସୀମିତ ନ ରହି

ବାହାରେ ବନ୍ଧ, ଗହୀର, ସ୍କୁଲ ପଡ଼ିଆ, କଲେଜ କ୍ୟାମ୍ପସ୍ ମଧ୍ୟରେ, କେବେ କେବେ ବଜାର ମଝିରେ ମଧ୍ୟ ଚାରିଆଡ଼କୁ ଖେଳେଇ ହୋଇଗଲା । ଆମେମାନେ କ୍ରମେ ଅନୁଭବ କଲୁ ଯେ- ଏମିତି କଥାରେ ଆମକୁ କେହି କେହି ଈର୍ଷା କରୁଥିବାବେଳେ ଅଧିକାଂଶ ଲୋକ ଆମର ମେଣ୍ଟକୁ ଗୁରୁତ୍ୱ ଦେବାକୁ ଲାଗିଲେ । ଏଇ ଯେମିତି କଲେଜ ଇଲେକ୍ସନ୍ ସମୟ ପାଖେଇ ଆସିଲେ ଭୋଟ୍‌ରେ ଠିଆ ହୋଇଥିବା ପିଲାମାନେ ଆମ ମେଣ୍ଟ ଭୋଟ୍ ଲୋଭରେ ଆମମାନଙ୍କୁ କଳେବଳେ କଉଶଳେ ତାଙ୍କ ପଟିଆ କରିବା ପାଇଁ ପିଛା କରନ୍ତି, ଖାଲି ପିଛା କରନ୍ତିନି, ତେଲବି ମାରନ୍ତି । ଆରେ ସତକଥା- ଏବେ ଆମେ ଠିକ୍ ଠିକ୍ ବୁଝିଲୁ ଯୋଡ଼ାକୁ ଘୋଡ଼ା ସରି ନୁହେଁ । ଏକତା ହିଁ ବଳ, ସଙ୍ଗଠନ ହିଁ ଶକ୍ତି । ସେଥିପାଇଁ ବୋଧହୁଏ ବିବେକାନନ୍ଦ ଥରେ କହିଥିଲେ, ‘‘ମୋତେ ଏକ ମନ ଥିବା ସଂଗଠିତ କେତଜଣ ଯୁବକ ଦିଅ ମୁଁ ଏ ପୃଥିବୀଟାକୁ ମଧ୍ୟ ପରିବର୍ତ୍ତନ କରିଦେବି ।’’ ସେ ସମୟରେ ସ୍ୱାମୀଜୀଙ୍କୁ ସେପରି ଯୁବକ ମିଳିଥିଲେ କି ନାହିଁ ଆମେ ଠିକ୍‌ରେ କହିପାରିବୁ ନାହିଁ । ମାତ୍ର ବର୍ତ୍ତମାନର ସମୟରେ ଏଭଳି ଏକ ମନ ଥିବା ସଂଗଠିତ ଯୁବକମାନଙ୍କର ଅଭାବ ନାହିଁ, ଅନେକ ମିଳିବେ । ତେବେ କଥା ହେଉଛି ସେମାନଙ୍କୁ ସଠିକ୍ ଦିଗରେ ନେଇଯିବା ପାଇଁ ଉପଯୁକ୍ତ ନେତୃତ୍ୱର ଅଭାବ ରହିଛି ନିଶ୍ଚୟ । ଯେଉଁମାନେ ବା ଏମାନଙ୍କର ନେତୃତ୍ୱ ନେଉଛନ୍ତି ବାଟ ଦେଖାଇବାକୁ ଠିକା ଦେଉଥିବା ପରି ଲାଗୁଛନ୍ତି । ଏମାନେ ସମସ୍ତେ ସ୍ୱାର୍ଥୀ ବେଶୀ, ପରମାର୍ଥୀ କମ୍, ବେପାରୀ ବେଶୀ । ଉପକାରୀ କମ୍, ଦୁର୍ନୀତିଗ୍ରସ୍ତ ବେଶୀ ସଚ୍ଚୋଟ୍ କମ୍ । ମୋଟାମୋଟି ସାମୂହିକ ମଙ୍ଗଳ କାମନା କରିବାର ଭାବନାଟା ନାମକୁ ମାତ୍ର । ପ୍ରକୃତ ଉଦ୍ଦେଶ୍ୟ ହେଉଛି ଏଇ ଯୁବ ପ୍ରତିଭା, ଯୁବ ଗୋଷ୍ଠୀମାନଙ୍କୁ ଅସ୍ତ୍ର କରି କାର୍ଯ୍ୟ ହାସଲ କରିବା । ଧର୍ମ, ସାମାଜିକ ଅନୁଷ୍ଠାନ, ସ୍ୱେଚ୍ଛାସେବୀ ଦଳର ମୁଖ୍ୟ ବା ରାଜନୈତିକ ନେତା ପ୍ରାୟ ଅଧିକାଂଶ ବର୍ତ୍ତମାନ ଏଇ ଅଙ୍କ କଷାରେ ଆମ ପରି ଯୁବକମାନଙ୍କୁ କଷୁଛନ୍ତି ଆଉ ଆମମାନଙ୍କର ପ୍ରତି ରସୁଛନ୍ତି । ଆମେମାନେ ମଧ୍ୟ ଅନେକ ସମୟରେ କିଛି ବିଚାର ନ କରି ଆଖିବୁଜି, ହୁଳାମତ୍ତାହୋଇ ଫସି ଯାଉଛୁ । ତେବେ ସେ ଯାହା ହେଉ ନା କାହିଁକି ଆମର ‘ଫାଇଭ୍‌ଷ୍ଟାର ଠୋ’ ମେଣ୍ଟ ଅନ୍ତତଃପକ୍ଷେ ଏପରି କୌଣସିଥିରେ ନଫସି ନିଜକୁ ସ୍ୱତନ୍ତ୍ର ରଖି ନିଜର ଉନ୍ନତି ସଙ୍ଗେ ସଙ୍ଗେ ସାଧ୍ୟମତେ ସମାଜର କଲ୍ୟାଣ ପାଇଁ ଯେ କି କାର୍ଯ୍ୟ କରିବାକୁ ଚେଷ୍ଟା କରିବୁ, ଦିନେ ସମସ୍ତେ ମିଶି ଏକଥା ସଂକଳ୍ପ କଲୁ । ଆମର ଏ ସଂକଳ୍ପ କେତେଦୂର ସଫଳ ହୋଇପାରିବ ନ ପାରିବ ତାହା ପରମାତ୍ମା ଜାଣନ୍ତି, ଆଗକୁ ସମୟ କହିବ । ତେବେ ଆମର ଏକତା ଆଉ ସଂକଳ୍ପରେ ପ୍ରଭାବିତ ହୋଇ ଆଉ କେତେକ ଯୁବବନ୍ଧୁ ଆମ ସହ ଯୋଗ ଦେଲେ । ଏଥିରେ ଆମେ ଅଧିକ ଉତ୍ସାହିତ ହୋଇ ଆମର ‘ଫାଇଭ୍‌ଷ୍ଟାର ଠୋ’ ରୁମ୍‌ରେ ଏକାଠି ହୋଇ ଅଗଷ୍ଟ ୧୫କୁ ଜାତୀୟ ପତାକା ତଳେ ଜନଗଣ ମନ ଅଧି..... ଗାଇବା ପରି ଆମେ ସମସ୍ତେ ଷ୍ଟାର ସ୍ୱରରେ ସ୍ୱର ମିଶାଇ ଗାଇଲୁ –

ଏକ, ଦୁଇ, ତିନି, ଚାରି, ପାଞ୍ଚ ପନ୍ଦର<br>
ଆମେ ଜଣେ ଜଣେ ହେବୁ ସୁପର ଷ୍ଟାର ।<br>
ଫାଇଭ୍‌ଷ୍ଟାର ଆମ ଶକ୍ତି ଜବର୍<br>
ଭଲ କାମେ ଲାଗିବାକୁ ହେବୁ ତତ୍ପର ।<br>
ଠୋ, ଠୋ, ଠୋ - ଫୁଟେଇବୁ, ହଟେଇବୁ,<br>
ମିଟେଇବୁ, ଖଟେଇବୁ<br>
ବଜେଇବୁ ଧମାକାରେ ହୋଇ ହୋ ହୋ....<br>
ଫାଇଭ୍‌ଷ୍ଟାର ଠୋ, ଆମେ ଫାଇଭ୍‌ଷ୍ଟାର୍ ଠୋ,<br>
ଠୋ, ଠୋ, ଠୋ ଆମେ ଫାଇଭ୍‌ଷ୍ଟାର ଠୋ ।



ରମ୍ୟ ରଚନା

# କାଳି ଝିଅ

ରମେଶ ଚନ୍ଦ୍ର ସାହୁ
+୩ ତୃତୀୟ ବର୍ଷ କଳା

କଳାରଙ୍ଗକୁ ସମସ୍ତେ ଘୃଣା କରନ୍ତି । ସମସ୍ତେ ଚାହାନ୍ତି ଗୋରା ହେବାକୁ । ବିଶେଷ କରି ଝିଅମାନଙ୍କ ମଧରେ ଦେହର କଳାରଙ୍ଗକୁ ନେଇ ଏକ ପ୍ରକାର ହୀନମନ୍ୟତା ଅଛି । ଆମର ମାନସିକତା ଏବଂ ତଥାକଥିତ ସୌନ୍ଦର୍ଯ୍ୟଚେତନା ଏଥିପାଇଁ ଦାୟୀ ବୋଲି କୁହାଯାଇପାରେ । ପୁଅ କଳା ହେଲେ ଚଳିବ; କିନ୍ତୁ ଝିଅ କଳା ହେଲେ କେବଳ ବାପା ମା' ମନ ଊଣା କରନ୍ତି ତାହା ନୁହେଁ, ଝିଅ ନିଜେ ମଧ ନିଜକୁ ଅନ୍ୟମାନଙ୍କ ଆଗରେ ହୀନ ମନେ କରିଥାଏ ।

ଦୀପ୍ତି ଦେଖିବାକୁ କଳା, ମଧମ ଉଚ୍ଚା ଓ ଉଦ୍ଦାମ ଯୌବନ ତା'ଠି । ଦେଖିବାକୁ କାଳି ହେଲେ ମଧ, ଘଡ଼ି ଘଡ଼ିକେ ପୋଷାକ ପିନ୍ଧୁଥିଲା । ଦିନକୁ ଦଶଥର ମୁଣ୍ଡ କୁଣ୍ଡେଇ ପଚାଶ ଥର ମୁହଁ ଦେଖୁଥିଲା, କେତେ ସ୍ନୋ, ପାଉଡ଼ର, ବାସନା ତେଲ, ଲିପଷ୍ଟିକ୍, ନେଲ୍‌ପଲିସ୍ ଇତ୍ୟାଦି ଇତ୍ୟାଦି ସାରିଚି ଆଉ ଫିଙ୍ଗା ଫୋପଡ଼ା କରିଛି, ତା'ର ହିସାବ ନାହିଁ । ଭାରି ଫୁଲେଇ ହେଉଥିଲା ନିଜକୁ ନିଜେ, ପରକୁ ଦେଖେଇ ହେଉଥିଲା – ମୁଁ ସୁନ୍ଦରୀ.... । ଦର୍ପଣ ଆଗରେ ଦିନ କାଟୁଥିଲା ସବୁବେଳେ ।

ଦୀପ୍ତି ମାଟ୍ରିକ୍ ପରେ କଲେଜରେ ପଢ଼େ । ଅତ୍ୟଧିକ କାଳି ଯୋଗୁଁ ତା' ସହିତ କେହି ଭଲ ଭାବରେ କଥାବାର୍ତ୍ତା କରନ୍ତି ନି । 1st Divisionରେ ବି.ଏ. ପାଶ୍ କରେ । ବି.ଏ. ପାଶ୍ କଲାପରେ ଦୀପ୍ତିର ବାହାଘର ପାଇଁ ବାପା ମା' ପ୍ରସ୍ତୁତ ହେଲେ । ହେଲେ କ୍ୱାଇଁ ପୁଅଟି ଆସିଲା ଯେ, ହାଣ୍ଡିକଳା । ହାକିମ ହେଲେ କ'ଣ ହେବ, ସୁକୁଟାଟା । କାଠି ଦିଖଣ୍ଡ ଦିହରେ, ପୁଣି ଚାକିରିଆ ପରି ଦିଶୁନି । ସିଏ ପୁଣି ଦୀପ୍ତିକୁ ଦେଖି କହିଲା ଏଇଟା କାଳିଟା । ମୁଁ ଯାକୁ ବାହା ହେବିନି ।'' ପଳେଇଲା ।

ଆଉ କେତେ ମାସ ପରେ ପୁଣି ସେମିତି ଗୋଟେ କ୍ୱାଇଁ ପୁଅ ଦୀପ୍ତିକୁ ଦେଖିବାକୁ ଆସିଲା । ସିଏ ଛୋଟା ଟା, ଆଉ ସିଏ, ତା'ର ସେହି ଛୋଟା ଗୋଡ଼ ଯୋଗୁଁ ବିକଳାଙ୍ଗ କୋଟାରେ ଚାକିରି ପାଇ ହାକିମ ହୋଇଛି । ସିଏ ମଧ ଦୀପ୍ତିକୁ ଦେଖି ତୃପ୍ତ ହେଲାନି । ମନେ ମନେ ଭାବିଲା - ଏଇଟା ହାଣ୍ଡି କାଳିଟା । ମୁଁ ତ ଛୋଟାଟା ଅନ୍ଧାରରେ ଏଇଟାକୁ ଭୂତ ବୋଲି ଭାବି ଡରି ମରିଯିବି, ଏଇଆ ଭାବି ଡରିଗଲା । ଆଉ ପରେ ଖବର ଦେବୁ ବୋଲି କହି କୁଆଡ଼େ ଗଲାଯେ, ତା'ର ଆଉ ଦେଖା ମିଳିଲା ନାହିଁ ।

ଦି'ଦିଟା କ୍ୟାଣ୍ଡିଡେଟ୍ ଦୀପ୍ତିକୁ ନାପସନ୍ଦ କରି ପଳେଇବାରୁ ତା'ର ବାପା ମାଆଙ୍କ ଉପରେ ଚିନ୍ତାର ବୋଝ ମାଡ଼ି ବସିଲା । ଦୀପ୍ତି ବାପା ମାଆଙ୍କର ଗୋଟିଏ ଚିନ୍ତା, ଦୀପ୍ତି ପାଇଁ ଭଲ କ୍ୱାଇଁଟିଏ ମିଳୁ । ସେଥିପାଇଁ ଛତିଶ କୋଟି ଦିଅଁ ଦେବତାକୁ ଦିନ ରାତି ମୁଣ୍ଡିଆ ମାରୁଥାନ୍ତି ।

ଆଉ ଗୋଟେ ହାକିମ ଆସିଲା ଦୀପ୍ତିକୁ ଦେଖିବା ପାଇଁ । ସିଏ ବଡ଼ ହାକିମ ନ ହେଲେ ମଧ ବଡ଼ ପଇସାବାଲା । ଦୀପ୍ତିକୁ ଦେଖିଲା, ମନକୁ ପାଇଲାନି । ଭାବିଲା, ବୋପାଲୋ, ତାଳଗଛ ପରି ଉଚ୍ଚା କାଳିଟା, ତା' ହାତଟା ମୋହାତରେ ଘଷି ହୋଇ କଳା ହୋଇଯିବ..... । ଏହା ଭାବି ସେ କହିଲା ଆଜ୍ଞା ଗଲେ ଖବର ପଠେଇବୁ, ଆଉ ପଳେଇଲା, ଗଲା ଯେ ଖବର ଅନ୍ତର କିଛି ଦେଲାନି । ମୁଁ ତେବେ ଅସୁନ୍ଦରୀ ଭାବି ଦୀପ୍ତି ଏଥର ସବୁବେଳେ ଉଦାସ ଉଦାସ୍ ରହିଲା ।

କେଉଁ ଜନ୍ମର କେଉଁ ପାପର ଏକ ଅଫେରନ୍ତା ଅଭିଶାପ । ଟଙ୍କା ପଇସା ଧନ ଦୌଲତ ନ ଯାଚିଲେ ତାହା ହାତ ଧରିବାକୁ କେହି କେବେ ଗୋଡ଼ ବଢ଼ାନ୍ତି ନାହିଁ । ସେହି କଥାହିଁ ଘଟିଲା ଦୀପ୍ତିର ଜୀବନରେ ଶେଷରେ ଦୀପ୍ତିର ବାହାଘର ହୋଇଛି ଗୋଟିଏ ଚାଷକାମ କରୁଥିବା ଲୋକ ସହିତ । ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଛି, ନିଜର ନାଁ ଭଲ ଭାବରେ ଲେଖିପାରୁନି, ଯୌତୁକ ବାବଦ ଦୁଇଲକ୍ଷ ଟଙ୍କା ନେଇଛି ।

ଏଭଳି ଘଟଣା ପ୍ରତିଦିନ ଆମ ଚାରିପଟେ ଘଟି ଚାଲିଛି । ଆମେ ଦେଖୁଥାଉ, ଶୁଣୁଥାଉ, ବେଳେବେଳେ ଆମେ ମଧ ଏହିପରି ଆଚରଣ କରୁ । 'ପାତ୍ର ପାତ୍ରୀ' ଆବଶ୍ୟକ ବିଜ୍ଞାପନ ସ୍ତମ୍ଭରେ ଗୋଟିଏ ବିଷୟ ସମସ୍ତେ ଲକ୍ଷ୍ୟ କରି ଥିବେ । ପୁଅ ପଛେ ଆଫ୍ରିକାର ନିଗ୍ରୋ ପରି କଳା ମଚ ମଚ୍ ଟୋକା ହୋଇ ଥାଉ ତା' ପାଇଁ ବୋହୂ ଖୋଜିଲା ବେଳେ ବାପା ମାଆ ସୁନ୍ଦରୀ ଗୌରାଙ୍ଗୀ ଝିଅ ପସନ୍ଦ କରନ୍ତି, ଝିଅର ଗୁଣ କଥା ପରେ ଆସେ, ଆଗେ ରୂପ ଦେଖାଯାଉ । କଳା ଝିଅକୁ ସୁନ୍ଦରୀ ଶ୍ରେଣୀରେ ସାମିଲ କରାଯାଏ ନାହିଁ ।

ଫିଲ୍ମରେ ଶ୍ୟାମଳୀ ନାୟିକା ବହୁତ ଅଛନ୍ତି । କିନ୍ତୁ ସେମାନଙ୍କ ଦେହର ପ୍ରକୃତ ରଙ୍ଗ ଲୁଚି ଯାଏ, ତିନି ପରସ୍ତ ମେକପ୍ ତଳେ । କାରଣ ସାଧାରଣ ଦର୍ଶକ ପଇସା ଖର୍ଚ୍ଚ କରି କାଳି ନାୟିକା ଦେଖିବାକୁ ପସନ୍ଦ କରନ୍ତିନି । ସେହିପରି କୌଣସି ସ୍ୱପ୍ନବିଳାସୀ ରୋମାଣ୍ଟିକ୍ ଯୁବକଙ୍କ ମାନସ ପ୍ରିୟା କେବେବି ଶ୍ୟାମାଙ୍ଗୀ ତରୁଣୀ ହୋଇ ପାରନ୍ତିନି, ଅଥଚ ଆମ ଦେଶ ହେଉଛି ମୂଳତଃ କଳା କିମ୍ବା ବାଦାମୀ ଲୋକଙ୍କ ଦେଶ । ଆମ ନିଜ ନିଜର ଚେହେରା ଦର୍ପଣରେ ଭଲ ଭାବେ ଦେଖିଲେ, ଆମେ କେତେ ଗୋରା ସହଜେ ଜାଣିହେବ । ତଥାପି କଳା ଲୋକଙ୍କୁ ହେୟ ଜ୍ଞାନ କରିବା ଆମର ଅଭ୍ୟାସରେ ପରିଣତ ହୋଇଯାଉଛି ।

ସାମ୍ରାଜ୍ୟବାଦୀ ଗୋରା ସାହେବମାନେ କଳା ଭାରତୀୟ କିମ୍ବା ଆଫ୍ରିକୀୟମାନଙ୍କୁ କିଭଳି ଘୃଣା କରୁଥିଲେ, ମନୁଷ୍ୟ ବୋଲି ମନେ କରୁ ନଥିଲେ, ସେ କଥା ଆମେ ସମସ୍ତେ ଜାଣିଛେ । ଆଜି ଆମମାନଙ୍କ ମଧରେ ବି ସେହି ମାନସିକତା ସଂକ୍ରମିତ ହୋଇଯାଇଛି । କଳା ରଙ୍ଗ କ'ଣ ପ୍ରକୃତରେ ଖରାପ, ଏମିତି ଭାବିବାର କୌଣସି ସଙ୍ଗତ କାରଣ ନାହିଁ । ସୌନ୍ଦର୍ଯ୍ୟକୁ ବିଶେଷ କରି ନାରୀ ସୌନ୍ଦର୍ଯ୍ୟକୁ କୌଣସି ନିର୍ଦ୍ଦିଷ୍ଟ ମାପକାଠିରେ ମାପି ହେବ କି ? ଚୁଟି ପାଚି ଧଳା ହେଲେ ତୁରନ୍ତ କଳା ରଙ୍ଗ ବୋଳି ଦେଉଛ । କଳା ଯଦି ମନ୍ଦ ତେବେ ଚୁଳ ପାଚିଲେ କାନ୍ଦ କାହିଁକି ? ଏହି ମାନସିକତା ଅନ୍ତତଃ ଆମ ଦେଶରେ ରହିବା କଥା ନୁହେଁ । ବେଦବ୍ୟାସ କଳା ଥିଲେ । ଦ୍ରୌପଦୀ କୃଷ୍ଣାଙ୍ଗୀ ଥିଲେ । ସେଥିପାଇଁ ସେମାନଙ୍କ ମର୍ଯ୍ୟାଦାରେ କୌଣସି ଆଞ୍ଚ ଆସିନାହିଁ । କଳା କାହ୍ନୁ ଆରାଧ୍ୟ ଦେବତା । କଳା ବୋଲି ସେମାନଙ୍କ ଦେବତ୍ୱ କୌଣସି ଗୁଣରେ ଊଣା ହୋଇନି । କଳା ହେବାଗୋରା ହେବା, ସୁନ୍ଦର କିମ୍ବା ଅସୁନ୍ଦର ହେବା ମଣିଷ ହାତରେ ନାହିଁ ।

ଆମ ଦେଶରେ ଯୁଗେ ଯୁଗେ ରୂପ ଅପେକ୍ଷା ଗୁଣକୁ ହିଁ ଅଧିକ ଗୁରୁତ୍ୱ ଦିଆଯାଇଛି । ଗୋରା ଶରୀରକୁ ସୌନ୍ଦର୍ଯ୍ୟର ମାପକାଠି ଧରିବସିଲେ ପରେ ହୁଏତ ପସ୍ତେଇବାକୁ ପଡ଼ିପାରେ । ଇଂରାଜୀରେ ମଧ କୁହାଯାଏ । ସ୍କିନ୍‌ଡିପ୍, ଅର୍ଥାତ୍ ସୌନ୍ଦର୍ଯ୍ୟ କେବଳ ଅନୁଭୂତି । ତା'ଛଡ଼ା ସିଦ୍ଧାନ୍ତ ଦୃଷ୍ଟିରୁ ଦେଖିବାକୁ ଗଲେ କଳାରଙ୍ଗ ନ ଥିଲେ ଗୋରାରଙ୍ଗର କୌଣସି ଅର୍ଥ ନାହିଁ । କଳାରଙ୍ଗ ଥିବାରୁ ହିଁ ଗୋରାରଙ୍ଗକୁ ଅଲଗା କରି ଜାଣିହୁଏ ।

ତେଣୁ ଏହି ଦୃଷ୍ଟିରୁ ଗୋରାମାନେ କଳାଙ୍କ ପ୍ରତି କୃତଜ୍ଞ ରହିବା ଉଚିତ ।



# ଓଡ଼ିଆ ପ୍ରବନ୍ଧ

## ଧର୍ମ

*ସୋନାକ୍ଷୀ ମିଶ୍ର*
+ ୨ ପ୍ରଥମ ବର୍ଷ, ବିଜ୍ଞାନ

ଯୁଗେ ଯୁଗେ ମାନବ ପ୍ରକୃତିର ଦାସ । ବିଜ୍ଞାନ ଯେକୌଣସି ଉଦ୍ଭାବନ ତଥା ଆବିଷ୍କାରରେ ଆମର ଜୀବନକୁ ଭରିଦେଲେ ମଧ୍ୟ ପ୍ରକୃତିକୁ ଛାଡ଼ି ଆମର ଜୀବନଧାରଣ ଅସମ୍ଭବ ଅଟେ । ତେବେ ଏଇ ପ୍ରକୃତିକୁ ସୃଷ୍ଟି କଲା କିଏ ? ସେ ହେଲେ ସର୍ବଶକ୍ତିମୟ, ଦୟାମୟ, କରୁଣାମୟ, ଚିରନ୍ତନ ସତ୍ୟ ତଥା ସୃଷ୍ଟିର କର୍ତ୍ତା ଓ ପାଳନକର୍ତ୍ତା ଭଗବାନ୍ । ପ୍ରେମ, ଦୟା, କ୍ଷମା ଓ ଶାନ୍ତିର ଚରିନ୍ତନ ଧାରା ଯେ ଆମର ପ୍ରାଣରେ ଭରି ଦେଇଛନ୍ତି ସେହି ଜଗତ ପିତା ଭଗବାନ୍ ।

ସମଗ୍ର ମାନବ ସମାଜ ଯୁଗେ ଯୁଗେ ସେହି ସର୍ବଶକ୍ତିମାନ୍‌ଙ୍କୁ ପୂଜା କରିଆସିଛି । ଏହିଠାରେ ମନରେ ଏକ ପ୍ରଶ୍ନ ଆସେ, ଭଗବାନ ଯଦି ଏକ ତେବେ ଧର୍ମ କାହିଁକି ଅନେକ ? ଅନ୍ୟ ଏକ ପ୍ରଶ୍ନ ମଧ୍ୟ ଆସେ ଧର୍ମ କ'ଣ ? ଯଦିଓ ଧର୍ମର ଦ୍ୱାହି ଦେଇ ଆମେ ପରସ୍ପର ମଧ୍ୟରେ ଲଢୁ ତେବେ ମଧ୍ୟ ଆମ ମଧ୍ୟରେ କେହି ଜଣେ ଏହାର ଠିକ୍ ଉତ୍ତର ଦେଇପାରିବ ନାହିଁ । ଏହା କ'ଣ ଏକ ଅନ୍ଧ ବିଶ୍ୱାସ ? ଏହା କ'ଣ ଏକ ଅଦୃଶ୍ୟ ଶକ୍ତି ଯେ ଆମକୁ ଶକ୍ତି ଦିଏ ନା ଏକ ପାରମ୍ପରିକ ସଭ୍ୟତା ଯାହା ଆମକୁ ନିଜର ଇଚ୍ଛାର ବିରୁଦ୍ଧରେ ମଧ୍ୟ ପାଳନ କରିବାକୁ ପଡ଼େ ? କେହି କ'ଣ ଦେଇ ପାରିବେ ଏହାର ଉତ୍ତର ? ନାଁ, ତେବେ ମଧ୍ୟ ଆମର ଧର୍ମ ଅଛି ଏବଂ ଆମେ ମଧ୍ୟ ମନ୍ଦିର, ମସ୍‌ଜିଦ୍ ଏବଂ ଗୀର୍ଜାକୁ ଯାଉ ।

ପ୍ରତ୍ୟେକ କ୍ଷେତ୍ରରେ ପ୍ରତ୍ୟେକ ଗ୍ରନ୍ଥରେ ଆମେ ଗୋଟିଏ ଜିନିଷ ଶୁଣିବାକୁ ପାଉ, ଧର୍ମର ଜୟ ଏବଂ ଅଧର୍ମର କ୍ଷୟ । ହେଲା ଯେ କିନ୍ତୁ କୌଣସି ଗ୍ରନ୍ଥ ତ ଧର୍ମ କ'ଣ ତାହା କହିନାହାଁନ୍ତି । ମହାଭାରତ ଯୁଦ୍ଧ ପୂର୍ବରୁ ଯେତେବେଳେ ଦୁର୍ଯ୍ୟୋଧନ ମାତା ଗାନ୍ଧାରୀଙ୍କ ଠାରୁ ବିଜୟସୂଚକ ଆଶୀର୍ବାଦ ଭିକ୍ଷା କରିଥିଲେ ସେତେବେଳେ ମାତା ଗାନ୍ଧାରୀଙ୍କର ଉତ୍ତର ଥିଲା -

''ଯାଅ ବୀର ! ରଣେ ଧରଣୀବକ୍ଷୁ
ପାପ ରାଶି ହେଉ କ୍ଷୟ,
ଅକ୍ଷୟ ହେଉ ପୁଣ୍ୟ ଜଗତେ
ଧର୍ମର ହେଉ ଜୟ''

ଏଠାରେ ମଧ୍ୟ ଧର୍ମ । ତେବେ ଧର୍ମ କ'ଣ ? ମୋ ମତରେ ଏହା ହେଉଛି ନୀତି, ନିୟମ, ସଂଯମ ତଥା ଶୃଙ୍ଖଳିତ ଆଚରଣର ପାଠ ପଢ଼ାଉଥିବା ଏକ ପୁସ୍ତକ । ଯିଏ ଏହି ପୁସ୍ତକର ନିୟମାନୁସାରେ ଚାଲେ ତାକୁ ସ୍ୱର୍ଗ ଓ ଅନ୍ୟକୁ ନର୍କ ପ୍ରାପ୍ତି ହୁଏ ।

ପ୍ରଥମେ ହିନ୍ଦୁ ଧର୍ମକୁ ହିଁ ଧରିନିଅନ୍ତୁ । ଏହି ଧର୍ମର ଅନ୍ୟନାମ ସନାତନ ଧର୍ମ । ପୃଥିବୀ ପୃଷ୍ଠରେ ପ୍ରଥମେ ଏହି ଧର୍ମର ସୃଷ୍ଟି । ଏହି ଧର୍ମାନୁଯାୟୀ ଭଗବାନ ହେଉଛନ୍ତି ଏକ, ମାତ୍ର ତାଙ୍କର ରୂପ ଅନେକ । ପ୍ରେମ, ଶାନ୍ତି, ଭାତୃତ୍ୱ ଭାବ ଏବଂ ଦୟା ତଥା କ୍ଷମାରେ ବିଶ୍ୱାସ ରଖେ ଏ ଧର୍ମ । କର୍ମ କରିଚାଲି ଫଳକୁ ଆଶା ନ ରଖିବା ନିମନ୍ତେ ଉପଦେଶ ଦିଏ ଏ ଧର୍ମ । ଏହି ଧର୍ମାନୁଯାୟୀ ପ୍ରତ୍ୟେକ ଜୀବଜନ୍ତୁ ହେଉଛନ୍ତି ଭଗବାନଙ୍କର ସନ୍ତାନ । ତେଣୁ ଆମେ ପ୍ରତ୍ୟେକ ଭାଇ ଭାଇ । ଏହାର ଗ୍ରନ୍ଥ 'ଗୀତା'ର ପ୍ରତ୍ୟେକ ଶ୍ଳୋକରେ ରହିଛି ଅତ୍ୟନ୍ତ ନିଗୂଢ଼ ତଥ୍ୟ ଯାହାକୁ ବୁଝିପାରିବା ପ୍ରତ୍ୟେକ ମାନବ ପକ୍ଷରେ ସମ୍ଭବପର ନୁହେଁ । ହୃଦୟରେ ନିଷ୍ଠା, ମନରେ ଶାଶ୍ୱତ ସନାତନ ପ୍ରେମ ତଥା ଜୀବନରେ ପାପ ଏବଂ ପୂଣ୍ୟର ପ୍ରଭେଦ ଜାଣିଥିବା ମାନବହିଁ ବୁଝେ ଏହାର ଅର୍ଥ । ଯେ କେବଳ ଧର୍ମରକ୍ଷା ପାଇଁ ଏହା ପଠନ କରେ ସେ

ଏଗୁଡ଼ିକର ଉଚିତ୍ ଅର୍ଥ ନ ବୁଝି ତାହାକୁ ବିକୃତ ରୂପରେ ଗ୍ରହଣ କରେ ଏବଂ ସମାଜକୁ କରେ କଳଙ୍କିତ । ଯଥା - ଏଠାରେ ଏକ ଶ୍ଳୋକ ତାହାର ଉଚିତ୍ ଅର୍ଥ ଏବଂ ବିକୃତ ଅର୍ଥ ଉପସ୍ଥାପନା କରାଯାଉଛି ।

''ଲୋକାନାଞ୍ଚ ବିବୃଦ୍ଧ୍ୟର୍ଥଂ ମୁଖବାହୂରୁ ପାଦତଃ
ବ୍ରାହ୍ମଣଂ କ୍ଷତ୍ରିୟ ବୈଶ୍ୟଂ ଶୂଦ୍ରଞ୍ଚ ନିରବର୍ତ୍ତୟତ୍ ।''

ଏହାର ଅର୍ଥ ଭଗବାନଙ୍କ ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଜାନୁରୁ ବୈଶ୍ୟ ଓ ପାଦରୁ ଶୂଦ୍ରମାନଙ୍କର ଉତ୍ପତ୍ତି । ଅର୍ଥାତ୍ ବ୍ରାହ୍ମଣମାନେ ବୁଦ୍ଧି ଓ ଜ୍ଞାନରେ ବଳୀୟାନ୍ । କ୍ଷତ୍ରିୟମାନେ ବାହୁବଳରେ ବଳୀୟାନ୍ । ଏହି ଦୁଇଟି ଜାତିର ଭାରବହନ କରେ ଶୂଦ୍ର ଜାତି ଅର୍ଥାତ୍ ଏମାନଙ୍କୁ ସମାଜରେ ତିଷ୍ଠିବାରେ ସାହାଯ୍ୟ କରେ ଏବଂ ବୈଶ୍ୟମାନେ ସାମାଜିକ ସେବାରେ ନିଜକୁ ଉତ୍ସର୍ଗ କରନ୍ତି ।

ମାତ୍ର ଉପଯୁକ୍ତ ଜ୍ଞାନ ନଥିବା ଜନୈକ ବ୍ୟକ୍ତି ଏହାକୁ ବିଶ୍ଳେଷଣ କରି କହିଲେ ବ୍ରାହ୍ମଣମାନେ ମୁଣ୍ଡରେ ଚଢ଼ି ବସିବେ, କ୍ଷତ୍ରିୟମାନେ ହାତରେ ପ୍ରତ୍ୟେକ କାର୍ଯ୍ୟ କରିବେ, ବୈଶ୍ୟମାନେ ପାଦତଳେ ପଡ଼ିରହିବେ ଏବଂ ଶୂଦ୍ରମାନେ ଜଂଘ ଓ ଗୋଡ଼ ଘଷାଘଷି କରିଦେବେ ।

ଏହିଭଳି ଲୋକଙ୍କ ଯୋଗୁ ଧର୍ମ ଆଜି କଳଙ୍କିତ । ଆମେ ଧର୍ମଗ୍ରନ୍ଥରେ ପଢୁ ଆଉ କିଛି ଏବଂ ତାକୁ ପରିଣତ କରୁ ଅନ୍ୟ କିଛିରେ । ଗୀତାରେ ଉଲ୍ଲେଖ କରାଯାଇଛି ଯେ ପ୍ରତ୍ୟେକ ଜୀବ ହେଉଛନ୍ତି ଭଗବାନଙ୍କର ସନ୍ତାନ । ଯଦି ଆମେ ଗୀତାକୁ ମାନୁଛେ ତେବେ ଆମେ ଗୀତାର ବାଣୀକୁ ମଧ୍ୟ ମାନିବା ଉଚିତ୍ । ତେବେ ପ୍ରତ୍ୟେକଙ୍କର ପିତା ଯଦି ଏକ ତେବେ ଜାତିରେ ଭେଦଭାବ ଆସିଲା କେଉଁଠୁ ?

ଯୁଗେ ଯୁଗେ ଏହି ଜାତିପ୍ରଥା ହିନ୍ଦୁ ଧର୍ମର ମଥାରେ କଳା କଳଙ୍କ ଲଗାଇ ଦେଇଛି । ସ୍ୱାଧୀନତୋତ୍ତର ଭାରତରେ ଆଜି ମଧ୍ୟ ପ୍ରତ୍ୟେକ ଦିନ ହରିଜନ ତଥା ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ଉପରେ ଅତ୍ୟାଚାରର ଲୋମହର୍ଷଣକାରୀ କାହାଣୀ ସମ୍ବାଦପତ୍ରର ପୃଷ୍ଠା ମଣ୍ଡନ କରୁଛି । କେତେକ ସ୍ଥାନରେ ସବର୍ଣ୍ଣମାନଙ୍କ ଅତ୍ୟାଚାର ସହିନପାରି ବହୁ ଅବହେଳିତ ଅଛୁଆଁ ବ୍ୟକ୍ତି ଧର୍ମତ୍ୟାଗ କରୁଛନ୍ତି । ସେମାନଙ୍କୁ ମନ୍ଦିର ପ୍ରବେଶ, ସର୍ବସାଧାରଣ ପୁଷ୍କରିଣୀ ତଥା କୂପର ଜଳ ବ୍ୟବହାର ପାଇଁ ନିଷେଧ କରାଯିବା ଆଦି ଘଟଣାଗୁଡ଼ିକ ଅଦ୍ୟାବଧି ଆମ ସମାଜରେ ବସା ବାନ୍ଧିଥିବା ଜାତିଆଣ ଭାବର ଗୋଟିଏ ଗୋଟିଏ ନମୁନା । କେତେକ ସ୍ଥାନରେ ଅସ୍ପୃଶ୍ୟତା ଆଳରେ ହରିଜନମାନଙ୍କୁ ସାମାଜିକ ବାସନ୍ଦ କରାଯାଉଥିବାରୁ ଜାତିଆଣ ଭାବ ଉଗ୍ରରୂପ ନେଉଛି । ବର୍ତ୍ତମାନ ହରିଜନ ତଥା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଚାଲିଥିବା ବ୍ୟାପକ ଧର୍ମାନ୍ତରୀକରଣର ମୁଖ୍ୟ କାରଣ ହେଉଛି ଏହି ଅସ୍ପୃଶ୍ୟତା । କେତେକ ସାମନ୍ତବାଦୀ ରକ୍ଷଣଶୀଳ ଚିନ୍ତାଧାରାର ବ୍ୟକ୍ତି ଜାତି ବିଭାଗ ସପକ୍ଷରେ ଯେତେ ଯୁକ୍ତି ବାଢ଼ିଲେ ମଧ୍ୟ ହିନ୍ଦୁ ଧର୍ମଶାସ୍ତ୍ରରେ ଅସ୍ପୃଶ୍ୟତାର କୌଣସି ଉଲ୍ଲେଖ ନାହିଁ । ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ଜଗନ୍ନାଥଙ୍କ ମନ୍ଦିରରେ ସବୁ ଜାତିର ଲୋକଙ୍କ ସମାବେଶ ଘଟିଥାଏ । ଏକାପତ୍ରରେ ବ୍ରାହ୍ମଣ, ହରିଜନ ମିଶି ଏଠାରେ ପ୍ରସାଦ ସେବନ କରନ୍ତି । ଅସ୍ପୃଶ୍ୟ ଦାସିଆ ବାଉରି ଏବଂ ଯବନ ସାଲବେଗ ଥିଲେ ଜଗନ୍ନାଥଙ୍କର ସବୁଠାରୁ ବଡ଼ ଭକ୍ତ । ଲକ୍ଷ୍ମୀ ଠାକୁରାଣୀ ମଧ୍ୟ ଚାଣ୍ଡାଳ ଘରୁ ପୂଜା ଗ୍ରହଣର ଦୃଷ୍ଟାନ୍ତ ରହିଛି । ଶବର ବିଶ୍ୱାବସୁ ନୀଳମାଧବଙ୍କୁ ପୂଜାରେ ସନ୍ତୁଷ୍ଟ କରିଥିବା ଆମ ପୁରାଣରେ ବର୍ଣ୍ଣିତ ଅଛି । ରାମାୟଣର ବର୍ଣ୍ଣନା ଅନୁଯାୟୀ ରଘୁକୁଳ ତିଳକ ପ୍ରଭୁ ଶ୍ରୀରାମଚନ୍ଦ୍ର ଗୁହ୍ୟକ ଶବରର ପରମ ମିତ୍ର ଥିଲେ । ପୁଣି ଶବରୀର ଅଇଁଠା ଫଳକୁ ସେ ସାଦରେ ଗ୍ରହଣ କରିଥିବା କଥା ମଧ୍ୟ କାହାକୁ ଅଜଣା ନାହିଁ । ତେବେ ଏହି ଜାତିପ୍ରଥା କ'ଣ ଆମର ହୃଦୟର କେବଳ ଏକ ବିକାର ନୁହେଁ ? ଏହା କ'ଣ ଆମ ଧର୍ମର ପ୍ରତୀକ ? ଏହାକୁ ଶେଷ କରିବା କ'ଣ ଆମର ଧର୍ମ ନୁହେଁ ?

ହିନ୍ଦୁ ଧର୍ମରେ ବିଧବାମାନଙ୍କ ପ୍ରତି ଯେଉଁ ନୀତି ନିୟମ ରହିଛି ତାହା ବାସ୍ତବିକ୍ ଘୃଣ୍ୟ । ସତୀପ୍ରଥା ହେଉଛି ଆମର ନିର୍ମମତା ତଥା ବର୍ବରତାର ପ୍ରତୀକ ।

ଏକ ପତ୍ନୀ ତା'ର ପତିକୁ ହରାଇବା ପରେ ଯେଉଁ ନିୟମକୁ ପାଳନ କରୁଛି ଏକ ପତି ତା'ର ପତ୍ନୀକୁ ହରାଇବାପରେ କାହିଁତ ସେହି ନିୟମ ପାଳନ କରୁନାହିଁ ? ଯେଉଁ ଧର୍ମରେ ସମାଜ ବିଧବାକୁ ଦ୍ୱିତୀୟ ବିବାହର ଅନୁମତି ଦେଉ ନାହିଁ, ସେଠାରେ ବିପତ୍ନୀକ ପୁରୁଷ ଦ୍ୱିତୀୟ ବିବାହ କରୁଛି କିପରି ? ଦୁନିଆର ଯେତେ ନୀତି ନିୟମ ସବୁ ନାରୀମାନଙ୍କ ପାଇଁ କାହିଁକି ?

ତୃତୀୟତଃ ପ୍ରତ୍ୟେକ ଜୀବଜନ୍ତୁ ହେଉଛନ୍ତି ଭଗବାନ୍‌ଙ୍କର ସନ୍ତାନ । ତେବେ ଏକ ମା' କ'ଣ କେବେ ନିଜ ସନ୍ତାନର ରକ୍ତ କାମନା କରେ ? ତେବେ ପ୍ରତ୍ୟେକ ପର୍ବ ପର୍ବାଣୀରେ ଆମେ ବଳି କାହିଁକି ଦେଉ ? କେବଳ ହିନ୍ଦୁଧର୍ମ ହିଁ ନୁହେଁ । ଅନ୍ୟ ଧର୍ମ ମଧ୍ୟ ଏହି ନିର୍ମମତା ତଥା ବର୍ବରତାର କାହାଣୀ ଶୁଣାଏ ।

ପୃଥିବୀର ଦ୍ୱିତୀୟ ପୁରାତନ ଧର୍ମ, ଖ୍ରୀଷ୍ଟିୟାନ୍ ଧର୍ମର ଧର୍ମଯାଜକ ଯୀଶୁଖ୍ରୀଷ୍ଟ ଜନ୍ମଗ୍ରହଣ କରିଥିଲେ ଧରାପୃଷ୍ଠରେ ପ୍ରେମ ଓ ଶାନ୍ତିର ପ୍ରତୀକ ରୂପରେ । ପ୍ରଚାର କରିଥିଲେ ଭାଇଚାରା ଓ ଶାନ୍ତିର ଧ୍ୱନି । ସେତ କହିନଥିଲେ ଜବରଦସ୍ତ ଅନ୍ୟଧର୍ମର ଲୋକଙ୍କୁ ତାଙ୍କ ଧର୍ମରେ ଦୀକ୍ଷିତ କରାଇବାକୁ । ତେବେ ଭାରତର ନିରୀହ ହିନ୍ଦୁଙ୍କ ଉପରେ କାହିଁକି କରାଯାଇଥିଲା ନିର୍ମମ ଅତ୍ୟାଚାର ସେହି ଧର୍ମ ଗ୍ରହଣ କରିବାକୁ ?, ଏହା କ'ଣ ଯୀଶୁଙ୍କର ଅପମାନ ନୁହେଁ ? ଖ୍ରୀଷ୍ଟ ଧର୍ମର ମୂଳମନ୍ତ୍ରକୁ ଭୁଲି ଯାଇ ସେମାନେ ବର୍ତ୍ତମାନ ପାଲଟିଛନ୍ତି ହୃଦୟହୀନ । ପର୍ତ୍ତୁଗୀଜମାନେ ଜବରଦସ୍ତ ହିନ୍ଦୁମାନଙ୍କୁ ଖ୍ରୀଷ୍ଟିୟାନ୍ ଧର୍ମ ଗ୍ରହଣ କରିବାକୁ ବାଧ୍ୟ କରୁଥିଲେ ଓ ନମାନିଲେ ହେଉଥିଲା ନିର୍ମମ ଅତ୍ୟାଚାର । ପାଣିରେ Double ରୁଟି ପକାଯାଉଥିଲା ଓ ଯେଉଁମାନେ ତାହାକୁ ପିଉଥିଲେ ସେମାନେ ପାଲଟୁଥିଲେ ଖ୍ରୀଷ୍ଟିୟାନ୍ । ଜବରଦସ୍ତ Double ରୁଟି ଖୁଆଇ ତାଙ୍କୁ ସେହି ଧର୍ମରେ ଦୀକ୍ଷିତ କରାଉଥିଲେ । ପବିତ୍ର ବାଇବେଲ୍‌ର କେଉଁ ପୃଷ୍ଠାରେ ଏହା ଲେଖା ଯାଇଥିଲା ?

ଏବଂ ଶେଷରେ ମୁସଲମାନ ଧର୍ମ । ଏହା ଧର୍ମଯାଜକ ମହାପୁରୁଷ ମହମ୍ମଦ ଥିଲେ ଭଗବାନଙ୍କର ଶାନ୍ତିଦୂତ । ସେ କହିଥିଲେ କେହି ଆକ୍ରମଣ କଲେ ତା'ର ଉତ୍ତର ପ୍ରତିଆକ୍ରମଣରେ ଦେବ । ମାତ୍ର ମୁସଲମାନ ମାନେ ନିଜେ ହିଁ ହୋଇଗଲେ ଆକ୍ରମଣକାରୀ । ଶହ ଶହ ନିରୀହ ଲୋକଙ୍କୁ ହତ୍ୟା କରି ସେମାନେ ବିଚାର କରୁଥିଲେ ଯେ ଏହା ହେଉଛି ତାଙ୍କ ଧର୍ମର ବିଜୟ ଅଭିଯାନ । ନାରୀମାନଙ୍କ ପ୍ରତି ନିର୍ମମ ଅତ୍ୟାଚାର ତଥା ସେମାନଙ୍କୁ ବୁର୍ଖା ପରିଧାନ କରିବା ନିମନ୍ତେ ବାଧ୍ୟ କରିବା ଥିଲା ତାଙ୍କ ଧର୍ମର ଅନ୍ୟତମ ଦୁଃଖପୂର୍ଣ୍ଣ ଘଟଣା । ପବିତ୍ର କୋରାନ୍‌ରେ ଉଲ୍ଲେଖ ଅଛି ଅନ୍ୟର ଦୁଃଖକୁ ବୁଝ, ଅନ୍ୟ ଧର୍ମର ଲୋକଙ୍କୁ ସ୍ନେହ କର । ମାତ୍ର ଏମାନେ 'ଜେହାଦ୍' ବା 'ଧର୍ମଯୁଦ୍ଧ' ନାମରେ କେବଳ ଲୋକଙ୍କୁ ହତ୍ୟା କରି ଚାଲିଛନ୍ତି । ଏହା କ'ଣ ମାନବିକତାର ପ୍ରତୀକ? ଗୁଜୁରାଟରେ ହୋଇଥିବା ଦଙ୍ଗା କ'ଣ ଏକ ନିର୍ମମ ତଥା ବର୍ବର ମାନବିକତାର ପ୍ରତୀକ ନୁହେଁ ?

ଧର୍ମର ପ୍ରକୃତ ସଜ୍ଞା ନବୁଝି ଧର୍ମ ନାମରେ ପାପ କରୁଥିବା ସେହି ପାପୀମାନଙ୍କର ବୋଝରେ ଆଜି ଧରଣୀ ମାତା ନିଷ୍ପେଷିତା ତଥା ଶୋଷିତା । ତେଣୁ ପ୍ରତ୍ୟେକ ମାନବ ଆଜି ଶପଥ କରିବା ଉଚିତ୍ ଯେ ଧର୍ମକୁ ବୁଝିବା, ତାକୁ ଜାଣିବା ଓ ସତ୍ୟ ତଥା ନ୍ୟାୟର ରୂପରେ ଗ୍ରହଣ କରିବା । କୌଣସି କଥାକୁ ଅନ୍ଧ ରୂପରେ ଗ୍ରହଣ ନକରି ତା'ର ସତ୍ୟତାକୁ ଖୋଜି ଗ୍ରହଣ କରିପାରିଲେ ଏ ପୃଥିବୀ ମାତାର କୋଳ ପୁଣି ଥରେ ଖୁସିରେ ହସିଉଠିବ । ଶେଷରେ ମା' ଚର୍ଚ୍ଚିକାଙ୍କ ନିକଟରେ ଏତିକି ପ୍ରାର୍ଥନା ।

''ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।

*ସନ୍ଥ କବି ଭୀମଭୋଇ*



# କେତୋଟି ସଜଳ ମୁହଁ ସମ୍ପର୍କରେ.....

ଜନ୍ମେଜୟ ପତି,
+୨, ଦ୍ୱିତୀୟ ବର୍ଷ ବାଣିଜ୍ୟ

ଜୀବନର ଉପାଦାନ ସଂଗ୍ରହ କରିବା ସମ୍ଭବ ହେବାପାଇଁ ସବୁ ଘୋଡ଼େଇ ହୋଇ ସାରିଲା ପରେ ମୁହଁଟିକୁ ଖୋଲା ରଖାଯାଏ । ଏ ଓଲଟ ବୃକ୍ଷର ପାଞ୍ଚଟି ଯାକ ଚେର ଖୋଲା ନ ରହିଲେ ଏବଂ ସେଗୁଡ଼ିକ ସଂସାରର ମାଟି, ପାଣି ପବନରେ ଅନାବୃତ ବୁଡ଼ି ନ ରହିଲେ ବର୍ଦ୍ଧିତ ହେବା କିମ୍ବା ବଞ୍ଚିବା ସମ୍ଭବ ନୁହେଁ । ଏହି ଚେର ସବୁ ଶୁଖି ଆସିଲେ ଗଛ ମଉଳି ଯାଏ ଏବଂ ତା'ପରେ ହୁଏତ ମୁହଁଟିକୁ ହିଁ ଘୋଡ଼େଇ ଦେବାକୁ ପଡ଼େ । କିନ୍ତୁ ରସ, ରୂପ, ଗନ୍ଧ ଶୋଷୁଥିବା ପର୍ଯ୍ୟନ୍ତ ମୁହଁ ବାଟେ ଜୀବନର ଅମୃତ ଧାରା ପ୍ରବେଶ କରୁଥାଏ । ସେହିବାଟେ ପ୍ରକାଶିତ ହେଉଥାଏ ଆନନ୍ଦ, ନିରାନନ୍ଦ, ଅନୁରାଗ ଓ ବିରାଗର ସଂକେତ । ପ୍ରକାଶିତ ହେଉଥାଏ ସମଗ୍ର ବ୍ୟକ୍ତିଟିର ବ୍ୟକ୍ତିତ୍ୱ । ପ୍ରକାଶିତ ହେଉଥାଏ ବାକ୍ ରୂପରେ ଅଗ୍ନି । ନଖଠାରୁ ଶିଖା ପର୍ଯ୍ୟନ୍ତ ବ୍ୟକ୍ତିଟି ବିସ୍ମୃତ ରହିଥିଲେ ମଧ ଏବଂ ଅବୟବଗୁଡ଼ିକ ବ୍ୟକ୍ତିତ୍ୱ ଗଢ଼ିବାରେ କିଛି କିଛି ସହାୟକ ହେଉଥିଲେ ମଧ ଶହେରେ ଅନେଶ୍ୱତ ଭାଗ ସେହି ମୁହଁରେ ହିଁ କେନ୍ଦ୍ରୀଭୂତ ହୋଇଥାଏ । ସବୁ ପ୍ରକାର ଆଦାନ-ପ୍ରଦାନ, ଭାବ-ଦୋସ୍ତି ଏବଂ ପରିଚୟ ଏଇ ମୁହଁଟି ସାଙ୍ଗରେ ।

ସେ ଯେଉଁ ମୁହଁଟି - ସଞ୍ଚରେ ତିଆରି ସେ ବର୍ତ୍ତୁଳ ମୁହଁଟିରେ ସାବୁନ୍ ଫେଣ ପରି ଥୋଲାଥୋଲା ଚର୍ବି । ଚିକ୍କଣ ଘାସବନା ଚମଡ଼ାଟି ତୁଳାଭର୍ତ୍ତି ହୋଇଥିବା ତକିଆର ପାଟ କନା ପରି ଟାଣି ହୋଇ ରହିଛି ଗାଲରୁ ଗାଲ ଯାଏ । ଆଖିର ଡ଼ୋଳାଗୁଡ଼ିକ ଇଷତ୍ କହରା । ନାକ ଅଗଯାଏଁ ଥୋପି ପଡୁଛି ଗୋଟିଏ ଚିକ୍କଣିଆ ନରମ ମାଂସର ପ୍ରଲେପ । ମୁହଁକୁ ଚାହିଁଲେ ପାଟି ଖୁବ୍ ଛୋଟ, ଓଠ ଯୋଡ଼ିକ ଗଣିଲା ପରି । ମିଲ୍‌ମାଲିକ ପ୍ରକାଣ୍ଡ ଶିଳ୍ପପତି । ହସିଲେ ଖୁବ୍ ଭଦ୍ରଭାବେ ପାଟି ଓସାରି ହୋଇଯାଏ । ଭୁରୁ ଉପରୁ ଗାଲ ମୂଳରୁ ଗୋଲାପ ବର୍ଷା ହୋଇଯାଏ । ସେଥିରେ ମହକି ଉଠନ୍ତି । ପୁଲକି ଉଠନ୍ତି ଅନୁଗୃହିତ ଅନୁଚର ବର୍ଗ । ରାଗିଲେ ଆଖିରେ ଲିଚୁକୋଳିଗୁଡ଼ିକ ଅଙ୍କା ବଙ୍କା ଭୁରୁ ଉପରେ ଚିପି ହୋଇଯାଆନ୍ତି । ସେ ବୋଧହୁଏ ବିକ୍ରମ୍ ବଳିୟାର୍ ସିଂ ....ମଣ୍ଟୁ ମାନ୍‌ଧାତା କିମ୍ବା ରାଜେନ୍ଦ୍ର ଗଡ଼ନାୟକ । ଗାଲ ଉପରେ କଟା ଦାଗର ଚିହ୍ନ କୌଣସି ଅଭୁଲା ସ୍ମୃତିର ଅଜସ୍ର ଇତିହାସ ।

ତାଙ୍କର ଯେ ଶୁଆ ଥଣ୍ଟିଆ ନାକ, ପ୍ରଜାପତିଆ ନିଶ, ଉଚ୍ଚ କପାଳ ଏବଂ ଚିକ୍କଣ ଥୋଡ଼ିଟିକୁ ନେଇ ମୁହଁ । ତା'ର ଆଖି ଯୋଡ଼ିକ ଥୋଇଲା ପରି । ଆଖିରେ ଅନେକ ପାରଦର୍ଶିତା ଝଟକୁଛି । ପାଖରୁ ଚାହିଁଲେ ବାଳଗୁଡ଼ିକରେ ରଙ୍ଗବୋଳା ହୋଇ ଦିଶୁଛି ନୀଳବର୍ଣ୍ଣ । ନାକମୂଳରେ ସାମୟିକ ଚଷମା ବ୍ୟବହାର କରୁଥିବାର ଦାଗ । ଗୋଜିଆ ମୁହଁଟିରେ ରହିଛି କିଛି ପାଉଡ଼ର୍ । ସେ ମୁହଁଟି ହସିଲେ ବେଶ୍ ଚମତ୍କାର ଦିଶୁଥିବ । ତାହା ଗୋରା ନୁହେଁ କି କଳା ମଧ ନୁହେଁ । ହୋଇ ପାରନ୍ତି ସେ ପ୍ରଦୋଷବାବୁ, କୌଣସି ଦପ୍ତରର ବରିଷ୍ଠ କିରାଣୀ । ନିଜ ଘରକୁ ଭଡ଼ାଦେଇ ସରକାରୀ ଘରେ ଥା'ନ୍ତି । ଧରାବନ୍ଧା ଦରମାକୁ ଧରାବନ୍ଧା କାମ ସାରି ଦେଇ ସେ ରବିବାର ଦିନ ଯାଆନ୍ତି ମାଂସ କିଣିବାକୁ । ତାଙ୍କ ଝିଅ ବିବାହ ପାଇଁ ଫ୍ରିଜ୍ ଓ ରଙ୍ଗୀନ୍ ଟିଭିଟିଏ ମଧ କିଣି ସାରିଲେଣି । ଅନେକ ଭିଟାମିନ୍ ବୋତଲ ତାଙ୍କ ଘରେ ଦେଖିବାକୁ ମିଳେ । ହୋଇ ପାରନ୍ତି ସେ ଜଣେ ଇଞ୍ଜିନିୟର୍ । ଯେତେ ଜାହାଜ ସେ ଦରିଆରେ ମେଲିଦେଲେ କୌଣସି ଗୋଟିଏ ହେଲେ ସେଥିରୁ କୂଳ ସ୍ପର୍ଶ କଲାନି । ଅନ୍ତତଃ କୋଠା ଖଣ୍ଡିକରେ ଛାତ ବିଛେଇ ଦେଇ ପାରିଲେ ସେ ନିଶ୍ଚିନ୍ତ ହୋଇ ଯାଆନ୍ତେ । ହୋଇ ପାରନ୍ତି ସେ ଅଧ୍ୟାପକ ମହାଶୟ । ଟୋପାଜ୍, ଜିଲେଟ୍, ମାଷ୍ଟର ଏବଂ ପାନାମା ବ୍ଲେଡ଼ରେ ଗତ ପଚିଶ ବର୍ଷ ଧରି

ସେ ମୁହଁଟି ମାଠି କ୍ଷୌର ହୋଇଛନ୍ତି । ପାଞ୍ଚଖଣ୍ଡ ଟେରିଲିନ୍‌କୁ ସାତବର୍ଷ ଧୋଇ ଶୁଖେଇ ପିନ୍ଧିଛନ୍ତି । ସେ ବକ୍ତୃତା ଦେଇ ଫେରନ୍ତି ଫୁଲମାଳଟିଏ ଧରି । ନମସ୍କାର ପାଇଲେ ମୁହଁଟି ପଦ୍ମ ଫୁଟିଲା ପରି ମୁକୁଳି ଯାଏ ।

ଚେର ଦେଖି ଯେପରି ଗଛଟିକୁ ଚିହ୍ନିବା କଷ୍ଟ, ଅବୟବ ଦେଖି ମଣିଷକୁ ଚିହ୍ନିବା ସେହିପରି କଷ୍ଟ । ବନ୍ଧୁ, ପରିବାର, ସ୍ୱଜନଙ୍କ ମୁହଁ ଦେଖି ଚିହ୍ନାଯାଏ । ସେହି ମୁଁହଗୁଡ଼ିକର ମାନ, ଅଭିମାନ, ଲଜ୍ଜା, ମମତାକୁ ଜୀବନର ଆବେଗ ମୂଲ୍ୟ ରୂପେ ଗ୍ରହଣ କରାଯାଏ । ପ୍ରିୟଜନର ମୁହଁ ଉପରେ ଛାଇଟିଏ ପହଁରି ଗଲେ ଭାବାନ୍ତର ଆସିଯାଏ । ଏହି ମୁହଁଗୁଡ଼ିକର ସରହଦରେ ଠିଆ ରହି ଦୁଇଟି ସ୍ୱତନ୍ତ୍ର ଆତ୍ମା ପରସ୍ପରକୁ ଗ୍ରହଣ କରନ୍ତି । କଥାରେ, ଆଖିରେ, ଭଙ୍ଗୀରେ ନିଜକୁ ପ୍ରକାଶ କରନ୍ତି । ଦୁର୍‌ବୀନ୍ ଯନ୍ତ୍ରରେ ନୂଆ ତାରାଟିଏ ଧରା ଦେଲା ପରି ନୂଆ ମୁହଁଟିଏ ଅନେକ ବିସ୍ମୟ ବହନ କରି ଜୀବନରେ ଉଦୟ ହୁଏ ।

ଧରାଯାଉ ସେ ଯେଉଁ ମୁହଁଟି । ସେ ଯେ ତାରା ପରି ଝଟକୁଥିବା ସଜଳ ଆଖି । ଠିଆ ନାକ ତଳକୁ ଗଜୁରା ନିଶ । ପୋଛିଦେଲା ପରି ମୁହଁ । ଗାଲରେ ଏଠି ସେଠି ଦୁଇ ଚାରିଟା ବ୍ରଣ । ଥୋଡ଼ିରେ କଅଁଳ କୁଣ୍ଡା ରୁମ । ହନୁହାଡ଼ ଲୁଚି ନାହିଁ । ମୁଁହ ପୂରିନାହିଁ । ନିଶ ଗହଳ ଧରି ନାହିଁ । ହସିଲେ ଦାନ୍ତ ଚିକ୍ ଚିକ୍ ଦିଶେ; କିନ୍ତୁ ସେ ଆଖିକୁ ନିଦ ନାହିଁ । ସେ ପୋଖତ ନାଉରି ଭଳି ସମୁଦ୍ରକୁ ଅନେଇଛି । ତା' ଲହରି, ତା'ଘୁଘୁ ଶବ୍ଦକୁ ଜ୍ଞାନ କରି ଚାହିଁଛି । ସେ ସଂସାରକୁ କଳିବେ । ସୂର୍ଯ୍ୟଚନ୍ଦ୍ରକୁ କଳିବେ । କହୁଛି ସତେ ବା ମୁଁ ତତେ ଜିଣିବି ! ତୋର ଆର ପାରିକି ଛୁଇଁବି, ତୋ'ର ଗହୀରକୁ ମାପିବି, ନିର୍ଭୀକ, ନିଷ୍କାମ ସେ ଆଖି ଆଉ ମୁହଁରେ, ଆଲେକ୍‌ଜାଣ୍ଡର୍ ପରି ଦିଗ୍‌ବିଜୟୀ ପ୍ରତ୍ୟୟ ।.... ସେ ହୋଇପାରେ ବିଭୂତି ହରିଚନ୍ଦନ । ଅଣୁବିଜ୍ଞାନରେ ସୂକ୍ଷ୍ମତତ୍ତ୍ୱ ଉପରେ ଗବେଷଣା କରୁଛି । ମହାକାଶ ଯାନକୁ ଖେଳଣା ଭଳି ବୁଝିସାରିଲାଣି । ପଚାରିଲେ କହୁଛି ସେ ହାରିବାଇ ଆସିନାହିଁ - ଆସିଛି କେବଳ ନୂଆ ଦିଗ୍‌ବଳୟ ଆବିଷ୍କାର କରିବାକୁ । ହୋଇପାରେ ସେ ଧନଞ୍ଜୟ, ଚିନ୍ମୟ ! ଚମତ୍କାର କବିତା ଲେଖେ । କହୁଛି ସାରା ପୃଥିବୀରୁ ସବୁ ଫୁଲର ପରାଗ ଆଣି ଏଇ କିଆରୀରେ ବୁଣିଦେବ । କବିତାର ହୀରା କଣିକା ଝଟକୁଛି ତା' ଆଖିରେ ତା' ମୁହଁରେ । ପଛକୁ କେବେ ଫେରି ଚାହିଁ ନାହିଁ । ସମସ୍ତଙ୍କ ଆଗରେ ସମସ୍ତଙ୍କ ଉପରେ ସେ ରହି ଆସିଛି । ଘର ତା'ର କୌଣସି ବଙ୍ଗଳାରେ କିମ୍ବା ସହରରେ ନୁହେଁ । ଗୋଡ଼ରେ ଜୋତା ନାହିଁକି ହାତରେ ଘଣ୍ଟା ନାହିଁ । ସେ ସ୍ୱପ୍ନ ଦେଖୁଛି ଯେ, ବାଲି ଉପରେ ପଦ୍ମ ଫୁଟାଇ ଦେବ; ପାହାଡ଼ ଗୁଡ଼ାକୁ ଫିଙ୍ଗି ଦେବ ।

ଏଥର ଟିକେ ବୁଲି ଚାହାନ୍ତୁ ସେ ଯେଉଁ ଲଣ୍ଡା ମୁଣ୍ଡ ତଳକୁ ଠିଆ ଠିଆ ହଳେ ବଡ଼ବଡ଼ କାନ । ନୂଆଣିଆ ଭ୍ରୂଲତା ତଳକୁ ଓଦାଳିଆ କାକର ସଦୃଶ ଦୁଇଟି ଆଖି । ଥୋପି ପଡ଼ିଲା ପରି ବିରାଟ ସେ ନାକର ଛାଇରେ ପୁଚ୍ଛ ପ୍ରାୟ ତଳମୁହାଁ ବଣିଆ ନିଶ । ଚିପୁଡ଼ିଲା ପରି ପାକୁଆ ପାଟି ଓ ଥୋଡ଼ି । ଆମେ ଦେଖିଲା ମାତ୍ରେ ଚିହ୍ନି ନେଉ । ଆମକୁ ଶୁଭିଯାଏ ଆବେଗଭରା, ବିଶ୍ୱାସଭରା, ଗଭୀର ଆତ୍ମୀୟତାର ଗୁଡ଼ିଏ କଅଁଳିଆ କଥା । ଦିଶିଯାଏ ସେହ ପାକୁଆ ପାଟିରୁ ଝରି ପଡୁଥିବା ଗୁଡ଼ିଏ ପାକଳ ନିର୍ମଳ ହସ । ମନେ ପଡ଼ିଯାଏ କର୍ମମୟ, ତପୋମୟ, ସଂଘର୍ଷମୟ ଗୋଟିଏ ଜୀବନର ବିରଳ ଇତିବୃତ୍ତ । ଚକିତ, କମ୍ପିତ, ଜାଗରିତ ଗୋଟିଏ ଜାତିର ସଂଗ୍ରାମ । ସତ୍ୟର କ୍ଷୁର ଧାରକୁ ନେଇ ପରୀକ୍ଷା କରୁଥିବା ଜୀବନର ଯାତନାକୁ ନେଇ ବେଦନାବିଦ୍ଧ ହେଉଥିବା ଏଇତ ସେହି ମହାତ୍ମା । ଏହି ମୁହଁଟି ଚାହିଁଥିଲା ଶୂନ୍ୟରୁ ଆଲୋକ ପାଇବା ପାଇଁ, ସତ୍ୟର ପ୍ରତିଷ୍ଠା ପାଇଁ । ଏ ମୁହଁଟି କେତେ କାନ୍ଦିଛି, କେତେ ହସିଛି, କେତେ ଆବେଗ, କେତେ କରୁଣା ଝରିଛି ଏ ମୁହଁଟିରୁ । ଆମେ ଯାକୁ ଚିହ୍ନିଛୁ, ବାକି ଯେଉଁ ଅର୍ଦ୍ଧ ପରିହିତ ଦେହଟି ଢ଼ିମା ଢ଼ିମା ଆଣ୍ଠୁ, ସରୁସରୁ ଗୋଡ଼ ଅନେକ ପରିଚୟ ହେତୁ ହୁଏତ ଆମେ ଚିହ୍ନିନେଉ । କିନ୍ତୁ ସେଗୁଡ଼ିକ ଯେ ବିପୁଳ ବ୍ୟକ୍ତିତ୍ୱର ସାମାନ୍ୟତମ

ଅଂଶ ମାତ୍ର । ସେମାନଙ୍କୁ ଗୋଟିଏ ଖଦଡ଼ ଚାଦରରେ ଘୋଡ଼େଇ ଦେଲେ କିମ୍ବା ସେଇ ଅନଶନ ଶୀର୍ଣ୍ଣ ସେ ଦେହଟିକୁ ବିଛଣା ଉପରେ ଆବୃତ୍ତ କରିଦେଲେ ସେହି ମୁହଁଟି ଯେ, ମହାତ୍ମାର, ଏଥିରେ କାହାର ଆଉ ସନ୍ଦେହ ରହେ ନାହିଁ ।

କଳାକାଇଁଚ ପରି ଆଖି ଲମ୍ବା, ଠିଆ ଠିଆ କାନ, ଧଳା ପଶମରେ ତିଆରି ସେ ସରଳ କଅଁଳ ସୁକୁମାର ମୁହଁଟିକୁ ଆମେ ଡାକୁ 'ଶଶା' । ଧୂସର ଲୁହା ତନୁରେ ତିଆରି ସେ ଶଶା ତଳରକୁ ନିର୍ଭୀକ ଘୁମେଇଲା ପରି ଅଭିଜାତ ଆଖି । ସେ ଚଉଡ଼ା ନାକ ଏବଂ ଥୋଡ଼ି ତଳକୁ ରକ୍ତସ୍ନାତ ସେ ନାଡ଼ି ଏବଂ ବାଉଁଶ ଗଜା ପରି ଦାନ୍ତର ପ୍ରହରୀ ଜଗିଥିବା ସାହାଣ ମେଲା ସେ ମୁଖ ବିବରକୁ ଆମେ କହୁ 'ସିଂହ' ।

ଏହିପରି ଅଂସଖ୍ୟ ମନୁଷ୍ୟ, ଅସଂଖ୍ୟ ଜନ୍ତୁ ଏବଂ ପକ୍ଷୀମାନଙ୍କର ଅଗଣିତ ମୁହଁକୁ ନ ଚାହିଁଲେ ସେମାନଙ୍କୁ ଚିହ୍ନି ହୁଏ ନାହିଁ । ଚାହିଁଲେ ବି ଚିହ୍ନି ହୁଏ ନାହିଁ । ରୂପଦେଖି ନାମଟିଏ ଖଞ୍ଜିବା ହେଲା ଚିହ୍ନିବାର ଲକ୍ଷଣ । ଏତେଗୁଡ଼ିଏ ମୁହଁକୁ ଚାହିଁଚାହିଁ ଜୀବନ ବିତିଯାଏ; କିନ୍ତୁ ଅନୁଭବ ହୁଏ ଯେ, ସେମାନେ ମଧ୍ୟ ଏଇ ଗୋଟିଏ ମୁହଁକୁ ଚାହିଁଛନ୍ତି । ହଠାତ୍ ଡର ମାଡ଼େ । ବିମୂଢ଼ ହୋଇଯିବାକୁ ହୁଏ । ଆକାଶ ଚାହିଁ ରହେ ତା'ର ତାରା ଆଖିଗୁଡ଼ିକରେ । ନଦ, ନଦୀ, ପାହାଡ଼, ପର୍ବତ ସମସ୍ତେ ଚାହିଁ ରହନ୍ତି, ଚାହିଁରହନ୍ତି , ଲତା, ଗୁଳ୍ମ, ମହୀରୁହ ସକଳ । କାହିଁ କେଉଁ ଗହୀରରେ ଗୋଟାଏ ସଂପର୍କରେ ତନୁ ହୁଏତ ସନ୍ଦିତ ହୁଏ । ମୁହଁଗୁଡ଼ିକ ଆସ୍ତେ ଏକାକାର ହୋଇଯାଆନ୍ତି । ସମସ୍ତେ ବସନ୍ତି ଗୋଟିଏ ଛାପା ପରି । ମଉଳିଯାଏ ଯେତେ ସବୁ ବୈଶିଷ୍ଟ୍ୟ । ତା'ପରେ ହୁଏତ ଗଭୀରତମ ପ୍ରଦେଶରୁ ଆତ୍ମୀୟତା ଅଭିନ୍ନ ସୋଦରକ୍ଷଣ ଉତୁରି ଆସେ । ଲହରି ମାଡ଼ିଯାଏ ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ । ଆକାଶରେ ମାମୁଁ ଘରକୁ ପହଁରିଯାଏ ସୋଦର ଆତ୍ମା । ସେଇଠି ଥାଇ ସେ ପୃଥିବୀକୁ ଦେଖେ, ବର୍ତ୍ତୁଳ ମୁହଁରେ ନେଳି ନେଳି ସମୁଦ୍ରର ଗାଲ । ଏପରି ସୁନ୍ଦର ମୁହଁଟିଏ ସୃଷ୍ଟିରେ ସତେ ଅବା ଆଉ ନାହିଁ । ସୋଦର ଆତ୍ମା ପରିହାସ କରେ ''ହେ ପୃଥିବୀ, ବିପୁଳା, ବର୍ତ୍ତୁଳା, ଶ୍ୟାମଳିନୀ ! ତୁ କ'ଣ ଖାଲି ମୁହଁଟିଏ ? ତୋର ଅବୟବ କାହିଁ ? ସେ କହେ - ''ଅବୟବ ଦେଇ କ'ଣ ହେବ ? ସେଗୁଡ଼ିକ ଅପୂର୍ଣ୍ଣତାର ଲକ୍ଷଣ । ସବୁ ଏକାଠି ହୋଇ ବର୍ତ୍ତୁଳ ହୋଇଗଲେ, କେବଳ ମୁହଁଟିଏ ହିଁ ରହିଯିବ, ଚନ୍ଦ୍ରପରି, ସୂର୍ଯ୍ୟପରି, ଆକାଶ ପରି ।''





# ଭିନ୍ନ ଦୃଷ୍ଟିର କବି - ରବି ସିଂ

*ଅଧ୍ୟାପକ ଶ୍ରୀ ମନୋରଞ୍ଜନ ସାହୁ*
ଉଦ୍ଭିଦ ବିଜ୍ଞାନ ବିଭାଗ

କବି ଫୁଲ ଫୁଟିବାର ଦେଖେ; ଦେଖି ସେ ଆତ୍ମହରା ହୁଏ । କବିତା ଲେଖେ ତା'ର ସୌନ୍ଦର୍ଯ୍ୟକୁ ବର୍ଣ୍ଣନା କରି । ତାକୁ ଅନ୍ୟ ସୁନ୍ଦର ପଦାର୍ଥ ସହିତ ତୁଳନା କରେ । ଆଉ ପାଦେ ଆଗେଇ ଯାଇ ସେ ହୁଏତ ଦୁଃଖ ପ୍ରକାଶ କରେ ଯେ ଫୁଲଟି ମଉଳି ଯିବ, ସେ ଚିନ୍ତା କରେ ଦୁନିଆଁରେ ସମସ୍ତେ କ୍ଷଣସ୍ଥାୟୀ । ତା'ପରେ ହୁଏତ କବି ଆଉ ପାଦେ ଆଗେଇ ଯାଇ ଜୀବନ ଦର୍ଶନରେ ମଗ୍ନ ରହେ । ସେ ଭାବେ ଯେ ଫୁଲଟି ମଉଳିଯିବ, ମୁଁ ମଧ ମଉଳି ଯିବି କିନ୍ତୁ ମୋର ଆତ୍ମା ରୂପକ ଫୁଲ ମଉଳିବ ନାହିଁ ।

କିନ୍ତୁ ରବିସିଂ ଏକ ଭିନ୍ନ ଚିନ୍ତାଧାରାର କବି । ସେ ଫୁଲ ଫୁଟିବାର କଥାକୁ ନ କହିବା ପାଇଁ କହିଛନ୍ତି । ଖାଦ୍ୟ ମୁଠାଏ ନପାଇ ମଣିଷ ମରୁଥିବା ବେଳେ ଆମ ଦେଶରେ ପୁଷ୍ପ ପ୍ରଦର୍ଶନୀ ଓ କୁକୁର ପ୍ରଦର୍ଶନୀ ହୁଏ । ନିଃଷ୍ପେଷିତ ଦଳିତମାନଙ୍କ ପାଇଁ ତାଙ୍କର କବିତା । ତେଣୁ ସେ ଲେଖିଛନ୍ତି -

ଫୁଲ ଫୁଟିବାର କଥା କୁହ ନାହିଁ
ମଣିଷ ପଡୁଛି ଝଡ଼ି
କାନ୍ଦୁଛି ଏଠି ଜୀବନ ବୃନ୍ତ
ଗର୍ଜୁଛି ବେତ ବାଡ଼ି ।
କେଉଁ ସହକାର ପତ୍ର ଗହଳୁ
କୋକିଳର କୁହୁଗୀତ
ଭାସିତ ଆସୁଛି
ପଚାରନା ମୋତେ
ପଚାରନା ପ୍ରାଣମିତ

ତୁମେ ଦେଖୁଅଛ ବସନ୍ତାଗମ
ମୁଁ ଜାଣେ ମହାମାରୀ କଥା
ତମେ ଦେଇଅଛ ସନ୍ଧ୍ୟାର ଧୂପ
ମୁଁ ଦେଖେ ଜଳୁଛି ଚିତା

x x x x

ତାଙ୍କର ଏକ କବିତା ପୁସ୍ତକ 'ପ୍ରେମ ଏବଂ ରବି ସିଂ' ସେ କହିଛନ୍ତି - ତାଙ୍କର କେହି ପ୍ରେମିକା ନାହାନ୍ତି; ପ୍ରଚଳିତ ସାମାଜିକ ବ୍ୟବସ୍ଥା ର ସେ ବିରୋଧୀ ।

ମାୟାଧର ମାନସିଂହଙ୍କର କବିତା -

ଏଇ ସହକାର ତଳେ
ସେ ଦିନ ପ୍ରିୟାର କର କଙ୍କଣ
ଭିଡ଼ି ଥିଲା ମୋର ଗଳେ......

x x x

ଏହାର ଉତ୍ତର ଦେବାକୁ ଯାଇ କବି ରବି ସିଂ କୁହନ୍ତି -

ସହକାର ମାନେ ଆମ୍ବଗଛ । ଆମ୍ବଗଛ କଟା ସରିଲାଣି । ଏବେ ତାହା ମଳତ୍ୟାଗର ପଡ଼ିଆରେ ପରିଣତ ହେଲାଣି । ଆଉ ଆଜିର ଝିଅ ଭଲ ପାଇବା ପରେ ଯେବେ ଜାଣୁଛି, ତା'ର ପ୍ରେମିକ ଦରିଦ୍ର ତେବେ ସେ ତାକୁ ପରିତ୍ୟାଗ କରୁଛି । ସେ ଧନର ସେବିକା ସାଜୁଛି, ଏପରିକି ସେ ଜାତି ଗୋତ୍ର ବୟସ ନମାନି ଧନିକ ପାଖରେ ପହଞ୍ଚୁଛି । ତେଣୁ ସେ ଲେଖନ୍ତି -

ନିର୍ମଳ ପ୍ରେମ ନ ଥିବାରୁ ଆଜି,
ଜୀବନ ହୋଇଛି ମରୁ
ଉତ୍ତପ୍ତ ଆଜି ସାହାରାର ବାଲି

ଅସହ୍ୟ ପାଦ ତଳୁ ।
ପାତିବ୍ରତର ଫଳକୁ ଚାହିଁ
ହସି ହସି ପେଟ ଫାଟେ
ତାହା ପଛେ କେଉଁ ପିଚାଶୁଣୀ
ରାତି ଜାଗି ଜିଭ ଚାଟେ
ବେଳ କାଳ ପୁଣି ନାହିଁ ଦରକାର
ପଥେ ପଥେ କାମଜ୍ୱାଳା ।

x x x

ତାଙ୍କର 'ବେରସିକ' କବିତାରେ ନାରୀକୁ ସେ ନିର୍ମୂଳୀ ଲତା ସହ ତୁଳନା କରିଛନ୍ତି ତାଙ୍କ ଭାଷାରେ -

କାମ ବିକୃତ ଜାନୁଆର ଆଖିନେଇ
ସାରା ଦୁନିଆଁ ଫୁଲକୁ ଦେଖିଛି,ଏ ଯାବତ୍ ନାରୀ ପାଇଁ
ଯେଉଁ ନାରୀ ଏକ ନିର୍ମୂଳୀଲତା,ନାହିଁଯାର ମୂଳଚେର
ଜୀବନ୍ତ ଏକ ଭୀଷଣ ନରକ ପାଶବିକ କାମନାର ।

x x x

କବି ସୁଖୀ ସୁନ୍ଦର ସମାଜର ସ୍ୱପ୍ନ ଦେଖନ୍ତି । ତାଙ୍କର କବିତା ଦୁଃଖୀ ଦରିଦ୍ର ନିଃଷ୍ପେସିତଙ୍କ ପାଇଁ ବିଦ୍ରୋହ କରେ । ଜୀବନ ଏକ ଶୂନ୍ୟତାର ବୃତ୍ତ ବୋଲି କଳ୍ପନା କରି ସେ ସେଠି ପ୍ରେମ, ସ୍ପନ୍ଦନ, ଅନ୍ନ କିଛି ଦେଖିବାକୁ ପାଇ ନାହାନ୍ତି । ମଣିଷ ସବୁବେଳେ ସ୍ୱାର୍ଥାନ୍ୱେଷୀ ତେଣୁ ସେ ଲେଖିଛନ୍ତି ତାଙ୍କର କବିତା - ''ଶୂନ୍ୟତାର ବୃତ୍ତ'' ରେ -

ଭୂମିକମ୍ପର କମ୍ପନ ଘେନି, ବଜ୍ରେ ବଧିର କରି
ଅଧିର ଅବେଗେ ଧମନୀ
ରୁଧିରେ ନିଆଁ ମୋ ଉଠିଛି ଜଳି ।
ହାତ ବଢ଼ାଇଛି ଧରିବା ପାଇଁକି
ବୃଦ୍ଧ ବିଧିର ଗଳା ।
ଯୁଦ୍ଧଭୂମିରେ ଫାଟିଛି ସେପାଇଁ
ଅବିରତ ମୋର ଗଳା ।
ଦୌର୍ଯ୍ୟୋଧନୀ ଏ ସଭ୍ୟତା ପୁଣି
ଦୁଃଶାସନର ସାଥେ
ଘଟିଅଛି ମୋର ବହୁ ମୁକାବିଲା
ଶତବାର ପଥେପଥେ ।

ସେ ନିଜେ, କିମ୍ବା ଜଣେ ଦରିଦ୍ର, ନିର୍ଯ୍ୟାତିତର ଜନ୍ମ ହେଲାବେଳେ କୌଣସି ଉତ୍ସବ ହୋଇନାହିଁ ବା ହୁଏନାହିଁ, ମୃତ୍ୟୁ ବେଳେ ମଧ ହେବ ନାହିଁ । ତେଣୁ ସେ ଅଭିମାନ ମିଶା ଭିନ୍ନ ଆତ୍ମସନ୍ତୋଷରେ ଲେଖିଛନ୍ତି –

ଯେ ଦିନ ଉଦୟ ହୋଇଥିଲି ସେବେ,
କେହି ମୋର ସ୍ୱାଗତିକା
ଗାଇ ତ ନଥିଲେ ଅନାହୂତ ଭାବେ
ଆସିଥିଲି ଏକା ଏକା ।
ବିଦାୟ ଲଗନେ କେହିତ ବିଦାୟ
ଦେବାପାଇଁ ଆସିବେନି,
ମୁଁ ଦେବି ବିଦାୟ ମୁହିଁ ମୋ ନିଜକୁ
ଜୀବନର ଶିଖା ତୁମି,



# ଚରିତ୍ର

*ସୁଧାଂଶୁ ଶେଖର ଦାସ*
+୩ ଶେଷବର୍ଷ, (ପଦାର୍ଥ ବିଜ୍ଞାନ ସମ୍ମାନ)

'ଚର' ଧାତୁରେ ଇତ ପ୍ରତ୍ୟୟ ଯୋଗରେ ଚରିତ୍ର ନିଷ୍ପନ୍ନ ହୁଏ । ଏହାର ବ୍ୟୁତ୍ପତ୍ତି ଅର୍ଥ 'କର୍ମର ପ୍ରେରକ' । ଏହାକୁ ସଂକଳ୍ପଶକ୍ତି ବା ଇଚ୍ଛାଶକ୍ତି (Will Power) ନାମରେ ମଧ୍ୟ ଲୋକେ ଜାଣନ୍ତି । ଆଚରଣ ବା ବ୍ରତ ମନୁଷ୍ୟର ଐଚ୍ଛିକ କର୍ମ ବୋଲି ବିଦ୍ୱାନମାନଙ୍କ ମତ, ମହାଭାରତ ଉଦ୍ୟୋଗ ପର୍ବରେ ଚରିତ୍ର ରକ୍ଷା ସଂପର୍କରେ ଉଦାହରଣ ମିଳେ ।

ପ୍ରତି ମନୁଷ୍ୟ ପରିଶ୍ରମପୂର୍ବକ ସ୍ୱକୀୟ ଆଚରଣକୁ ରକ୍ଷା କରିବା ଉଚିତ । ଆଚରଣଠାରେ ଧନର ତୁଳନା ବିଶେଷ ମହତ୍ତ୍ୱ ନିଏ ନାହିଁ ଧନ ଆସେ ଏବଂ ଯାଏ, ତେଣୁ ଧନହୀନ ବ୍ୟକ୍ତି କ୍ଷୀଣ ନୁହେଁ; କିନ୍ତୁ ଆଚରଣ ନଷ୍ଟ ହେଲେ ମନୁଷ୍ୟର ସର୍ବଥା ବିନାଶ ହୋଇଥାଏ ।

ଇଂରାଜୀ ସାହିତ୍ୟରେ ଗୋଟିଏ କଥା ଅଛି – Wealth is lost nothing is lost. ଅର୍ଥାତ୍ ଧନନାଶ ହେଲେ କିଛି କ୍ଷତି ନାହିଁ କାରଣ ସମୟକ୍ରମେ ଧନ ଏକତ୍ର କରାଯାଇପାରେ । Health is lost something is lost, ଅର୍ଥାତ୍ ସ୍ୱାସ୍ଥ୍ୟ ନଷ୍ଟ ହେଲେ କିଛି କ୍ଷତି ହୁଏ ପରନ୍ତୁ ତାହାର ସମାଧାନ ଔଷଧ ସେବନ ଦ୍ୱାରା କରାଯାଇ ପାରିବ କିନ୍ତୁ Character is lost everything is lost. ଅର୍ଥାତ ଚରିତ୍ର ନଷ୍ଟ ହୋଇଗଲେ ସବୁକିଛି ନଷ୍ଟ ହୋଇଗଲା । କାରଣ ଚରିତ୍ରହୀନ ବ୍ୟକ୍ତିକୁ ସମସ୍ତେ ଘୃଣା କରନ୍ତି ।

ଧର୍ମ ଓ କର୍ତ୍ତବ୍ୟ ପ୍ରତିବ୍ୟକ୍ତିର ଚରିତ୍ର ନିର୍ମାଣ କ୍ଷେତ୍ରରେ ଅବଲମ୍ବନ ହୋଇଥାଏ । ମନୁଷ୍ୟର ପ୍ରତିକାର୍ଯ୍ୟଧାରା ଉପରେ ବେଦରେ ସୂଚନା ଦିଆଯାଇଛି ଓ ସନ୍ମାର୍ଗ ସମ୍ପର୍କରେ ନିର୍ଦ୍ଦେଶ ଦିଆଯାଇଅଛି । ବେଦ ଅପୌରୁଷେୟ ଓ ଅଭ୍ରାନ୍ତ, ସମସ୍ତ ସତ୍ୟ ବିଦ୍ୟାର ଗନ୍ତାଘର । ତେଣୁ ବେଦର ପଠନ-ପାଠନ, ଶ୍ରବଣ - ଶ୍ରାବଣ ପ୍ରତ୍ୟେକ ମାନବର ପରମ ଧର୍ମ ବୋଲି କୁହାଯାଇଅଛି । ଏଥିରେ କୌଣସି ଜାତି, ଧର୍ମ, ବର୍ଣ୍ଣ, ସଂପ୍ରଦାୟ ସଂପର୍କରେ କୁହାନଯାଇ କେବଳ ମନୁଷ୍ୟ ସମାଜ ପାଇଁ କୁହାଯାଇଛି ।

ପ୍ରତି ମନୁଷ୍ୟର ଚିନ୍ତନ ତଥା ମନନ ଯେପରି ହେବ, ସେ ସେହିପରି ହୋଇଯିବ, ଏଥିପାଇଁ ବେଦରେ କୁହାଯାଇଛି 'କ୍ରତୁମୟୋଽୟଂ ପୁରୁଷଃ' ଯାହାର ଭାବନା ଯେମିତି ସେ ସେମିତି ହୋଇଯାଏ । ଶାସ୍ତ୍ରକାରମାନେ କହନ୍ତି -

''ଯାଦୃଶୈଃ ସନ୍ନିବିଶତେ ଯାଦୃଶଶ୍ଚୋପସେବତେ ।
ଯାଦୃଶିଚ୍ଛେଦ୍‌ବା ଭବିତୁଂ ତାଦୃଗ୍‌ଭବତି ପୁରୁଷଃ ।।''

ମନୁଷ୍ୟ ଯେଉଁମାନଙ୍କ ସହ ସମ୍ପର୍କ ରଖେ, ଯାହାଙ୍କ ସେବାକରେ ଓ ଯେପରି ହେବାକୁ ଚାହେଁ ସେ ସମୟକ୍ରମେ ସେହିପରି ହୋଇଯାଏ । ଏଥିପାଇଁ ଜ୍ଞାନୀମାନେ କହନ୍ତି ବିଚାରଠାରୁ ଶ୍ରେଷ୍ଠ ଶାସ୍ତ୍ର ଓ ଚିନ୍ତନଠାରୁ ଶ୍ରେଷ୍ଠ ଶାସ୍ତ୍ର ସଂସାରରେ ନାହିଁ । ନିଜର ଆଚରଣ ଠାରୁ ବଳି ଆଉ କୌଣସି ବଡ଼ କଷଟି ନାହିଁ ।

ମନୁଷ୍ୟ ଅନେକ କାର୍ଯ୍ୟ ଏପରିକରେ ଯାହାଦ୍ୱାରା ସେ ନିଜେ ଅଶାନ୍ତିରେ ରହେ ଓ କ୍ରମଶଃ ତା'ର ବୁଦ୍ଧିରେ ମଳିନତା ପ୍ରବେଶ କରେ ଓ ବିଚଳିତ ହୁଏ । ସମୟକ୍ରମେ ଚିତ୍ତବୃତ୍ତି ଅସ୍ଥିର ହୁଏ ଓ ନିଜେ ଭୟଭୀତ ହୋଇଯାଏ । ସେ ସମୟରେ ମନରେ ଅହଂକାର ଆସେ । ଏସବୁ ଦୁଷ୍କର୍ମ ସୂଚନା । ଏହି ସୂଚନାରୁ ଚରିତ୍ରହୀନତା ସୃଷ୍ଟି ହୁଏ । ଖରାପକାମ ଖରାପ ସୃଷ୍ଟିକରେ ଓ ଭଲକାମରେ ଭଲ ସୃଷ୍ଟି ହେବା ସ୍ୱାଭାବିକ ।

ଗୃହନିର୍ମାଣ କରୁଥିବା ବ୍ୟକ୍ତି କେବେ ବଙ୍କାଇଟା ପ୍ରୟୋଗ କରେନା । ଠିକ୍ ସେହିପରି ଚରିତ୍ର ନିର୍ମାଣ କରୁଥିବା ବ୍ୟକ୍ତି ଚରିତ୍ର ଶୁଦ୍ଧ ରଖେ, ଭଙ୍ଗା ଇଟାରେ ଭବନ ନଷ୍ଟ ହେଲାପରି ଚରିତ୍ରହୀନ ବ୍ୟକ୍ତି ସବୁଆଡୁ ନଷ୍ଟ ହୋଇଯାଏ । ତେଣୁ ଯୁବକମାନେ ଚରିତ୍ର ନିର୍ମାଣ ପାଇଁ ସର୍ବଦା କୁସଂଗରୁ ଦୂରରେ ରହିବାକୁ ପ୍ରଚେଷ୍ଟା କରିବା ଉଚିତ୍ । ନିଜର ତ୍ରୁଟିକୁ ସଂଶୋଧନ କରିବା ଉଚିତ । ଶ୍ରେଷ୍ଠ ଓ ଚରିତ୍ରବାନ ହେବାକୁ ଓ କରାଇବାକୁ ସକଳ ପ୍ରଯତ୍ନ କରିବା ଉଚିତ । ବ୍ୟକ୍ତି ସମାଜର ମୂଳସ୍ତମ୍ଭ । ବ୍ୟଷ୍ଟିରୁ ସମଷ୍ଟି ହୁଏ । ଯଦି ସମାଜ ଓ ରାଷ୍ଟ୍ରର ପ୍ରତ୍ୟେକ ବ୍ୟକ୍ତି ସୁସ୍ଥ, ଜାଗରୁକ, କର୍ମଠ, ବୁଦ୍ଧିମାନ, ଉଦ୍ୟମୀ, ପୁରୁଷାର୍ଥୀ ଓ ଶୂରବୀର ନହେବେ, ତେବେ ସମାଜ ଓ ରାଷ୍ଟ୍ର ମଧ୍ୟ ଦୁର୍ବଳ ହୋଇଯିବ ।

ଜଣେ କବିଙ୍କ ଭାଷାରେ - ଜୀବନ ଏକ ବାକ୍ୟ (Sentence) ଯଥା ନିଜକୁ ନିଜେ ଜାଣ । ଏହାର ଶବ୍ଦାର୍ଥରେ ପାପ ଓ ପୁଣ୍ୟ ବୋଲି ଜାଣ । ଯୌବନ ଶୂନ୍ୟସ୍ଥାନ (Das) , ବାର୍ଦ୍ଧକ୍ୟ କମା (Comma) ଓ ମୃତ୍ୟୁ ପୁର୍ଣ୍ଣବିରାମ (Full stop).

ମୃଦୁତା ବା କୋମଳତା ହିଁ କଠୋରତାକୁ ନଷ୍ଟକରେ । କୋମଳତା ମନୁଷ୍ୟକୁ ଅଗ୍ରଗତି କରାଏ । ଏହାଦ୍ୱାରା କଠୋରତମ ଓ କୋମଳତମ ଦୁଇଟି ଦିଗ ଆୟତ ହୁଏ । ଯେଉଁ କାର୍ଯ୍ୟରେ ମନୁଷ୍ୟର ଯେପରି ଭାବନା ରହେ ଫଳ ବା ପରିଣାମ ମଧ୍ୟ ତଦନୁଯାୟୀ ହୋଇଥାଏ । ଏଥିପାଇଁ ଶାସ୍ତ୍ରାକାରମାନେ କହନ୍ତି 'ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ' । ଯେପରି ଭାବନା କର୍ମରେ ଥାଏ ଫଳରେ ତାହା ପ୍ରତିଫଳିତ ହୁଏ । ତେଣୁ ଚରିତ୍ର ନିର୍ମାଣ ପାଇଁ ଭାବନାକୁ ଶୁଦ୍ଧ ଓ ଶୁଭକରିବା ଉଚିତ ।

ମହାନ ଜ୍ଞାନୀ ଟି.ଏଲ୍.ବାସ୍ୱାନୀ କହନ୍ତି - ପ୍ରଭୁଙ୍କୁ କେବଳ୍ ପ୍ରେମ କରନା ବରଂ ପ୍ରଭୁଙ୍କୁ ଭୟକର । ସେହି ଭୟ ମନର ପ୍ରଦୀପ । ସେହି ପ୍ରଦୀପରେ ମନର ଦୋଷ ଦେଖାଯାଏ । ଅନ୍ୟର ଦୋଷକୁ ନ ଦେଖି ନିଜଦୋଷକୁ ଦେଖି ତାକୁ ନିରାକରଣ କରିବା ଉଚିତ । ଭର୍ତ୍ତୃହରିଙ୍କ ମତରେ -

ବ୍ୟାଘ୍ରୀବ ତିଷ୍ଠତି ଜରା ପରିତର୍ଜୟନ୍ତୀ
ରୋଗାଶ୍ଚ ଶତ୍ରବଇବ ପ୍ରହରନ୍ତି ଦେହମ୍ ।।
ଆୟୁଃ ପରିସ୍ରବତି ଭିନ୍ନ ଘଟାଦିବାମ୍ଭୋ
ଲୋକସ୍ତଥାପ୍ୟହିତମାଚରତୀତି ଚିତ୍ରମ୍ ।।

ବାର୍ଦ୍ଧକ୍ୟ ବାଘୁଣୀ ପରି ଚାହିଁ ବସିଛି । ରୋଗ ଶତ୍ରୁପରି ପ୍ରତିଦିନ ପିଟୁଛି । ଆୟୁ କଣାମାଠିଆରେ ପାଣିପରି ଝରୁଛି । ତଥାପି ଲୋକେ ଅହିତ କରୁଛନ୍ତି, ଏହାହିଁ ଆଶ୍ଚର୍ଯ୍ୟ, ଏହା ପାଇଁ କାଳ ଥାଉଁଥାଉଁ ସଚେତ ହୋଇ ନିଜର ଚରିତ୍ର ନିର୍ମାଣ କରିବା ଉଚିତ । ଚରିତ୍ରବାନର ମୃତ୍ୟୁ ନାହିଁ ।

ପଣ୍ଡିତ ଜବାହାର ଲାଲ ନେହେରୁ କହନ୍ତି - ''ମନୁଷ୍ୟର ଆୟୁଯେତେ ବଢ଼େ ଲୋକେ ତାକୁ ବିଚାର ଅପେକ୍ଷା ଚରିତ୍ରରେ ଅଧିକ ଜାଣିବାକୁ ଚେଷ୍ଟା କରନ୍ତି'' । ବିଖ୍ୟାତ ହିନ୍ଦୀ ଉପନ୍ୟାସକାର ମୁନ୍‌ସୀ ପ୍ରେମଚନ୍ଦଙ୍କ ମତରେ ''ଯେଉଁ ଶିକ୍ଷା ଆମକୁ ନିର୍ମଳକୁ ପୀଡ଼ା ଦେବାରେ କାର୍ଯ୍ୟକରେ ଓ ଧନ ଦେଶର ଚାକର କରାଏ, ଯେ ଭୋଗବିଳାସର ମାର୍ଗ ପ୍ରଶସ୍ତ କରେ ଓ ଯେ ଆମକୁ ଅନ୍ୟର ରକ୍ତରେ ମୋଟା ହେବାକୁ ଶିଖାଏ, ତାହା ଶିକ୍ଷା ନୁହେଁ ବରଂ ଭ୍ରଷ୍ଟତା ।

ଅନେକ ବିଦ୍ୱାନଙ୍କ ମତରେ ଶିକ୍ଷାହିଁ ଚରିତ୍ର ନିର୍ମାଣର ପ୍ରଧାନ ସୂତ୍ରଧର । ଯୋଗୀ ଶ୍ରୀ ଅରବିନ୍ଦ କହନ୍ତି - ''ଅଧ୍ୟାପକ ରାଷ୍ଟ୍ରୀୟ ସଂସ୍କୃତିର ଚତୁର ମାଳୀ । ସେ ସଂସ୍କାର ବେଦୀରେ ସ୍ୱକୀୟ ଶ୍ରମ ଜଳସେଚନ ଦ୍ୱାରା ଚରିତ୍ରବୃକ୍ଷକୁ ମହାପ୍ରାଣ ଓ ଶକ୍ତିମାନ କରାନ୍ତି । ଦାର୍ଶନିକ ସ୍ପେସର୍‌ଙ୍କ ମତରେ -''ପାଠ୍ୟକ୍ରମ ସମାପ୍ତ କରିବା ବଡ଼କାର୍ଯ୍ୟ ନୁହେଁ ବରଂ ଚରିତ୍ର ଶିକ୍ଷା ପାଠ୍ୟକ୍ରମରୁ ସାମାନ୍ୟ ଅଧ୍ୟୟନ ଜୀବନରେ ଯଥେଷ୍ଟ ପ୍ରଭାବ ପକାଏ ।'' ଚରିତ୍ରବାନ ହେବାହିଁ ଜୀବନର ବୈଶିଷ୍ଟ୍ୟ ।

ଦେଶରେ ଚରିତ୍ରର ଦୃଶ୍ୟ ଆଜି ବିଧାନସଭା ଓ ଲୋକସଭାରେ ଦେଖିବାକୁ ମିଳୁଛି । ଦେଶର ଆଇନ ନିର୍ମାତାମାନେ ଆଜି କେଉଁ ଦିଗରେ, ଏକଥା ସମସ୍ତଙ୍କ ଚିନ୍ତାର କାରଣ । କୌଣସି ଜିନିଷ ଆମେ ବେପାରି ଠାରୁ କିଣିଲା ବେଳେ ପ୍ରଥମେ ତାକୁ ପରୀକ୍ଷାକରୁ । ନମୁନାକୁ ଦେଖି ଆମେ ପୂର୍ଣ୍ଣ ଦ୍ରବ୍ୟର ମୂଲ୍ୟାୟନ କରୁ, ଠିକ୍ ସେହିପରି ଆମଦେଶବାସୀ କେତେ ସଚ୍ଚରିତ୍ର ଓ ବିଦ୍ୱାନ ତାହା ବିଧାନସଭା ଓ ଲୋକସଭାକୁ ପଠାଉଥିବା ସଦସ୍ୟମାନଙ୍କ ଆଚରଣରୁ ସ୍ପଷ୍ଟ ହୋଇଯାଉଛି, ଚରିତ୍ରକୁ ନିର୍ମାଣ କରିବାପାଇଁ ନିୟମ-କାନୁନ ଅଛି ସତ; କିନ୍ତୁ ଏହାକୁ କାର୍ଯ୍ୟରେ ଲଗାଉଛି କିଏ ?

ଡାକ୍ତରମାନେ ତମାଖୁ, ଖଇନିକୁ ବିଷ କହିଛନ୍ତି ପ୍ୟାକେଟ୍ ଉପରେ ମଧ୍ୟ ନଖାଇବାର ନିର୍ଦ୍ଦେଶ । ତଥାପି ବଜାରରେ ବିକ୍ରି ଚାଲିଛି । ଏସବୁ ଦେଶର ସାଧାରଣ ଜନତାଙ୍କ ସହଖେଳ ଖେଳାଯାଉନି କି ? ଖୁବ୍ ସହଜରେ ଧନବାନ୍ ହେବାକୁ ଲଟେରୀ କିଏ ଚଳାଉଛି । ଏହାପଛରେ ପ୍ରଶାସନର ସହମତି ଅଛି । ଏସବୁ ପଛରେ ଦିନକୁ ଓଳିଏ ଖାଉଥିବା ଲୋକର ଧନ ଲାଗୁଛି । ଧନବାନ ହେବା ନିଶାରେ ଏମାନେ ନିଜପାଖରେ ଥିବା ସାମାନ୍ୟ ଧନକୁ ମଧ୍ୟ ବରବାଦ କରିବାରେ ଲାଗିଛନ୍ତି । ଦେଶର ପ୍ରକୃତ ସଂପତ୍ତି ଆଜିର ଯୁବକ-ଯୁବତୀ । ସେମାନେ ବେଳକୁବେଳ ବିଳାସୀ, ପ୍ରମାଦୀ, ଆଳସୀ ଓ କର୍ମକୁଣ୍ଠ ହୋଇଯାଉଛନ୍ତି । ଏମାନଙ୍କ ପାଇଁ ଯୋଜନା ନାହିଁ । କେଉଁ ମାର୍ଗରେ ଏମାନେ କର୍ମଠ ତଥା ସ୍ୱାଭିମାନୀ ହେବେ ସେଥିପାଇଁ ଯୋଜନା ନାହିଁ ।

ତେଣୁ ଦେଶର ଯୁବକଯୁବତୀ ସ୍ୱୟଂ ଜାଗ୍ରତ ହୋଇ ଅନ୍ୟକୁ ଜାଗରଣ କରିବା ଉଚିତ୍ । ଯିଏ ଯେଉଁ ସ୍ଥିତିରେ ଅଛନ୍ତି ଅର୍ଥାତ ବିଶ୍ୱବିଦ୍ୟାଳୟ, ବିଦ୍ୟାଳୟ ସରକାରୀ କାର୍ଯ୍ୟାଳୟ ବା ବେସରକାରୀ କାର୍ଯ୍ୟାଳୟ, କୃଷକ ଅଥବା ସେବକ ହୁଅନ୍ତୁ ନା କାହିଁକି ସମସ୍ତେ ଏକତ୍ର ହୋଇ ଦେଶରକ୍ଷା କଥା ଚିନ୍ତା କରନ୍ତୁ । ଦେଶର ଚରିତ୍ର ନୌକା ଅଗାଧ ଜଳରାଶିରେ ବୁଡ଼ିଗଲାପରି ସ୍ଥିତିକୁ ଆସିଗଲାଣି । କିଏ ଏହାକୁ କୂଳରେ ଲଗାଇବ ଏ ବିଷୟରେ ଅଧିକ ଚିନ୍ତନ ଆବଶ୍ୟକ, ଜଣେ କବିଙ୍କ ଭାଷାରେ -

ଜୋ ଡୁବେଗୀ କିସ୍ତୀ  ତୋ ଡୁବେଙ୍ଗେସାରେ
ନତୁମହୀ ବଚୋଗେ ନ ସାଥୀ ତୁହ୍ମାରେ ॥



# ଅଳକା ସାନ୍ୟାଲ୍ – ଏକ ପ୍ରାୟୋଗିକ ଆଲୋଚନା

*ରୋଜାଲିନ ମିଶ୍ର*
ବି.ଏ. ଶେଷବର୍ଷ ଓଡ଼ିଆ ଅନର୍ସ

ଆଧୁନିକ ଓଡ଼ିଆ କାବ୍ୟ ଜଗତରେ କବି ଗୁରୁପ୍ରସାଦ ମହାନ୍ତି ଜଣେ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ । ୧୯୩୯-୧୯୪୦ ସମୟ ମଧ୍ୟରେ ଆତ୍ମପ୍ରକାଶ କରିଥିବା ଶ୍ରୀ ମହାନ୍ତିଙ୍କର କାବ୍ୟଚେତନାରେ ରୋମାଣ୍ଟିକ୍ ଚେତନା ହିଁ ପ୍ରମୁଖ ସ୍ଥାନ ଗ୍ରହଣ କରିଛି । କବିଙ୍କ ଆଦ୍ୟତମ କବିତାଗୁଡ଼ିକରେ ସବୁଜଯୁଗୀୟ ପ୍ରଭାବ, ଅପ୍ରତିହତ ଥିବା ଲକ୍ଷ୍ୟ କରାଯାଏ । ପ୍ରଥମ ବିଶ୍ୱ ମହାଯୁଦ୍ଧ (୧୯୧୪-୧୯୧୮) ପରେ ପରେ ଏବଂ ଭାରତୀୟ ସ୍ୱାଧୀନତା ସଂଗ୍ରାମର ପ୍ରଥମ ଅହିଂସା ପଦକ୍ଷେପ ଅସହଯୋଗ ଆନ୍ଦୋଳନ ପରେ ପରେ ସବୁଜ ଗୋଷ୍ଠୀଙ୍କ କବିତାରେ ଯେଉଁ ସମୟ-ନିରପେକ୍ଷ ସ୍ୱର ପ୍ରକାଶ ପାଇଥିଲା, ଦ୍ୱିତୀୟ ପୃଥିବୀ ମହାଯୁଦ୍ଧ (୧୯୩୯-୧୯୪୫)ର ପ୍ରାରମ୍ଭ କାଳରେ ଶ୍ରୀ ମହାନ୍ତିଙ୍କ କାବ୍ୟ ସ୍ୱରରେ ଅନୁରୂପ ଅସଚେତନା ଲକ୍ଷ୍ୟ କରାଯିବ । ଅଥଚ କିଛି ପରେ ପରବର୍ତ୍ତୀ ପଦକ୍ଷେପ ପାଇଁ କବି ମାନସିକ ପ୍ରସ୍ତୁତିରେ ନୀରବ ରହିଛନ୍ତି । ଏହି ପର୍ଯ୍ୟାୟରେ ତାଙ୍କ କବିତାର ପୂର୍ବତନ ରୋମାଣ୍ଟିକ୍ ସ୍ୱର ବିଭବ ଏକ ବାସ୍ତବବାଦୀ ଚେତନାକୁ କେନ୍ଦ୍ରକରି ସଂଗଠିତ ହୋଇପାରିଛି । ସେହି ପ୍ରେମ, ପ୍ରଣୟ, ପ୍ରକୃତି; ଅଛି, କିନ୍ତୁ ତାହା ଆଉ ପୂର୍ବପରି ଛଳ ଛଳ ମୁଖର ନୁହେଁ, ବରଂ ଧୂଷର ମଳିନ, ତେଣୁ ଏଠି ଜୀବନର ପ୍ରକୃତ ରୂପକୁ ଅନୁଭବ କରି ଅଧିକ ପରିପକ୍ୱ ଓ ନିଷ୍କପଟ ଭାବରେ ବାସ୍ତବ ଦୃଷ୍ଟିରୁ ପ୍ରକାଶ କରିଅଛନ୍ତି ।

ଏହି ପର୍ଯ୍ୟାୟରେ ରଚିତ କବିଙ୍କର କବିତା ସବୁ ଅଧିକ ଭାବରେ 'ରୋମାଣ୍ଟିକ୍ ବାସ୍ତବବାଦୀ ଚେତନା'କୁ ପ୍ରକାଶ କରି ଅଛି । ପଠିତ "ଅଳକା ସାନ୍ୟାଲ୍" କବିତାଟି ଏହି ପର୍ଯ୍ୟାୟରେ ରଚିତ ଏକ ସଫଳ କବିତା ।

ଗୁରୁପ୍ରସାଦ ମହାନ୍ତିଙ୍କର ଅଳକା ସାନ୍ୟାଲ୍ କବିତାଟି ରୋମାଣ୍ଟିକ୍ ରିୟଲିଜିମ୍‌ର ନିରୋଳ ଦୃଷ୍ଟାନ୍ତଟିଏ । ଇତିପୂର୍ବରୁ ଆଲୋଚ୍ୟ ଶୀର୍ଷକରେ କବିତାଟିଏ ରଚନା କରିଥିଲେ ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ । ସେଠି ଅଳକା ସାନ୍ୟାଲ୍ ଥିଲା ନୂଆଖାଲି ପଠାଣବସ୍ତି ଉଦ୍ଧୃତା ମହିଳା । ତା'ର ବାସ୍ତବ ଧର୍ଷିତା ଚେହେରା ସତରେ ପାଠକର ହୃଦୟରେ ସମ୍ବେଦନା ସୃଷ୍ଟି କରିବାରେ ଅସମର୍ଥ ହୋଇଛି ବୋଲି ମନେହୁଏ । ସେଠି ଅଳକା ସାନ୍ୟାଲ୍ ଏକ ଚିରନ୍ତନ ନାରୀ ସତ୍ତାଟିଏ । ସୀତା, ଦ୍ରୌପଦୀ, ଉର୍ବଶୀଙ୍କଠାରୁ ନାଳନ୍ଦାର ସହପାଠିନୀ ହୋଇଥିବା ବାନ୍ଧବୀଟିକୁ କବି ଆବିଷ୍କାର କରିଛନ୍ତି ନୂଆଖାଲି ପଠାଣ ବସ୍ତିରେ । ସେଦିନ ହିନ୍ଦୁମୁସଲ୍‌ମାନ ଦଙ୍ଗାର ଶୀକାର ହୋଇ ଗଣଧର୍ଷିତା ହୋଇଥିବା କିଶୋରୀ କନ୍ୟାଟିର କରୁଣ ପରିଣତିରେ କବି ଯୁଗେ ଯୁଗେ ନାରୀ ଉପେକ୍ଷିତା ନିର୍ଯ୍ୟାତିତା, ଏତିକି ମାତ୍ର ପ୍ରକାଶ କରିବାର ଚେଷ୍ଟା କରି ଅଛନ୍ତି । କବି ଗୁରୁ ପ୍ରସାଦ ମହାନ୍ତିଙ୍କର ଅଳକା ସାନ୍ୟାଲ୍ କବିତାଟି କିନ୍ତୁ ପାଠକର ହୃଦୟରେ ସ୍ୱତନ୍ତ୍ର ସ୍ଥାନର ଦାବି କରେ । ୧୯୪୭ରେ ନବଭାରତ ପତ୍ରିକାରେ ପ୍ରଥମେ କବି ଜିବନାନନ୍ଦ ଦାସ "ବନଲତା ସେନ୍" ଶୀର୍ଷକରେ ଯେଉଁ କବିତାଟି ରଚନା କରିଥିଲେ ତାହାର ପ୍ରତିକ୍ରିୟା ସ୍ୱରୂପ ୧୯୪୭ ରେ ନବଭାରତ ପତ୍ରିକାରେ ସଚ୍ଚି ରାଉତରାୟ ,ଏବଂ ୧୯୫୪ରେ କବି ଗୁରୁ ପ୍ରସାଦ ମହାନ୍ତି ଏହି ଦୁଇଟି କବିତାର ପ୍ରତିକ୍ରିୟାରେ ରଚନା କରିଛନ୍ତି, ଆଲୋଚ୍ୟ କବିତା "ଅଳକା ସାନ୍ୟାଲ୍" । ଗୁରୁବାବୁଙ୍କ ଅଳକା ସାନ୍ୟାଲ୍ ତାଙ୍କର ସମକାଳୀନ ସମାଜର ପ୍ରତିନିଧି ସ୍ଥାନୀୟ, ନାରୀ-ସତ୍ତାଟିଏ ।

କବିତାଟି ବାହ୍ୟିକ ଭାବରେ ଯେତେ ରୋମାଣ୍ଟିକ୍ ମନେ ହେଉଥିଲେ ମଧ୍ୟ ଏହାର ଅର୍ନ୍ତନିହିତ ସ୍ୱରଟି ଅତ୍ୟନ୍ତ କରୁଣ, ଏକଥା କବିତାଟିର ସାଧାରଣ ପାଠକଟିଏ ମଧ୍ୟ ହୃଦୟଙ୍ଗମ କରିପାରେ । ଏହି କରୁଣ ସ୍ୱରଟି ଏତେ ଶାଣିତ ଯେ ତାହା ପାଠକୀୟ ମିତ୍ରତା ସୃଷ୍ଟି କରିବାରେ ସହାୟକ ହୋଇପାରିଛି । ଏହାହିଁ ବୋଧହୁଏ ଆଲୋଚ୍ୟ କବିତାଟିର ପ୍ରଥମ ଆକର୍ଷଣ ।

କବିତାର ଆରମ୍ଭରେ ଗୁରୁବାବୁ ସଚ୍ଚିରାଉତରାୟଙ୍କ ଅଳକା ସାନ୍ୟାଲ୍‌ର ସୂଚନା ପ୍ରଦାନ କରିଅଛନ୍ତି । ଅଥଚ ରାଉତରାୟଙ୍କର ଦୃଷ୍ଟିଭଙ୍ଗୀ ଓ ସମୟ ଉଭୟ ଗୁରୁବାବୁଙ୍କ କାଳକୁ ଅଚଳ । ତେଣୁ ଏକପ୍ରକାର ଅବଜ୍ଞାମୂଳକ ମନୋବୃତ୍ତିର ସାମାନ୍ୟ ସୂଚନା ପ୍ରଥମ ପଦ୍‌କ୍ତିରେ ବାରିହୁଏ ନାହିଁ କି ? ଯେତେବେଳେ କବି ଆବୃତ୍ତି କରନ୍ତି ।

''ତୁମକୁ ବା ସଚ୍ଚିବାବୁ ଦେଖିଥିଲେ କେବେ,
ଜାଣେ ନାହିଁ ଅଳକା ସାନ୍ୟାଲ୍
ସେତେବେଳେ ଆକାଶରେ ସୂର୍ଯଚିତା ବାଘ
ଅବା ହରିଣର ଛାଲ,
ଅବା ଥିଲା ଗୋଲ୍ ହୋଇ ହଳଦିଆ
ଜହ୍ନର ମଶାଲ୍ ।

ସଚ୍ଚିବାବୁଙ୍କର ରୋମାଣ୍ଟିକ୍ ଦୃଷ୍ଟିକୁ ଏଠାରେ ଅତି ଚତୁରତାର ସହିତ ବ୍ୟଙ୍ଗ କରିବାର ସଙ୍ଗେସଙ୍ଗେ ସେହି ବିଳାସିନୀ ନାୟିକା ଅଳକାକୁ ବାସ୍ତବ ଜୀବନ ଭୂଇଁରୁ ଆବିଷ୍କାର କରିଛନ୍ତି କବି ଶ୍ରୀ ମହାନ୍ତି ।

ଯୁଦ୍ଧ ପରବର୍ତ୍ତୀ କାଳୀନ, ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିବା ଜୀବନ ସଂଗ୍ରାମରେ ଅନବରତ ଯୁଟୁଥିବା ନାରୀ ସୈନିକଟିଏ- ଅଳକା ସାନ୍ୟାଲ । ତା'ର କରୁଣ ଆର୍ତ୍ତ ଚିତ୍କାର ଗୁରୁ ମହାନ୍ତିଙ୍କ ପରି କବିଟିଏ ହିଁ ଶୁଣିପାରେ । ସେଥିପାଇଁ ସିନା କାବ୍ୟନାୟିକାର ଏତେ ସମ୍ବେଦନ ।

ମୁଁ ତୁମକୁ ଦେଖେ ଆଜି x x x ''ତୁମେ ପୁଣି କଥାକୁହ ମୁହଁ ପୋତି ଟେବୁଲ୍ ସେପାଖେ ତୁମେ ପୁଣି ଉଠି ଆସି ଆସ୍ତେ ବସ ପାଖ ଚୌକିରେ । ଏହିପରି ଏକ ସମ୍ବେଦନାଶୀଳ ଉଦ୍ଧୃତିଟିରେ ଅତି ସଚେତନତାର ସହିତ କବି ଅଳକା ସାନ୍ୟାଲ୍‌ର ଦୁଃସ୍ଥ ପରିସ୍ଥିତିର ସୂଚନା ଦେଇଛନ୍ତି । ଏହିପରି ଏକ ନଷ୍ଟ ସମୟରେ ଅଳକା ଜୀବନ ବଞ୍ଚୁଛି । ଯେଉଁଠାରେ ବଞ୍ଚିବାର ରାସ୍ତାଟି ଏତେ ବିସ୍ତୃତ ଯେ ସେ ଆପେ ଆପେ ବାଟବଣା ହୋଇଯାଉଛି । ତେଣୁ ଦପ୍ତର ଭିତରେ ନିଜର କର୍ତ୍ତବ୍ୟ ବିସ୍ମୃତ ହେବା କିଛି ଅସମ୍ଭବ ଘଟଣା ନୁହେଁ । ବରଂ ଏ ସମୟ ପାଇଁ ଏହା ଅତି ବାସ୍ତବ । ତେଣୁ ଚରିତ୍ର ହଜାଇ ସେ ଚରିତ୍ରହୀନା ହୁଏ ନାହିଁ । ଚମତ୍କାର ଭାବରେ କବି ସେମିଜ୍‌ରୁ ଚା ଦାଗ ଗରମ ପାଣିରେ ଧୋଇବା, ଟେବୁଲ୍ ସେପାଖେ ମୁହଁ ପୋତି କଥା କହିବା ଆଦି ପ୍ରସଙ୍ଗର ବର୍ଣ୍ଣନା ମଧ୍ୟରେ ପୁନର୍ବାର ସତୀତ୍ୱର ଗର୍ବରେ ଫାଟି ପଡ଼ିବାର ଚିତ୍ରଟିଏ ଦେଇଛନ୍ତି । ଏଥିରୁ ତା'ର ସାମଗ୍ରିକ ଜୀବନଚିତ୍ର ପ୍ରକାଶ ପାଇବାରେ ଅସୁବିଧା ହୋଇ ନାହିଁ । ଏହାହିଁ ତ ତା'ର ବାସ୍ତବ ପରିଚୟ । ଦପ୍ତରରେ ଚାକିରୀ କରୁଥିବା ଅଳକା ପରିବାର ପ୍ରତିପୋଷଣ ନିମିତ୍ତ ଉପରିସ୍ଥ କର୍ମଚାରୀଙ୍କୁ ସନ୍ତୁଷ୍ଟ କରାଇବାରେ ବୋଧହୁଏ କାବ୍ୟନାୟକର ଦୃଷ୍ଟିରେ ଅସଙ୍ଗତବୋଧ ହୋଇନାହିଁ । ବରଂ ଏପରି ପରିସ୍ଥିତିରେ ସୁଯୋଗ ସୃଷ୍ଟି କରୁଥିବା ନଷ୍ଟ ସମାଜଟି ଅଧିକ ବ୍ୟାଧିଗ୍ରସ୍ତ ମନେହୁଏ ।

କ୍ରମଶଃ ସମୟ ଅତିକ୍ରାନ୍ତ ହୋଇଗଲେ । ଦ୍ୱିପ୍ରହର ଆସେ । ଦପ୍ତର ଭିତରେ ବାହାରେ, ସବୁଠାରେ କାଉ ଆଉ ବାଦୁଡ଼ିମାନଙ୍କର ଚେଁ, ଚେଁ ଶବ୍ଦରେ ପରିବେଶ ଦୂଷିତ ହୁଏ । ଜୀବନ ଯେମିତି ବିବର୍ଣ୍ଣ ଖାକି ଆଉ ମାଟିଆ ରଙ୍ଗର ଧୂଳିରେ ଆଚ୍ଛନ୍ନ ସମଗ୍ର ପରିବେଶ ସେହିପରି ପୁଣି ତତୋଽଧିକ ଧୂଷର । ଆଧୁନିକ ମଣିଷ ପାଇଁ ଏ ସମୟ ଯେତିକି ଆଶ୍ୱାସନା ସୃଷ୍ଟି କରିବାର କଥା । ବୋଧହୁଏ ତାହା ସମ୍ଭବ ହୋଇ ନାହିଁ । ତେଣୁ ସମସ୍ତେ ବାଟବଣା ହେବାକୁ ବାଧ । ତେଣୁ ଯନ୍ତ୍ରଣାଜର୍ଜର ଆଧୁନିକ ମଣିଷ ପାଇଁ କୋଇଲିର ମଧୁର କୋକିଳ ନୁହେଁ ବରଂ କାଉ ଆଉ ବାଦୁଡ଼ିର ରୁକ୍ଷ କର୍କଶ

ରାବ ସୃଷ୍ଟି କରୁଛି ଏକ ପ୍ରକାର ଅସ୍ଥିର ଯନ୍ତ୍ରଣା, ସମସ୍ତେ ତ ବାଟବଣା, ଅଳକାଠାରୁ ଆରମ୍ଭ କରି ରିକ୍ସାବାଲା ପର୍ଯ୍ୟନ୍ତ । ଏକପ୍ରକାର ଚମତ୍କାର ଭୌଗୋଳିକ ଚିତ୍ରର ନାଟକୀୟ ପରିବେଷଣରେ କବି ଏତେ ଦକ୍ଷତାର ପରିଚୟ ଦେଇଛନ୍ତି ଯେ ତାହା କବିତାଟିର ଦ୍ୱିତୀୟ ଓ ତୃତୀୟ ସ୍ତବକରେ ବର୍ଣ୍ଣନାରେ ବାରିହୁଏ ।

ଏହିପରି ଏକ ଦୂଷିତ ପରିବେଶ ଭିତରେ ପାଠକଟି ଯଦି ଅଳକା ସତୀ ପାଲଟିବାର ସ୍ୱପ୍ନ ଦେଖେ, ତେବେ ହତାଶ ହେବା ସ୍ୱାଭାବିକ, ଅଳକା ଏପରି ଏକ ସମାଜରେ ବାସ କରେ, ଯେଉଁଠାରେ ସ୍ୱପ୍ନ ତା'ର ଅଚରିତାର୍ଥ ଓ ବିଫଳହେବା ପାଇଁ ବାଧ୍ୟ । ତେଣୁ ତୃତୀୟ ଓ ଚତୁର୍ଥ ପଙ୍‌କ୍ତିରେ ଏହା ଚମତ୍କାର ବର୍ଣ୍ଣନା ।

ଏ ଅଳକା ପୁଣି ଯୋତାପରିଶୋଭୀନୀ / ଭଞ୍ଜଙ୍କ ନାୟିକା ପରି ଚରଣଯୁଗଳ ତା'ର ଅଳତାରଞ୍ଜିତ ନୁହେଁ । ତା' ପାଇଁ ସବୁ କଠୋର ବାସ୍ତବତା ଭିତରେ ପ୍ରେମ ନିଃଶେଷ ହୋଇଯାଏ । ସେ ଆଉ ଲଜ୍ଜାଶୀଳା ହୋଇ ରହେ ନାହିଁ । ବିଛଣାରେ ଲୋଟି ପଡ଼ିବା ପରି ଅସଂଯତ ପରିବେଶ ଭିତରେ ସେ ଆଉ ସଚ୍ଚିରାଉତରାୟଙ୍କ ଅଳକା ପରି ହୋଇପାରେ ନାହିଁ । ସଭାସମିତିକୁ ତା'ର ଅବାଧ ଗତି । ଦ୍ୱି ପ୍ରହରରେ ଏପରି ଅସଂଯତ ଅବସ୍ଥାରେ ଦପ୍ତର ଭିତରେ ଥିବା ଅଳକା ଅପରାହ୍ଣରେ ସଭା ସମିତିରେ ବକ୍ତୃତା ଝାଡୁଥିବା ନାରୀନେତ୍ରୀଟିଏ ସାଜେ - କବି ମହାନ୍ତିଙ୍କର ଭାଷାରେ—

''ଟାଉନ୍ ହଲ୍ ସଭାରେ, ମୁଁ ପାଏ ପୁଣି ତୁମରି ସାକ୍ଷାତ୍'' ଶ୍ରୀ ମହାନ୍ତିଙ୍କର ଅଳକା ଚଳନ୍ତି ପରିତ୍ୟକ୍ତ ସମୟର ବାସ୍ତବ ଚେହେରାଟିଏ । ତେଣୁ ସବୁଠାରେ ତା'ର ବିଚରଣ ।

''କଟକରେ ଗଳି ଗଳି ରାସ୍ତା ଛକରେ ଛକରେ

ରାତିରେ ପ୍ରସୂତି-କଷ୍ଟ ସକାଳର ରୁଗ୍‌ଣ ଜନ୍ମନେବା''

କି କରୁଣତାରେ ଭରପୂର ଉଦ୍ଧୃତ ପଙ୍‌କ୍ତିଟି ! ଯେଉଁ ଅଳକା ସମଗ୍ର ନାରୀ ଜାତିର ସମସ୍ୟା ସେ ପୁଣି ଚଳନ୍ତି ସମୟର ନଷ୍ଟ ପରିବେଶ ଭିତରେ କରୁଣତାର ପ୍ରତିକଟିଏ । ସେ ପରିବାର ପ୍ରତିପୋଷଣ ପାଇଁ ଆତ୍ମସମର୍ପିତା ହୁଏ । ଅସାମାଜିକ ବ୍ୟକ୍ତି ନିକଟରେ, ନିଜର ଗୌରବ ନିଜେ ଲୁଣ୍ଠିତ କରେ । ସେଥିପାଇଁ ସିନା ଭଞ୍ଜ, ନୂଆଖାଲି ଠାରୁ କଲିକାତା ନୂଆଦିଲ୍ଲୀ । ପୁଣି କଟକର ଗଳି ଓ ପ୍ରତି ଛକରେ ଛକରେ ତା'ର ଅବାଧ ବିଚରଣ । ସମଗ୍ର ସମାଜର ଚିତ୍ର ଓ ସମୟର ସ୍ୱରୂପକୁ ପ୍ରକାଶ କରିବାରେ ଏତିକି ବର୍ଣ୍ଣନା ଯଥେଷ୍ଟ ନୁହେଁ କି ? ପରିଣତି ସ୍ୱରୂପ ଭବିଷ୍ୟତ ମଧ୍ୟ ଅବୈଧ ଓ ନଷ୍ଟ ହେବାକୁ ବାଧ୍ୟ ।

ଶେଷ ସ୍ତବକଟି ସମସ୍ତ କବିତାର ପରିଚୟ ବହନ କରେ ।

'ପବନ ତୁମକୁ ଯେବେ ଆସ୍ତେ ନିଏ ବାଲିରୁ ସାଉଁଟି
ମୁଁ ତୁମର ସ୍ୱପ୍ନଦେଖେ ମୋର ଢ଼ିଲା ପାଇଜାମା
କାମିଜ୍‌ର ଅମରାବତିରେ ।'

ଅଳକା ପ୍ରତି କାବ୍ୟ ନାୟକର ଅସମ୍ଭବ ଆକର୍ଷଣ ଏତିକିରେ ସ୍ପଷ୍ଟ । ଅବଶ୍ୟ ସଚ୍ଚି ରାଉତରାୟ ଠିକ୍ ଏହପରି ଉଚ୍ଚାରଣ କରିଥିଲେ ଅଳକା ସାନ୍ୟାଲ୍‌ରେ ।

''ତୁମ ବିନେ ଶୂନ୍ୟ ଦିନେ ଧରଣୀର ବିଚିତ୍ର ଛାଉଣୀ ।''

ଠିକ୍ ଏହାର ପୁନରାବୃତ୍ତି କରି ଗୁରୁବାବୁ ଅଳକା ସାନ୍ୟାଲ୍ ପ୍ରତି ସମ୍ବେଦନଶୀଳ ହୋଇ ଉଠିଛନ୍ତି । ବିମୁଗ୍ଧ ପାଠକଟିଏ ଏ କବିତାର ଆବୃତ୍ତି ପରିଶେଷରେ ଏକ ପ୍ରକାର ସମ୍ବେଦନାରେ ତଲ୍ଲୀନ ହୋଇଯାଏ ।

''ଅଳକା ସାନ୍ୟାଲ୍'' କବିତାଟିର ଆତ୍ମିକ ସୌନ୍ଦର୍ଯ୍ୟ ପରି ଆଙ୍ଗିକ ବୈଶିଷ୍ଟ୍ୟ ମଧ୍ୟ କିଛି ଊଣା ନୁହେଁ । ନିରୋଳ ଗଦ୍ୟ ଛନ୍ଦରେ ରଚିତ ଆଧୁନିକ କବିତାର ଦୁର୍ବୋଧ୍ୟତା ଠାରୁ ନିଜକୁ ଯଥା ସମ୍ଭବ ଦୂରେଇ ରଖିଛନ୍ତି ଏ କବିତାର କବି । ତେଣୁ ଏକ ପ୍ରକାର ନୂତନ ଛନ୍ଦର ସୁଲଳିତ୍ ପରିବେଷଣରେ କବିତାଟି ଭିତରେ ଯେଉଁ ସାଙ୍ଗିତିକତା ସୃଷ୍ଟି କରାଯାଇଛି ତାହା ସଚେତନ ପାଠକେ ଲକ୍ଷ୍ୟ କରି ପାରିବେ ।

ମୋଟାମୋଟି ଭାବରେ କବିତାଟି ଆବୃତ୍ତିଧର୍ମୀ । ଚାରୋଟି ଧାଡ଼ିରେ ଗୋଟିଏ ପଦ ବେଳେ ବେଳେ ପ୍ରଥମ ଧାଡ଼ିର ଉପାନ୍ତ ବର୍ଣ୍ଣ ସହ ଶେଷ ଧାଡ଼ି ଏବଂ ପ୍ରଥମ ସହ ତୃତୀୟ ଓ ଦ୍ୱିତୀୟ ସହ ୪ର୍ଥ ଧାଡ଼ିର ଉପାନ୍ତ ବର୍ଣ୍ଣର ମେଳ ଥିବା ଦେଖାଯାଏ । ସେଥିପାଇଁ କବିତାଟିକୁ ପଢ଼ିଲାବେଳେ ବିଷୟବସ୍ତୁ ବୁଝାନଗଲେ ବି ହୃଦୟକୁ ସଞ୍ଚରିଯାଏ । ଉଚ୍ଚାଙ୍ଗ କବିତାରେ ନାନାବିଧ ଅନୁଭୂତି ଏକତ୍ର ମିଶ୍ରିତ ହୋଇଥିବା ପରି ଏକ କବିତାରେ ଆମେ ଲକ୍ଷ୍ୟ କରି ପାରିବା । କବିତାଟି ଏକ ପ୍ରତୀକାତ୍ମକ କବିତା । ଅନେକ ପ୍ରତୀକଧର୍ମୀ ଶବ୍ଦ ସଂଯୋଜନା ମଧ୍ୟରେ କବିତାଟିରେ ସୂଚନାତ୍ମକ ଭାବରେ ବହୁ ବର୍ଣ୍ଣନାକୁ ଇଙ୍ଗିତଧର୍ମୀ କରାଯାଇଛି । ଯେପରି ''ସିଗାରେଟ୍'' ଅନ୍ତଃସାର ଶୂନ୍ୟ ଫମ୍ପା କୃତ୍ରିମ ପରିବେଶକୁ ''କାଗଜ ଫୁଲ'' ଦ୍ୱାରା ପ୍ରତିକିତ କରାଯାଇଛି ।

ଆଧୁନିକ କବିତାରେ ବହୁବିଧ ଉପମାକୁ ବୌଦ୍ଧିକ ଚିତ୍ରକଳ୍ପ ମଧ୍ୟରେ ପ୍ରକାଶ କରାଯାଇଥାଏ । ''କୋଇଲାର ଧୂଆଁ ମୋଡ଼ି ମୋଡ଼ି ଉଠିବା ବା 'ଖାକି'' ଚିତ୍ରକଳ୍ପଟି ଭିତରୁ ବିଶ୍ୱଯୁଦ୍ଧର ଭୟାବହତାର ଚିତ୍ର ପ୍ରକାଶିତ । ସିନେମାର ହ୍ୟାଣ୍ଡ୍ ବିଲ୍ ଚିତ୍ରକଳ୍ପଟି ଅଳକାର ପୁଣି ସମଗ୍ର ସମୟର ବିବର୍ଣ୍ଣ ପ୍ରେମର ଚିତ୍ର ବହନ କରିଥାଏ ।

ମୋଟ୍ ଉପରେ ପଠିତ କବିତାଟି ପାଠକୀୟ ମିତ୍ରତା ସୃଷ୍ଟି କରିବାରେ ଏତେଦୂର ସମର୍ଥ ଯେ, ସାମାନ୍ୟ ଭାଷାରେ ପ୍ରକାଶ କରିହେବ ନାହିଁ ।

***ସହାୟକ ଗ୍ରନ୍ଥସୂଚୀ :-***


୧ । ସବୁଜରୁ ସାଂପ୍ରତିକ –
ଡଃ ନିତ୍ୟାନନ୍ଦ ଶତପଥୀ ।

୨ । ଦିଗନ୍ତ ସଂକଳନ –
ସଂପାଦକ– ସଚ୍ଚିଦାନନ୍ଦ ରାଉତରାୟ ।

୩ । ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ –
ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ।

୪ । ଆଧୁନିକ କାବ୍ୟ ଜିଜ୍ଞାସା –
ଚିତ୍ର କଳ୍ପ– ଦାଶରଥୀ ଦାସ ।

୫ । ମୂଲ୍ୟାୟନ – ଗୁରୁପ୍ରସାଦ ବିଶେଷାଙ୍କ –
ସଂପାଦନା - ପ୍ରଫୁଲ୍ଲ କୁମାର ଜଗଦ୍ଦେବ ।

୬ । ପ୍ରତୀକ ଓ ପ୍ରତୀକବାଦ ––
ପ୍ରଫୁଲ୍ଲ କୁମାର ରଥ ।




# ମନର ସ୍ୱଭାବ

*ମନୋଜ କୁମାର ରାଉତ*
+୨ ଦ୍ୱିତୀୟ ବର୍ଷ ବିଜ୍ଞାନ

ମଣିଷ ଶରୀରରେ ୫ଟି ଇନ୍ଦ୍ରିୟ ଯଥା (୧) କର୍ଣ୍ଣ (୨) ନାସିକା (୩) ଜିହ୍ୱା (୪) ଚକ୍ଷୁ (୫) ଚର୍ମ ଏହି ପାଞ୍ଚୋଟି ଇନ୍ଦ୍ରିୟ ମନଦ୍ୱାରା ଚାଳିତ ହେଉଛନ୍ତି । ମନ ଯାହା ଓ ଯେତେବେଳେ କହୁଛି ଇନ୍ଦ୍ରିୟଗୁଡ଼ିକ ସେହି ଅନୁସାରେ କାମ କରୁଛନ୍ତି । ଯେତେସବୁ ଖରାପ କାମଗୁଡ଼ିକ ଏହି ପାଞ୍ଚୋଟି ଇନ୍ଦ୍ରିୟ ଦ୍ୱାରା ହୋଇଥାଏ । ସେଗୁଡ଼ିକ ଏହି ମନ ଦ୍ୱାରା ହିଁ କରାଯାଇଥାଏ । ମନ ଯଦି ଏବେ ଏଠି ଥାଏ ଆଉ କିଛି ସମୟ ପାଇଁ ପୁଣି ବୃନ୍ଦାବନ ରେ ଭ୍ରମଣ କରୁଥାଏ । ଆଲୋକର ବେଗ ତ ୧,୮୬,୦୦୦ m/se ସହିତ ତୁଳନା କରାଯାଉଛି କିନ୍ତୁ ମନର ବେଗ ତା' ଠାରୁ ମଧ୍ୟ ଅଧିକ, ସ୍ୱାମୀ ବିବେକାନନ୍ଦ ମନକୁ ଗୋଟିଏ ପାଗଳ ମାଙ୍କଡ଼ ସହ ତୁଳନା କରିଛନ୍ତି ଓ କହିଛନ୍ତି ଯଦି ମନ ସଦୃଶ ଏହି ପାଗଳ ମାଙ୍କଡ଼ଟିକୁ ମଦ ପିଆଇ ଦିଆଯାଏ, ତେବେ ତା'ର ଯେଉଁ ଅବସ୍ଥା ହେବ ମନ ଠିକ୍ ସେହିପରି'' । ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି, ଯଦି ଶରୀରକୁ ଗୋଟିଏ ରଥ ସହିତ ତୁଳନା କରାଯାଏ, ତେବେ ରଥରେ ବସିଥିବା ସାରଥି ହେଉଛି ମନ ଓ ରଥରେ ଲଗାଯାଇଥିବା ୫ଟି ଘୋଡ଼ା ହେଉଛି ୫ଟି ଇନ୍ଦ୍ରିୟ ଓ ରଥରେ ବସିଥିବା ଲୋକଟି ହେଉଛି ଆତ୍ମା । ଏହି ସାରଥି ରୂପକ ମନ ଇନ୍ଦ୍ରିୟ ସଦୃଶ ଘୋଡ଼ାଗୁଡ଼ିକୁ ଯେଉଁ ଆଡ଼େ ନେଇଥାଏ, ଘୋଡ଼ାଗୁଡ଼ିକ ଠିକ୍ ସେହିଆଡ଼କୁ ଯାଇଥାନ୍ତି ଓ ତା ସହିତ ଆତ୍ମା ମଧ୍ୟ ଯାଇଥାଏ । ଭାଇ ଓ ଭଉଣୀମାନେ କେହି କେତେବେଳେ ଶୁଣିଛନ୍ତି କି ? ଆମେ ଯେତେବେଳେ କୌଣସି ଖରାପ କାମ କରିବାକୁ ଯାଉ ଠିକ୍ ସେତିକିବେଳେ ଆମ ଶରୀର ଭିତରେ କେହିଜଣେ କହିଥାଏ ଯେ ଏଇଟା ଖରାପ କାମ ଏ କାମ କରିବାକୁ ଯା' ନାହିଁ । ସିଏ ଯେତେବଡ଼ ଦୁଷ୍ଟ ବ୍ୟକ୍ତି ହେଉ ସେ ଯେତେବେଳେ କୌଣସି ଖରାପ କାମ କରିବାକୁ ଯାଏ, ତା'ର ଶରୀରରୁ ମଧ୍ୟ ଏହି ସ୍ୱରଟିଏ ବାହାରିଥାଏ । ଏହି କଥାଟି ଆତ୍ମା କହିଥାଏ । ଯିଏ କି ସେ ରଥରେ ବସିଥାଏ । ଯଦି ମନ ଆତ୍ମା କଥା ମାନେ ତେବେ ସେ ଖରାପ କାମ କରିବାକୁ ଯାଏ ନାହିଁ । ଯଦି ମାନେ ନାହିଁ ତେବେ ସେ ଖରାପ୍ କାମ କରିବାକୁ ଯାଏ । ମନ ଆତ୍ମା କଥା ସେତିକିବେଳେ ମାନେ, ଯେତେବେଳେ ମନ ଆତ୍ମାର ଦାସ ହୋଇଯାଏ, ଦାସ ଠିକ୍ ସେତିକିବେଳେ ହୁଏ ଯେତେବେଳେ କି ଆତ୍ମା ଭଗବାନଙ୍କର ଦର୍ଶନ ପାଏ । ଅର୍ଥାତ୍ ଭଗବାନଙ୍କର ସାନ୍ନିଧ୍ୟ ଲାଭ କରେ । ଏହା ଯୋଗ ଓ ଧ୍ୟାନ ଦ୍ୱାରା ହିଁ ହୋଇଥାଏ । ଧ୍ୟାନ ଦ୍ୱାରା ମନ ଏକାଗ୍ରତ ହୋଇଥାଏ । କେହି କେତେବେଳେ ଭାବିଛେ କି ଆମେ ବାରମ୍ବାର ଧରିତ୍ରୀ ପୃଷ୍ଠରେ କାହିଁକି ଜନ୍ମ ନେଉଛେ ଓ କାହିଁକି ଦୁଃଖ, କଷ୍ଟ ସହୁଛେ । ଯେ ପର୍ଯ୍ୟନ୍ତ ଆମେ ଭଗବାନଙ୍କୁ ନପାଇଛେ ସେ ପର୍ଯ୍ୟନ୍ତ ଆମେ ଏହି ଧରାପୃଷ୍ଠରେ ଜନ୍ମ ନେବା । ଭଗବାନଙ୍କୁ ପାଇବାକୁ ହେଲେ 'ଗୀତା' ରେ ୨ଟି ମାର୍ଗର ବିବରଣୀ ବର୍ଣ୍ଣନା କରାଯାଇଛି, ପ୍ରଥମଟି ହେଲା ସାଂଖ୍ୟାନିଷ୍ଠ ଓ ଦ୍ୱିତୀୟରେ ଯୋଗନିଷ୍ଠ ଭଗବାନ୍ ସାଂଖ୍ୟନିଷ୍ଠକୁ ସନ୍ୟାସୀ ସହିତ ତୁଳନା କରିଛନ୍ତି । ତେଣୁ ଏହା ସନ୍ୟାସ ଆଶ୍ରମରେ ହିଁ ସମ୍ଭବ । ଗୃହସ୍ଥାଶ୍ରମରେ ଏହା ସମ୍ଭବ ନୁହେଁ ବୋଲି ଭାବିବା ଠିକ୍ ନୁହେଁ । ଏହା ସମ୍ଭବ ଅଟେ ଓ ଦ୍ୱିତୀୟରେ ହେଲା କର୍ମଯୋଗ ଅର୍ଥାତ୍ ସବୁବେଳେ କର୍ମକର ଏବଂ

ଭଗବାନଙ୍କୁ ଡାକ, କେହି କେହି କହନ୍ତି ଭଗବାନ ନାହାନ୍ତି ଯଦି ଅଛନ୍ତି ଭଗବାନ୍ ଆମକୁ ଦେଖା କାହିଁକି ଦେଉ ନାହାନ୍ତି । ଯେପରି ବାୟୁ (ଅମ୍ଳଜାନ ଇତ୍ୟାଦି) ଆମେ ଅଛିବୋଲି ଜାଣୁଛେ ଓ ଏହାକୁ ଆମର ନାକ ବାଟେ ଗ୍ରହଣ କରି ବଞ୍ଚୁଛେ; କିନ୍ତୁ ଦେଖିବାରେ ଅସମର୍ଥ ସେହିପରି ଭଗବାନ୍ ମଧ ଆମ୍ଭମାନଙ୍କର ଚର୍ତୁପାର୍ଶ୍ୱରେ ରହିଛନ୍ତିମାତ୍ର ଦେଖିପାରୁ ନାହୁଁ । ତାଙ୍କୁ ଦେଖିବାକୁ ହେଲେ ରାଗ, ହିଂସା, ଦ୍ୱେଷ, ଅହଂକାର, କାମନା ଓ ମିଥ୍ୟା ଇତ୍ୟାଦିକୁ ଛାଡ଼ିବାକୁ ପଡ଼ିବ ତା'ପରେ ଭଗବାନଙ୍କୁ ଆମେ ଖୋଜିବାକୁ ଯିବାନାହିଁ । ଭଗବାନ୍ ଆମରି ପାଖରେ ହିଁ ଦେଖାଦେବେ । କେବଳ ଥରଟିଏ ହେଲେ ଏହି ଷଟ୍‌କର୍ମ ଗୁଡ଼ିକୁ ପରିତ୍ୟାଗ କରି ଆଖିବୁଜି ହାତଯୋଡ଼ି ଭଗବାନଙ୍କୁ କିଛି କହିଲ ଦେଖି ! ଭଗବାନ୍ ନିଶ୍ଚୟ ତୁମ କଥାଶୁଣିବେ, ଏହି ଷଟ୍‌କର୍ମଗୁଡ଼ିକୁ ଛାଡ଼ିବାକୁ ହେଲେ ଭଗବଦ୍ ଗୀତରେ କୁହାଯାଇଛି ।

''କ୍ରୋଧାନ୍ ଭବତି ସମ୍ମୋହଃ ସମ୍ମୋହାଦ୍ ସ୍ମୃତି ବିଭ୍ରମଃ ସ୍ମୃତି ଭ୍ରଂଶାଦ୍ ବୁଦ୍ଧିନାଶୋ ବୁଦ୍ଧିନାଶାଦ୍ ପ୍ରଣଶ୍ୟତି ।'

The man who ponders over the objects of sence forms an attachment to them from that attachment is produced desire; and from desire anger is produced; from anger results want of discrimination; from want of discrimination, confusion of memory. Form confusion of memory; loss of resion and in consequence of loss of reson he is entirely ruined."



# ସମର୍ଥ ରାଷ୍ଟ୍ରନିର୍ମାଣ କରିବାର ମାର୍ଗ : ବ୍ୟକ୍ତି ନିର୍ମାଣ

ପ୍ରେମାନନ୍ଦ ନାଥ
+୩ ବି.ଏ. ଶେଷ ବର୍ଷ, (ରାଜନୀତି ବିଜ୍ଞାନ ସମ୍ମାନ)

ରାଷ୍ଟ୍ରକୁ ପରମ ବୈଭବଶାଳୀ ଶିଖରରେ ପହଁଚାଇବା ପ୍ରତ୍ୟେକ ଘଟକର ପରମ କର୍ତ୍ତବ୍ୟ । ରାଷ୍ଟ୍ରପାଇଁ ଅର୍ଣ୍ଣାଭିଡ଼ି କିପରି କାର୍ଯ୍ୟ କରାଯିବ ତାହାମଧ ରାଷ୍ଟ୍ରପ୍ରେମୀଙ୍କର ଚିନ୍ତନ ହେବା ଦରକାର । ରାଷ୍ଟ୍ରର ପ୍ରତ୍ୟେକ ନାଗରିକ ଯଦି ଏକଥା ଦିନକୁ ୫ ମିନିଟ୍ ଚିନ୍ତାକରନ୍ତି ତେବେ ଆଜି ଆମ ରାଷ୍ଟ୍ର ଭାରତ ଅଧଃପତନ ଆଡ଼କୁ ଗତି କରନ୍ତା ନାହିଁ । ଆସନ୍ତୁ ଜାପାନ କଥା ଚିନ୍ତା କରିବା । ଜାପାନ୍‌ର ଆୟତନ ଭାରତର ଆଠ ଭାଗରୁ ଭାଗେ । ୧୯୪୫ ଅଗଷ୍ଟ ୬ ଓ ୯ ତାରିଖରେ ତଥା ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଧ୍ୱଂସ ହୋଇଗଲା । କିନ୍ତୁ ଭାରତ ୧୯୪୭ ଅଗଷ୍ଟ ୧୫ରେ ସ୍ୱାଧୀନ ହେଲା, ହେଲେ ଧ୍ୱଂସ ପାଇନି । ଦେଖି ତୁଳନା କଲେ, ଭାରତ ଓ ଜାପାନ । ଜାପାନ ବର୍ତ୍ତମାନ ସ୍ୱାଭିମାନର ସହିତ ମୁଣ୍ଡ ଟେକି ଆମେରିକା ସହିତ ସମକକ୍ଷ । ଅନ୍ୟ ପକ୍ଷରେ ଭାରତ ବିକାଶଶୀଳ ରାଷ୍ଟ୍ର ମଧ୍ୟରେ ଗଣା । ଏହିଭଳି ଅନେକ ରାଷ୍ଟ୍ରର ଉଦାହରଣ ରହିଛି । ଜର୍ମାନ ବିଶ୍ୱଯୁଦ୍ଧ ପରେ ଦୁଇ ଭାଗ ହୋଇଗଲା । ଆଜି ଏକ ହୋଇ ସବଳ ରାଷ୍ଟ୍ରରୂପେ ଛିଡ଼ା ହୋଇଛି । ଭାରତର ଇତିହାସକୁ ସମୀକ୍ଷା କଲେ ଜଣାଯାଏ ଯେ, ଭାରତୀୟ ବୀର ମଧ୍ୟ ସବଳ ହେଲା ସମୟରେ ଦୁର୍ଦ୍ଧର୍ଷ ଶକ, ହୁଣମାନଙ୍କୁ ପରାସ୍ତ କରିଥିଲା ଏବଂ ବୈଭବ ନିର୍ମାଣ କରି ବିଶ୍ୱଗୁରୁର ଆସନରେ ବସିଥିଲା ।

ରାଷ୍ଟ୍ରୀୟ ସମାଜ ଭିତରେ ଯେ ପର୍ଯ୍ୟନ୍ତ ସ୍ୱାଭିମାନ ଭାବ ନ ଆସିଛି ସେ ପର୍ଯ୍ୟନ୍ତ ରାଷ୍ଟ୍ରର ଉନ୍ନତି କଥା ଚିନ୍ତା କରିବା ନିରର୍ଥକ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆମେରିକା ଜାପାନରେ କମଳା ଲେମ୍ବୁ ବିକ୍ରିକରିବାକୁ ଗଲା; କିନ୍ତୁ ସେହି କମଳା ଲେମ୍ବୁକୁ ସେ ପଚାସଢ଼ା କରି ଆଣିଲା କେହି କଣିଲେ ନାହିଁ । ଏହାର କାରଣ ଜାପାନର ଅଧିବାସୀମାନେ ଆମେରିକାକୁ ଘୃଣା କରୁଥିଲେ । ସେହି ଆମେରିକା ଦିନେ ଜାପାନକୁ ଧ୍ୱଂସ କରିଥିଲା । ଦ୍ୱିତୀୟତଃ ଏକ ମହାନ ଲକ୍ଷ ପାଇଁ ସଂକଳ୍ପ ଥିବ । ଥରେ ଜେରୁଜେଲମର ଅଧିବାସୀମାନେ ଆଗାମୀ ବର୍ଷକୁ ନବବର୍ଷ ରୂପେ ପାଳନ ପାଇଁ ସମସ୍ତ ନାଗରିକ ପିଢ଼ୀ ପରେ ପିଢ଼ୀର ସଂକଳ୍ପ ନେଲେ ଏହି ସଂକଳ୍ପକୁ ଆଖି ଆଗରେ ରଖି ସର୍ବଦା ପ୍ରଚେଷ୍ଟା କରୁଥିବା ଦରକାର । ତୃତୀୟତଃ ନିଜର ପରମ୍ପରା, ଆଦର୍ଶ ସଂସ୍କୃତି ଉପରେ ଗର୍ବର ଭାବନା ଥିବ । ତଥାପି ତାକୁ ପ୍ରସାର କରିବା ପାଇଁ ନିଜ ଭିତରେ ମହତ ଆକାଂକ୍ଷା ଥିବ । ଯେପରି ବ୍ରିଟେନ୍ ନିଜର ଇଂରେଜ ସଂସ୍କୃତିକୁ ପୃଥିବୀରେ ପ୍ରସାର କରିବା ପାଇଁ ଚେଷ୍ଟା କରିଥିଲା । ଚତୁର୍ଥତଃ ପାଦରେ ଯେପରି କଣ୍ଟେଟିଏ ଲାଗିଲେ ସାରା ଶରୀରକୁ କଷ୍ଟ ହୁଏ; ସେହିପରି ସବଳ ରାଷ୍ଟ୍ରରେ କୌଣସି ଅଂଶକୁ ଆକ୍ରମଣ ହେଲେ ସାରା ରାଷ୍ଟ୍ରକୁ ଆକ୍ରମଣ ହେଲାପରି ଅନୁଭବ ଥିବ । ୧୯୯୯ ମସିହାରେ ଭାରତର କାର୍‌ଗିଲ୍ ଆକ୍ରମଣ ସାରା ଭାରତ ଉପରେ ଆକ୍ରମଣ । ଅର୍ଥାତ୍ ସବଳ ସମାଜ ଭିତରେ ସୁଖ ଦୁଃଖର ସମାନ ଅନୁଭବ ଥିବ । ପଞ୍ଚମତଃ ସେହି ସମାଜ ଭିତରେ ସଂଗଠନର ଅଭାବ ନଥିବ । କଥାରେ ଅଛି, ''ସଂଗଠନ ମେ ଶକ୍ତି ହେ'' ସଂଗଠନ ନଥିଲେ ସମାଜ ବିପକ୍ଷ ଶତ୍ରୁ ସାଥିରେ ଲଢ଼ିପାରିବା ସମ୍ଭବ ନୁହେଁ ।

ସବଳ ରାଷ୍ଟ୍ରର ସର୍ବଦା ଆବଶ୍ୟକତା ଅଛି । ଯଦି ରାଷ୍ଟ୍ରକୁ ସବଳ କରାନଯାଏ ତେବେ ସେ ଦେଶର ଜ୍ଞାନୀ, ଗୁଣୀମାନଙ୍କୁ ବିଶ୍ୱରେ ସ୍ଥାନ ଦିଆଯାଏ ନାହିଁ ।

ଭାରତର ମହାନ ବୈଜ୍ଞାନିକ ଜଗଦୀଶ ଚନ୍ଦ୍ର ବସୁ ଯେକି ବିଶ୍ୱରେ ମାନ୍ୟତା ପାଇ ନାହାନ୍ତି । ସବଳ ରାଷ୍ଟ୍ର ବ୍ୟକ୍ତିକୁ ସୁରକ୍ଷା ଦିଏ ଏବଂ ତା'ର ମାନ ସମ୍ମାନ ରକ୍ଷା କରେ ଓ ବିକାଶ କରେ । ୨୦୦୧ ଡିସେମ୍ବର ୧୩ରେ ଭାରତ ପାର୍ଲାମେଣ୍ଟ ଉପରେ ହୋଇଥିବା ଆକ୍ରମଣ ପରେ ଭାରତ ପାକିସ୍ଥାନକୁ ଉଚିତ୍ ଜବାବ ଦେଇ ପାରିଲା ନାହିଁ; କିନ୍ତୁ ଆମେରିକା ଉପରେ ହୋଇଥିବା ଆକ୍ରମଣ ଆମେରିକା ତା'ର ଉଚିତ୍ ଜବାବ ତାଲିବାନକୁ ଦେଲା ।

ସବଳ ରାଷ୍ଟ୍ର କେବଳ ବ୍ୟକ୍ତି ନିର୍ମାଣ ଦ୍ୱାରା ସମ୍ଭବ । କାରଣ ଆମ ଦେଶର ସବୁ ସମସ୍ୟା ତଥା ଆତଙ୍କବାଦ, ଭ୍ରଷ୍ଟାଚାର, ଅସ୍ପୃଶ୍ୟତା, ବେକାରୀ, ଯୌତୁକ, ଅନୈତିକତା, ଆର୍ଥିକ ବିଷମତା । ଆଜି ଯେତେ ସମସ୍ୟା ସବୁ ପଛରେ ବ୍ୟକ୍ତି ହିଁ ନିହିତ । ବ୍ୟକ୍ତିକୁ ଠିକ୍ କଲେ ଯାଇ ଏ ସବୁ ଦୂର ହେବ । ତେଣୁ ବ୍ୟକ୍ତିକୁ ନେଇ ସମାଜ ଓ ରାଷ୍ଟ୍ର ତିଆରି ହୁଏ । ବ୍ୟକ୍ତି ଓ ସମାଜ ପରସ୍ପର ପରିପୂରକ । ଏଠାରେ ଏକ ଉଦାହରଣ ନିଆଯାଇ ପାରେ ଯେ ଜଙ୍ଗଲ ମଧ୍ୟରେ ଏକ ଦୋକାନ ଦେଲେ ସେଠାରେ କାରବାର ହୁଏ ନାହିଁ କାରଣ ବ୍ୟକ୍ତି ଯେଉଁଠାରେ ବସବାସ କରିଥାଏ ସେଠାରେ ଦୋକାନର ଆବଶ୍ୟକତା । ତେଣୁ ସମାଜ ମଧ୍ୟରେ ଏସବୁର ଆବଶ୍ୟକତା ଅଛି । ଏଥିରୁ ସ୍ପଷ୍ଟ ଅନୁମେୟ ବ୍ୟକ୍ତିକୁ ନେଇ ସମାଜ ଗଠିତ । ଅନ୍ଧାର ରାତିରେ ସ୍ତ୍ରୀ ଲୋକଟି ରାସ୍ତାରେ ଯିବାକୁ ଭୟ କରେ; କିନ୍ତୁ ପୁରୁଷ ଲୋକ ଭୟକରେ ନାହିଁ । ଏହାର କାରଣ ପଛରେ ବ୍ୟକ୍ତି ନିହିତ । କାରଣ ସ୍ତ୍ରୀ ଲୋକଟି ବାଘ ଭାଲୁକୁ ଭୟ କରେ ନାହିଁ ଭୟ କରେ ବ୍ୟକ୍ତିକୁ । ତେଣୁ ଏଥିରୁ ଭାବିବାକୁହେବ ଯେ ବ୍ୟକ୍ତିର ସାମାଜିକ ଦାୟିତ୍ୱବୋଧ କମିଯାଇଛି । ଏହି ସାମାଜିକ ଦାୟିତ୍ୱବୋଧ ନିର୍ମାଣ ପୂର୍ବକାଳରେ ପରିବାର ଓ ଗୁରୁକୁଳ ମାଧ୍ୟମରେ ହେଉଥିଲା । କିନ୍ତୁ ବର୍ତ୍ତମାନ ଏହାର ଅଭାବ ଅଛି । ସେତେବେଳର ଚରିତ୍ରବାନ ବ୍ୟକ୍ତିର ନିର୍ମାଣ ଆଜି କିପରି ଅଛି ତାହା କିଛି ଉଦାହରଣ ମାଧ୍ୟମରେ ନିଆଯାଇପାରେ । ଛାତ୍ରମାନେ କପି କରି ପାଶ୍ କରିବା । ଏହାଦ୍ୱାରା ସେମାନଙ୍କ ଫଳାଫଳ ଭଲ ହେଉଛି; କିନ୍ତୁ ସେମାନେ ଅନୈତିକ ଉପାୟରେ ନିଜର ଚରିତ୍ରକୁ ଗଠନ କରୁଛନ୍ତି । ଆଉ ଏକ ଉଦାହରଣ ହେଲା ଦୁଇଟି ବନ୍ଧୁ ଥରେ ବସ୍‌ରେ ଭେଟ ହେଲେ । ପ୍ରଥମ ବନ୍ଧୁଟି ଦ୍ୱିତୀୟ ବନ୍ଧୁକୁ ପଚାରିଲା କିରେ କୁଆଡ଼େ ଯାଇଥିଲୁ ? ଦ୍ୱିତୀୟ ବନ୍ଧୁଟି ଉତ୍ତର ଦେଲା ଝିଅ ପାଇଁ ବର ଖୋଜିବାକୁ ଯାଇଥିଲି । ପ୍ରଥମ ବନ୍ଧୁଟି ପୁଣି ପଚାରିଲା, କିରେ ବର କ'ଣ କରୁଛି ? ଆର ଜଣକ ଉତ୍ତର ଦେଲା, କ'ଣ କରିବ । ଗୋଟିଏ ଭଲ ଚାକିରିଟିଏ କରିଛି. । ଦରମା ତିନିହଜାର କିନ୍ତୁ ଉପୁରି ମିଶି ପାଞ୍ଚହଜାର । ଏକଥା ସେ ଗର୍ବର ସହିତ କହିଲା । ଦେଖନ୍ତୁତ ! ଏଠାରେ ସତେ ଯେପରି ବରଟି ପୂରା ଯୋଗ୍ୟର ! ଦୁର୍ନୀତିରେ ଲିପ୍ତଥିବା ଲୋକଟି ଯୋଗ୍ୟବର ହୋଇଛି । ସମସ୍ତ ବ୍ୟକ୍ତିଙ୍କ ମନରେ ଏ ପ୍ରକାର ଚିନ୍ତାଧାରା ଭରପୂର ଅଛି । ଯେଉଁଦିନ ଏପ୍ରକାର ଚିନ୍ତାଧାରା ଦୂର ହେବ ସେଦିନ ଏ ରାଷ୍ଟ୍ର ସମର୍ଥ ହେବାର ସହାୟକ ହେବ ।

ସେଥିପାଇଁ ରାଷ୍ଟ୍ରଭକ୍ତବ୍ୟକ୍ତି ନିର୍ମାଣ କରିବାକୁ ପଡ଼ିବ । ଇତିହାସ କୁ ପର୍ଯ୍ୟାଲୋଚନା କଲେ ଜାଣାଯାଏ ଛତ୍ରପତି ଶିବାଜୀ, ମହାମେଘ ବାହାନ ଐର ଖାରବେଳ ଯେପରି ରାଷ୍ଟ୍ରକୁ ସଶକ୍ତି କରିବା ପାଇଁ ସତତ ସଂଗ୍ରାମ କରିଥିଲେ । ଏଭଳି ସମାଜିକ ଦାୟିତ୍ୱବୋଧଯୁକ୍ତ, ଚରିତ୍ରବାନ୍, ପରିଶ୍ରମୀ ରାଷ୍ଟ୍ରନିଷ୍ଠ ବ୍ୟକ୍ତିମାନଙ୍କ ସଂଗଠନ ମାଧ୍ୟମରେ ସବଳ ସଶକ୍ତି ଓ ସମର୍ଥ ରାଷ୍ଟ୍ର ନିର୍ମାଣ ହୋଇପାରିବ । ତ୍ରେତୟା ଯୁଗର ରାମରାଜ୍ୟ ଭଳି ଏ ରାଷ୍ଟ୍ର ନିଶ୍ଚିତ ନିର୍ମାଣ ହୋଇପାରିବ ।



# ନାରୀ ପ୍ରଗତି

*ସୁଚୀସ୍ମିତା ପଣ୍ଡା*
+୩ ଦ୍ୱିତୀୟ ବର୍ଷ (ଶିକ୍ଷା ସମ୍ମାନ)

ବର୍ତ୍ତମାନର ଯୁଗକୁ କୁହାଯାଏ ନାରୀ ପ୍ରଗତିର ଯୁଗ । ନାରୀ ସୁଲଭ ବୈଶିଷ୍ଟ୍ୟକୁ ଅବକ୍ଷୟ କରି ନାରୀର ପୁରୁଷ ହୋଇଉଠିବାଟା ହିଁ ଏ ଯୁଗର ବିଶେଷତ୍ୱ । ପାଶ୍ଚାତ୍ୟ ସଭ୍ୟତାକୁ ଅନ୍ଧଭାବେ ଅନୁକରଣ କରି ତା'ର ପଦାଙ୍କକୁ ଅନୁସରଣ କରିବା ହିଁ ଅତ୍ୟାଧୁନିକତାର ମାପକାଠି । ଏକଥାରେ ଆପଣମାନେ ନିଶ୍ଚୟ ଏକମତ ହେବେଯେ ଆଜି ଯଦି ନାରୀଟି ବିଭିନ୍ନ ସମସ୍ୟାର ସମ୍ମୁଖୀନ ହେଉଥାଏ ତେବେ ତା'ର ସ୍ୱେଚ୍ଛାଚାରିତା ହିଁ ଏଥିନିମନ୍ତେ ସଂମ୍ପୂର୍ଣ୍ଣ ରୂପେ ଦାୟୀ । ଅତ୍ୟାଧୁନିକତାର ଦ୍ୱାହିଦେଇ ଉଗ୍ର ଆଧୁନିକ ହେବାର ମିଥ୍ୟା ଆସ୍ଫାଳନରେ ସିନେମାଶୈଳୀରେ ନିଜକୁ ବିଜ୍ଞାପିତ କରିବା ସମୟରେ ତିଳେ ମଧ ଦ୍ୱିଧା ପ୍ରକାଶ କରୁନାହିଁ । ସଂସାରରେ ତଥା ବୈବାହିକ ଜୀବନକୁ ବିଶୃଙ୍ଖଳିତ କରି ନାରୀହୃଦୟରୁ ପ୍ରେମ, ପ୍ରୀତି, ମମତା ଦୂରକରି ସେମାନଙ୍କୁ ଘରୁ ଟାଣି ବାହାରକୁ ଆଣିବା ପାଇଁ ଚାକିରୀ ସଂରକ୍ଷଣ, ଏକ ତୃତୀୟାଂଶ ଅଗ୍ରାଧିକାର ଭଳି ଯୋଜନା ମଧ ସୁପରିକଳ୍ପିତ । ଏସବୁ କ୍ଷେତ୍ରରେ ନାରୀର ପୁରୁଷ ହୋଇଉଠିବାର ଅପଚେଷ୍ଟା ହେତୁ ବୈବାହିକ ଜୀବନରେ ଅଶାନ୍ତଝଡ଼ର ମୃଦୁଗୁଞ୍ଜରଣ ଶୁଣାଯାଏ ।

ସମସ୍ତେ ସମାନ କଥାଟା ଯେମିତି ଅବୈଜ୍ଞାନିକ ନାରୀଟି । ପୁରୁଷଠାରୁ କୌଣସି ମାତ୍ରାରେ ଯେ କମ୍ ନୁହେଁ କଥାଟି ମଧ ଅଯୌକ୍ତିକ । 'ପୁରୁଷ, ନାରୀ' ସେମାନଙ୍କର ବୈଶିଷ୍ଟ୍ୟଭିନ୍ନ । 'ପୁରୁଷ' ଆସିଛି 'ପୁର୍' ଧାତୁରୁ ମାନେ ପରିପୂରଣ କରେ ଆଉ ନାରୀ ଶବ୍ଦଟି ଆସିଛି 'ନାର୍' ଧାତୁରୁ ଅର୍ଥାତ୍ ବୃଦ୍ଧିକରାଏ । ଜଣେ ବୃଦ୍ଧିକରାଏ ଆଉ ଜଣେ ବୃଦ୍ଧିପାଏ ଫଳତଃ ସୃଷ୍ଟିର ରକ୍ଷା ଚଳିଆସୁଛି ଅବିଶ୍ରାନ୍ତଭାବରେ । ଗୋଟିଏ ମାଟି ଅନ୍ୟଟି ବୀଜ ଫଳତଃ ଆଉ ଗୋଟେ ଜୀବନର ସୃଷ୍ଟି । ନାରୀ ସ୍ୱାଧୀନତା, ନାରୀଜାଗରଣ, ମାତୃଶକ୍ତିର ନବଜାଗରଣ ଆଳରେ ନାରୀକୁ ପୁରୁଷ ପରି ଗଢ଼ି ତୋଳିବାର ଅପ୍ରୟାସ ବୃଥା ଯେପରି ନିରର୍ଥକ ସେପରି । ନାରୀ ଆଉ ପୁରୁଷର ଅଧିକାର ସେମାନଙ୍କ ସ୍ୱଭାବନୁଯାୟୀ ସ୍ଥିରିକୃତ । ନିଜର ବୈଶିଷ୍ଟ୍ୟ, ଅସ୍ତିତ୍ୱକୁ ହରାଇ ପୁରୁଷ ହୋଇଉଠିବାରେ ଅଥବା ପୁରୁଷୋଚିତ ସୁଲଭଗୁଣରେ ନିଜକୁ ଅଧିକାରୀ କରାଇବାରେ ତା'ର ସ୍ୱାଧୀନତା ନାହିଁକି ମୁକ୍ତି ନାହିଁ ।

ପ୍ରକୃତି ଯେପରି ଶୂନ୍ୟତା ଚାହେଁନା ଆଧିକ୍ୟକୁ ମଧ ପସନ୍ଦକରେ ନା । ସମଗ୍ର ବିଶ୍ୱ ଯେତେବେଳେ ଅବାଧ, ଅସଙ୍ଗ, ଅବୈଧାନିକ, ସ୍ୱେଚ୍ଛାଚାର ସ୍ତରରେ ବିବାହକୁ ବରଣ କଲା ସେତେବେଳେ ହିଁ ଏଡ଼ସ୍ ରୋଗର ବୀଜବପନ ହେଲା । ଆଜି ଝିଅମାନେ ସ୍ୱାଧୀନତା, ସ୍ୱେଚ୍ଛାଚାରିତାର ଅନ୍ତରାଳରେ ବିଶୃଙ୍ଖଳାର ଡେଣାପିଟି ନାରୀ ପ୍ରଗତିକୁ ଆହ୍ୱାନ କରୁଛନ୍ତି । ବିବାହ ତଥା ସାଂସାରିକ ବନ୍ଧନ ଏବେ ନାରୀ ଜୀବନରେ ବନ୍ଧନବୋଲି ଗ୍ରହଣ କରାଯାଉଛି । ନାରୀର ପୁରୁଷ ପ୍ରତି ଆକର୍ଷଣ ହେଉଛି ପ୍ରକୃତିଗତ ଝୁଙ୍କ ଯେପରି ପୁରୁଷଟି ନାରୀପ୍ରତି ଟାଣି ହୋଇ ଆସିବାଟା ସ୍ୱାଭାବିକ ସେପରି । ଆଜିକାଲି ସ୍ତ୍ରୀଶିକ୍ଷା ନାମରେ ଚାଲିଛି ରୀତିମତ ନାରୀଟିର ବୈଶିଷ୍ଟହୀନଶିକ୍ଷା ବ୍ୟବସ୍ଥା, ନାରୀଟି ଶିକ୍ଷିତା ହେବା ଆବଶ୍ୟକ; କିନ୍ତୁ ଶିକ୍ଷାର ଅପବ୍ୟବହାର କରିବା ଦ୍ୱାରା ନୁହେଁ । ଆଜି ଆଧୁନିକା ନାରୀମାନେ ଛୋଟ ଡ୍ରେସ୍,



ଅନ୍ତରୁଚି, ଉଚ୍ଚାଭିଳାଷୀ ହେବାରେ ବିଶ୍ୱାସ ରଖନ୍ତି ଯେଉଁଠି (ପର୍ଦ୍ଦାପ୍ରଥାର) ସହନଶୀଳତା, ଭଲପାଇବା, ସୁପ୍ରଜନନ, ପ୍ରେମ, ଭକ୍ତି ହେଉଛି ମାଇଲ ଖୁଣ୍ଟସଦୃଶ । ସମଗ୍ର ବିଶ୍ୱ ଆଜି ବିଶୃଙ୍ଖଳାର ଅଶାନ୍ତ ଦାବାଗ୍ନିରେ ଦଗ୍ଧୀଭୂତ ଏକମାତ୍ର କାରଣ ଅସଙ୍ଗତ ବିବାହ, ଅବୈଧାନିକ ସମ୍ବନ୍ଧ, ନାରୀଚରିତ୍ରର ଅପବିତ୍ରତା । ଆଜି ନାରୀ ପୁରୁଷର ସମାନାଧିକାରର ଯୁକ୍ତି ଦେଖାଇ ନାରୀମାନଙ୍କ ମଧ୍ୟରେ ଯେଉଁ ଉଚ୍ଛୃଙ୍ଖଳତା ଦେଖାଦେଇଚି ତା'ର ଉଦାହରେ ରହିଯାଉଛି ପୋଷାକ ପରିଚ୍ଛଦରେ ବିଦେଶୀ ଗନ୍ଧ, ପୁରୁଷକୁ ଜୟ କରିବାର ଅବଦମିତ ଉତ୍ସାହ ତଥା, ପୁରୁଷପ୍ରଧାନ ସମାଜକୁ ଅଙ୍ଗୁଳିନିର୍ଦ୍ଦେଶ କରିବା; କିନ୍ତୁ ସେ ଭୁଲି ଯାଉଛି ଯେ ଅଶାଳୀନ, କାମନା, କୈନ୍ଦ୍ରୀକ ନାରୀର ସନ୍ଦର୍ଶନରେ ସଦମ୍ଭ ପୁରୁଷ ସମାଜ ତାକୁ ପୁନର୍ବାର ପବିତ୍ର ଦୃଷ୍ଟିନେଇ ଦେଖି



ପାରିବ ନାହିଁ ବରଂ ସେହି ଦେହ ଦର୍ଶନରେ ସେ କାମନାର ବାସନାର ଲେଲିହାନ୍‌ରେ ଛାଟିପିଟି ହୋଇ, ଅସାମାଜିକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବ । ଆକର୍ଷଣ ଯେତେବେଳେ ଲାଳସା ହୋଇଯାଏ ସେତେବେଳେ ହିଁ ବିପର୍ଯ୍ୟୟ ଦେଖାଯାଏ । ଆଉ ସର୍ବନାଶ ଦ୍ୱାର ଉନ୍ମୁକ୍ତ ହୁଏ । ନାରୀର ମର୍ଯ୍ୟାଦା, ନାରୀର ପବିତ୍ରତା, ନାରୀର ବୈଶିଷ୍ଟ୍ୟ ହିଁ ଆଜିର ଏ ବିପର୍ଯ୍ୟସ୍ତ ପରିସ୍ଥିତିରେ ସର୍ବୋତଭାବେ କାମ୍ୟ । କିନ୍ତୁ ସେବା, ଶୁଶ୍ରୂଷା, ଆଦର, ପ୍ରେମ, ସଂରକ୍ଷଣ, ସୁପ୍ରଜନନ, ଶ୍ରଦ୍ଧା, ସହାନୁଭୂତିକୁ ବାଦଦେଲେ ନାରୀଟିଏ କେବେବି ନାରୀ ନୁହେଁ । ଆଜିର ଏ ସର୍ବନାଶର ଦ୍ୱାରଦେଶରେ; ଯଦି ଦଣ୍ଡାୟମାନ ହୋଇଥିବା ନାରୀ ସମାଜ ସେମାନଙ୍କ କର୍ତ୍ତବ୍ୟ ପ୍ରତି ସଚେତନ ହୁଅନ୍ତେ ତେବେ ସୃଷ୍ଟିର ବିକାଶ ଅବଶ୍ୟମ୍ଭାବୀ ।



# ଉଗ୍ର ଆଧୁନିକତା ଓ ଆଦିମତା

*ଶିରୀଷ ଚନ୍ଦ୍ର ନାୟକ*
+୩ ପ୍ରଥମ ବର୍ଷ ବିଜ୍ଞାନ (ଗଣିତ ସମ୍ମାନ)

ପୃଥିବୀରେ ''ଆକର୍ଷଣ'' ଶବ୍ଦର ଅର୍ଥ ନିଶ୍ଚିତ ଭାବରେ ଅଧିକ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ହେଉକି ନାରୀ ପୁରୁଷର ଆକର୍ଷଣ ହେଉ, ଏହା ସୃଷ୍ଟିକୁ ବଜାୟ ରଖିଛି । ପ୍ରଥମ ପୁରୁଷ ଆଦାମ୍ ଓ ପ୍ରଥମ ନାରୀ ଇଭ୍ ନିଷିଦ୍ଧ ଫଳ ଖାଇବା ପୂର୍ବରୁ ପୃଥିବୀରେ ଆକର୍ଷଣ ଶବ୍ଦ ହିଁ ନଥିଲା । ଏହି ଆକର୍ଷଣ ପରବର୍ତ୍ତୀ ସମୟରେ ଲଜ୍ଜା ଓ ପାପକୁ ଜନ୍ମଦେଲା । ମାତ୍ର ମଣିଷର ନଗ୍ନତା ଯେ ଆଦିମ ସମୟରୁ ଚଳିଆସୁଛି ଏହା ସମସ୍ତେ ବିଶ୍ୱାସ କରିବେ । ବଣଜଙ୍ଗଲରେ ଲଙ୍ଗଳା ହୋଇ କଞ୍ଚାମାଂସ ଖାଉଥିବା ମଣିଷ ଏବେ ଆଧୁନିକତାର ଚରମ ପାହାଚରେ ଅବତୀର୍ଣ୍ଣ । ତଥାପି ମଣିଷ ଆଦରି ନେଉଛି ସେହି ଆଦିମତାକୁ । ମାତ୍ର ଏପରି ଏକ ଆଧୁନିକ ଯୁଗରେ ଆଧୁନିକତାଠାରୁ ବହୁତ ଦୂରରେ ମଣିଷ ବଣଜଙ୍ଗଲରେ ଉଲଗ୍ନ ହୋଇ ବାସ କରୁଛି । ଏଠାରେ ଆକର୍ଷଣ ନାହିଁ ପାପ ନାହିଁ, ଲଜ୍ଜା ନାହିଁ କିମ୍ବା ଆଧୁନିକତା ନାଁରେ ନଗ୍ନତା ପ୍ରଦର୍ଶନ କରି ବ୍ୟବସାୟ କରିବାର ପ୍ରବୃତ୍ତି ନାହିଁ ।

ନଗ୍ନତା ହେଉଛି ସୃଷ୍ଟିର ପ୍ରତ୍ୟେକ ଜୀବଙ୍କ ଠାରେ ଚିରନ୍ତନ ଓ ବାସ୍ତବ । ଯେଉଁଠି ନଗ୍ନତା ବାସ୍ତବିକତାର ରୂପନିଏ ସେଠାରେ ସ୍ୱାୟବିକ ଉତ୍ତେଜନା ନଥାଏ । କେତେକ ବିଶ୍ୱପ୍ରସିଦ୍ଧ ବିଦେଶୀ ଚଳଚ୍ଚିତ୍ରରେ ନାୟକ ଓ ନାୟିକାଙ୍କର ଅନ୍ତରଙ୍ଗ ଦୃଶ୍ୟରେ ଯଦିଓ ସଂପୂର୍ଣ୍ଣ ନଗ୍ନତା ରହିଛି, ତେବେ ସେଥିପ୍ରତି ଦର୍ଶକମାନଙ୍କ ମନରେ କୌଣସି ବିକାର ଆସେ ନାହିଁ । କୌଣସି ରଙ୍ଗବେରଙ୍ଗ ପୋଷାକ ପରିହିତ ମୂର୍ତ୍ତିର ସ୍କେଚ୍ ଶିଳ୍ପୀ ପ୍ରଥମେ ନଗ୍ନ ଭାବରେ ଆଙ୍କିଥାଏ ।

ଭାରତ ବର୍ଷର ଧର୍ମଦର୍ଶନ ଦୃଷ୍ଟିରୁ ନାରୀ ହେଉଛି ଜନନୀ ଯାହାର ବକ୍ଷରେ କୋଟିକୋଟି ସନ୍ତାନଙ୍କ ପାଇଁ ଅମୃତଧାରା ପ୍ରବାହିତ ହୋଇଥାଏ । ଯାହାର କୋଳରେ ବ୍ୟାସ, ଭୃଗୁ , ବଶିଷ୍ଠଙ୍କଠାରୁ ଗାନ୍ଧୀ, ଗୋପବନ୍ଧୁ, ସୁବାଷ ଓ ମଧୁବାବୁ ଜନ୍ମ ନିଅନ୍ତି । ସେହି ସକଳ ଶକ୍ତିର ଅଧିକାରିଣୀ ନାରୀ ପ୍ରତି ଲୋଲୁପ ଦୃଷ୍ଟି ପକାଇବା ଗର୍ହିତ ପାପ । ଏହି ପାପ ପୁରୁଷହିଁ କରିଥାଏ । ବିଜ୍ଞାପନରେ ମାତୃଜାତିର ଅର୍ଦ୍ଧଉନ୍ମୁକ୍ତ ଅଙ୍ଗକୁ ସାମୂହିକ ଭାବରେ ଲୋଲୁପ ଦୃଷ୍ଟିରେ ଚାହିଁବା, ମନୋରଂଜନ ମାଧ୍ୟମରେ ଏହା ଦେଖିବାକୁ ବାଧ୍ୟ କରାଇବା । ଆମ ସମାଜରେ ଏକ କୁତ୍ସିତ ଆଚରଣ ।

ପ୍ରତ୍ୟେକ ଉତ୍ପାଦିତ ବସ୍ତୁ ତା'ର ବ୍ୟାବସାୟିକ ତତ୍ପରତା ପାଇଁ ଆବଶ୍ୟକ କରୁଛି ଅର୍ଦ୍ଧନଗ୍ନ ନାରୀର ବିଭିନ୍ନ ଭଙ୍ଗୀର ଫଟୋ ବିଜ୍ଞାପନ । ଏହି ଅଶ୍ଳୀଳତା ସମାଜର ସବୁସ୍ତରକୁ ବ୍ୟାପିବାରେ ଲାଗିଛି । ପତଙ୍ଗ ନିଆଁ ପ୍ରତି ଆକର୍ଷିତ ହୋଇ ମରିବା ପରି ଆମର ତଥାକଥିତ ଶିକ୍ଷିତା ଝିଅମାନେ ନିଜକୁ ନଗ୍ନତାର ଅଗ୍ନିକୁଣ୍ଡରେ ଅର୍ଥ ପ୍ରଲୋଭନରେ ଝାସ ଦେଉଛନ୍ତି । ଏବେ ତ ଚଳଚ୍ଚିତ୍ରରେ ଚୁମ୍ବନ, ନଗ୍ନ ଅଭିମାର, ଦୈହିକ ସମ୍ବନ୍ଧର ଭାବାବେଗ ଖୋଲାଖୋଲି ପ୍ରଦର୍ଶିତ ହେଉଛି । ଯେତେବେଳେ କୌଣସି ପୁରୁଷ ଜଣେ ନାରୀର ନଗ୍ନ ଦେହ ଦେଖେ ସେତେବେଳେ ତା'ଠାରେ କାମୋତ୍ତେଜନା ସୃଷ୍ଟି ହୁଏ । ସେହପରି ଜଣେ ଭାଇ ଆଗରେ ଭଉଣୀ ବିଷୟରେ ଅଶ୍ଳୀଳ କଥା ହେଲେ ପରସ୍ପରକୁ ଖରାପ ଲାଗିଥାଏ । ଏହାର କାରଣ ହେଉଛି ଆମର ସାଂସ୍କୃତିକ ପରିବେଶ ।

ବିଶ୍ୱର କେତେକ ସ୍ଥାନରେ ନଗ୍ନତା ହେଉଛି ପ୍ରକୃତି । ନଗ୍ନତା ଓ ପ୍ରକୃତି ସର୍ବଦା ସତ୍ୟ, ପ୍ରକୃତିକୁ କୃତ୍ରିମ କରିଦେଲେ ଏବଂ ନଗ୍ନତାକୁ ଲୁଚାଇବାକୁ ଯାଇ ପୋଷାକ ପରିଧାନ ପରେ ବଦଳିଯାଏ ତା'ର ସଂଜ୍ଞା ।

ପ୍ରକୃତିକୁ ନେଇ ମଣିଷ ମନରେ କେବେବି ସଂକୋଚ ଭାଗ ଆସିନଥାଏ । ଠିକ୍ ସେହିପରି ପ୍ରାକୃତିକ ପରିବେଶ ମଧ୍ୟରେ ବଢ଼ିଥିବା ଆଦିବାସୀଙ୍କ ଭିତରେ ନଗ୍ନତା ନେଇ କୌଣସି ସଂକୋଚ ଭାବ ନଥାଏ । ଆଣ୍ଡାମାନ ନିକୋବର, ସାଇବେରିଆ, କେନ୍ଦ୍ରୀୟ ଅଷ୍ଟ୍ରେଲିଆ, ଆମାଜାନ୍, ନ୍ୟୁଗୁଇନା ଆଦି ଅଞ୍ଚଳର ଆଦିବାସୀମାନଙ୍କର ନଗ୍ନତା ହେଉଛି ଆଦିମତା; କିନ୍ତୁ ଏମାନଙ୍କୁ ଟକ୍କର ଦେବାକୁଯାଇ ଡେନ୍‌ମାର୍କ, ଆର୍ୟାଲାଣ୍ଡ ଆଦି ଅଞ୍ଚଳରେ ଆଧୁନିକତା କ୍ରମଶଃ ସେହି ଆଦିମତା ଆଡ଼କୁ ଗତିକରୁଛି ।

ଅନ୍ୟସବୁ ଅଞ୍ଚଳରେ ଆଦିବାସୀମାନେ ଲଜ୍ଜା ନିବାରଣ ପାଇଁ ପତ୍ର ବଳ୍କଳ ବ୍ୟବହାର କରୁଥିବା ବେଳେ ଆଫ୍ରିକାର ଆଦିବାସୀମାନେ ସଂପୂର୍ଣ୍ଣ ଉଲଗ୍ନ । ଆମାଜାନର ପୁରୁଷମାନେ ଉଲଗ୍ନ ବେଳେ ସ୍ତ୍ରୀମାନେ ସାମାନ୍ୟ ବସ୍ତ୍ର ପିନ୍ଧିଥାନ୍ତି । ଉଆଉସ୍‌ରେ କିନ୍ତୁ ନାରୀମାନେ ଉଲଗ୍ନ ରହିବା ବେଳେ ପୁରୁଷମାନେ ସାମାନ୍ୟବସ୍ତ୍ର ପିନ୍ଧିଥାନ୍ତି । ସେହିପରି କେନ୍ଦ୍ରୀୟ ଅଷ୍ଟ୍ରେଲିଆର ଅଧିବାସୀମାନେ ଶିକ୍ଷିତ ହେବପରେ ମଧ୍ୟ ଆଦିମତାକୁ ଗ୍ରହଣ କରିବାରେ ସଂକୋଚ ମନେ କରନ୍ତି ନାହିଁ । ଡେନମାର୍କର ତରୁଣୀ ମାନେ ଶୋଇବା ସମୟରେ ସଂପୂର୍ଣ୍ଣ ଉଲଗ୍ନ ରହନ୍ତି । ଏହି ସମୟରେ ଅନ୍ୟମାନଙ୍କ ଉପସ୍ଥିତି କିମ୍ବା ଆଲୋକ ସେମାନଙ୍କ ମନରେ ଦ୍ୱିଧା ସୃଷ୍ଟି କରିନଥାଏ । ଆର୍ୟାଲାଣ୍ଡର ଅଧିବାସୀ ଅଧିକ ବସ୍ତ୍ର ବ୍ୟବହାର କରନ୍ତି ନାହିଁ । ଏମାନଙ୍କର ଏପରି ନଗ୍ନତାକୁ ଆଦିମତା କୁହାଯାଇ ନପାରେ ବରଂ ଏମାନେ ଆଦିମତାରୁ ଆଧୁନିକ ହୋଇ



ଉଗ୍ର ଆଧୁନିକ ହୋଇ ପୁନଶ୍ଚ ଆଦିମତା ଆଡ଼କୁ ମୁହାଁଇଲେଣି । ସଂସ୍କାର, ପରମ୍ପରା, ପରି ଦେଶର ମହୀୟାନ୍ ଗୁଣକୁ ଜଳାଞ୍ଜଳିଦେଇ ଏମାନେ ଜୀବନକୁ ଉନ୍ମୁକ୍ତ, ସ୍ୱାଧୀନ, ନିଷ୍କପଟ କରିବା ନାଁରେ ଉଗ୍ର ଆଧୁନିକତାକୁ ଆପଣାର କରିବା ଦେଶ ପାଇଁ ଆଦୌ ଶୁଭଙ୍କର ନୁହେଁ । ଏମାନେ ଏପରି ଜୀବନ ନିର୍ବାହ କରନ୍ତି ଯେପରି ନଗ୍ନତା ଏମାନଙ୍କ ଶବ୍ଦ କୋଷରେ ନାହିଁ ।



ଆଧୁନିକତା ନାଁରେ ଆମେ ସଭ୍ୟ ହୋଇଯାଇଛୁ ତାହା କହିବା ନିରର୍ଥକ । ମଣିଷ ଜନ୍ମ ହୁଏ ଉଲଗ୍ନ ହୋଇ, ସୃଷ୍ଟିର ପ୍ରଥମ ପର୍ଯ୍ୟାୟରେ ବଞ୍ଚୁଥିଲା ଉଲଗ୍ନ ହୋଇ, ଆଉ ଆଜିର ଉଗ୍ର ଆଧୁନିକତା ନାଁରେ ରଙ୍ଗବେରଙ୍ଗର ପୋଷାକ ପିନ୍ଧି ପୁନଶ୍ଚ ନଗ୍ନ ହେଉଛି । ଆଜିକାଲି ଅଧିକାଂଶ ନଗ୍ନ ନାରୀର ଶରୀର ଦେଖିବାକୁ ମିଳୁଛି ବିଭିନ୍ନ ବିଜ୍ଞାପନ ଓ ଚଳଚିତ୍ର ପର୍ଦ୍ଦାରେ । କ୍ଲବଡ୍ୟାନ୍ସ ଓ ପାର୍ଟିମାନଙ୍କରେ ନଗ୍ନ ନାରୀମାନେ ଉଚ୍ଛୃଙ୍ଖଳିତ ହୋଇ ପ୍ରେତ ପ୍ରାୟ ନୃତ୍ୟ କରିବାର ଦେଖାଯାଉଛି; କିନ୍ତୁ ଆମେ ମନେରଖିବା ଉଚିତ୍ ନାରୀ ପୋଷାକ ପିନ୍ଧେ ଲଜ୍ୟା ନିବାରଣ ପାଇଁ, ସୃଷ୍ଟିକର୍ତ୍ତା ତାକୁ ଯେଉଁ ଭିନ୍ନ ଶରୀର ଦେଇଛନ୍ତି ତାକୁ ସଂଭ୍ରମ ସହ ଢ଼ାଙ୍କି ରଖିବା ପାଇଁ ଏବଂ ନିଜ ସଭ୍ୟତା ଓ ସଂସ୍କୃତିର ସମ୍ମାନ ରକ୍ଷାକରି ସେହି ଅନୁସାରେ ସାଜସଜ୍ଜା ବେଶ ପୋଷାକ ପିନ୍ଧି ନିଜକୁ ମହାନ୍ କରିବାକୁ । ଆଦିବାସୀ ରମଣୀର ନଗ୍ନ ଦେହ ଦେଖି ଲଜ୍ଜିତ ହେଉଥିବା ଆଧୁନିକ ମଣିଷ ପ୍ରଥମେ ନିଜକୁ ଦେଖୁ ଏବଂ ବିଚାରରେ ଉପନୀତ ହେଉ ଯେ, ଅଶିକ୍ଷା ଓ ଆଦିମତା ପାଇଁ ସେମାନେ ନଗ୍ନ ।



# ରସକଲ୍ଲୋଳ ଓ କବି ଦୀନକୃଷ୍ଣ ଦାସ

*ସୁକାନ୍ତ କୁମାର ମଲ୍ଲିକ*
+୩, ଦ୍ୱିତୀୟ ବର୍ଷ କଳା ସମ୍ମାନ

ଉତ୍କଟ ସାଂସାରିକ ଦୈନ୍ୟ ଓ ସାମାଜିକ ତାଡ଼ନାର କଷାଘାତରେ ନିଷ୍ପେଷିତ ହୋଇ ସପ୍ତଦଶ ଶତାବ୍ଦୀରେ ଯେଉଁ ମହାନ ଉତ୍କଳୀୟ ସାରସ୍ୱତ ସେବକ ଭକ୍ତିଗଦ୍‌ଗଦ୍ ଚିତ୍ତ ଓ ଲୋତକାପ୍ଳୁତ ନେତ୍ରରେ ପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ ପୂର୍ବକ -

''କଳି ଯେ ତୁମ ନାମ କୁସୁମ
ଯତନ କରି ମାଳା ସୁଷମ
ତାହା ମୁଲାଇ ନେବାକୁ କହି
ନୋହିଲେ କ୍ଷମ ସେ ।''

ପ୍ରଭୃତି ଭାଷାରେ ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦରେ ସ୍ୱକୀୟ ଭକ୍ତି ପୁଷ୍ପାଞ୍ଜଳି ଅର୍ପଣ ଓ ଆତ୍ମନିବେଦନ କରୁଥିଲେ ସେ ହେଉଛନ୍ତି ବିଖ୍ୟାତ ରସକଲ୍ଲୋଳ କାବ୍ୟର ରଚୟିତା ଗୌଡ଼ୀୟ ଭକ୍ତକବି ଦୀନକୃଷ୍ଣ ଦାସ ।

ରୀତିଯୁଗର ଅନ୍ୟତମ ଶ୍ରେଷ୍ଠ କବି ଦୀନକୃଷ୍ଣ ଦାସ ଜୀବନ ଯନ୍ତ୍ରଣାରେ ପ୍ରପୀଡ଼ିତ ହୋଇ ମଧ୍ୟ ନୀଳାଦ୍ରୀନାଥ ଜଗନ୍ନାଥଙ୍କର ଭକ୍ତିରେ ତାଙ୍କର ଅନ୍ତର ଉଦ୍‌ବୁଦ୍ଧ ହୋଇଉଠିଥିଲା । ରାଜରୋଷକଷାୟିତ ଦୀନକୃଷ୍ଣ ଅନ୍ୟାୟ ଓ ଅବିଚାର ନିକଟରେ ନତମସ୍ତକ ହୋଇନଥିଲେ ବରଂ ସକଳଦୁଃଖ ନିର୍ଯ୍ୟାତନାକୁ ବରଣ କରିନେଇ ସେ ଜୀବନର ସାମସଂଗୀତ ଗାନ କରିଥିଲେ । ''ରସକଲ୍ଲୋଳ'' ତାଙ୍କ କାବ୍ୟ ପ୍ରତିଭାର ଅମୂଲ୍ୟ ଅର୍ଘ୍ୟ । କେବଳ କୃଷ୍ଣଭକ୍ତି ପାଇଁ ଏ କାବ୍ୟ ପ୍ରସିଦ୍ଧ ନୁହେଁ । ଏହା ପ୍ରସିଦ୍ଧିଲାଭ କରିଛି ଏହାର ଲଳିତ କୋମଳ ପଦାବଳୀ ପାଇଁ । ଲଳିତ ପଦାବଳୀ ଯେପରି ପାଠକଙ୍କୁ ସ୍ପର୍ଶକରେ ସେହିପରି ମଧ୍ୟ ଏହାର ଦିବ୍ୟ ଭାବରାଜି ପାଠକ ପ୍ରାଣରେ ରେଖାପାତ କରେ । ''ରସକଲ୍ଲୋଳ'' ଭକ୍ତିଗ୍ରନ୍ଥ ହେଲେ ମଧ୍ୟ ଏହା ଏକ ରସଗ୍ରନ୍ଥ । କବି ଦୀନକୃଷ୍ଣ ଏ ଗ୍ରନ୍ଥ ରଚନା କରିବା ପାଇଁ ଅନେକ ଗ୍ରନ୍ଥର ସାହାଯ୍ୟ ନେଇଛନ୍ତି ।

(୧) ଭାଗବତ
(୨) ହରିବଂଶ
(୩) ବ୍ରହ୍ମପୁରାଣ
(୪) ବ୍ରହ୍ମବୈବର୍ତ୍ତ୍ୟ ପୁରାଣ
(୫) ଗୀତଗୋବିନ୍ଦ

ପ୍ରଭୃତି ଗ୍ରନ୍ଥ ଅଧ୍ୟୟନ କରି ସେଥିରୁ ଯେଉଁ ଭାବ ଗ୍ରହଣ କରିଥିଲେ, ତାକୁ ''ରସକଲ୍ଲୋଳ''ରେ ପ୍ରକାଶ କରିଛନ୍ତି । ରସକଲ୍ଲୋଳ ତା'ର ଲଳିତ ପଦାବଳୀ ପାଇଁ ବିଖ୍ୟାତ । ଏହା ସଂପର୍କର ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଭାଷାରେ -

''ଉପମା ଭଂଜ ବୀରସ୍ୟ ତସୈଂ ବଚାର୍ଥ ଗୌରବମ୍
କଲ୍ଲୋଳେ ପଦଲାଳିତ୍ୟ ସନ୍ତିଚିନ୍ତା ମଣୌଏୟଃ ।''

**ରସକଲ୍ଲୋଳର ରସ :-**

ରସକଲ୍ଲୋଳ ଯଥାର୍ଥରେ ଅଖଣ୍ଡ ରସର କମନୀୟ ତରଙ୍ଗିଣୀ । ଏହା ପୁଣି ବହୁ ଭାବର ଅପୂର୍ବ ଗନ୍ତାଘର । ଯଥାର୍ଥ ବୁଦ୍ଧିରୂପକ ମନ୍ଦର ପର୍ବତ ଦ୍ୱାରା ଏହାକୁ ମନ୍ଥନ କଲେ, ଏଥିରୁ ରସ ଆସ୍ୱାଦନ କରାଯାଇପାରେ । ତେଣୁ କବି କହିଛନ୍ତି -

'''କ' ଅକ୍ଷରେ ହୋଇଛି ନିୟମ
କଥା ନୋହେ ଦିବ୍ୟ ଅଦିବ୍ୟ ସମ

କେତେ କଉତୁକ ଅଛନ୍ତି ଏଥି
କେବଳ କ୍ଷୀରସିନ୍ଧୁ ପ୍ରାୟେ ମନ୍ଥି
କର ରସଜାତ, କରି ଧୀଷଣା ମନ୍ଦର ପର୍ବତ ।''

ଭକ୍ତକବି ଦୀନକୃଷ୍ଣ ଦାସ ଏହି କାବ୍ୟରେ ରସରାଜ ଶ୍ରୀକୃଷ୍ଣ ଓ ଭାବମୟୀ ଗୋପାଙ୍ଗନାମାନଙ୍କର ମିଳନ ବିଚ୍ଛେଦଜନିତ କରୁଣ ମଧୁର ରସକୁ ଲଳିତ କୋମଳ ଶବ୍ଦ ଓ ପଦବିନ୍ୟାସରେ ପ୍ରକାଶ କରି ଅପୂର୍ବ ରସକଲ୍ଲୋଳ ସୃଷ୍ଟି କରି ଅଛନ୍ତି । କାବ୍ୟର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଭକ୍ତିରସ ପ୍ରବାହ ସୃଷ୍ଟି ହୋଇଥିଲେ ହେଁ ବହୁସ୍ଥଳରେ ଶୃଙ୍ଗାର ବା ମଧୁର ରସର କଲ୍ଲୋଳ ଦେଖିବାକୁ ମିଳିଥାଏ । ଏତଦ୍‌ବ୍ୟତୀତ ଭକ୍ତି କାବ୍ୟରେ ବୀର, ବିଭତ୍ସ, ଭୟାନକ, ହାସ୍ୟ, କରୁଣ ବାତ୍ସଲ୍ୟ, ଶାନ୍ତି, ଆଦିରସ ମଧ୍ୟ ସ୍ଥଳ ବିଶେଷରେ ପ୍ରକାଶିତ ହୋଇ କାବ୍ୟ ସୌନ୍ଦର୍ଯ୍ୟ ବୃଦ୍ଧି କରିବାରେ ସାହାଯ୍ୟ କରିଛି । କାବ୍ୟ ସୁନ୍ଦରୀର ଲଳିତ ଭାବପ୍ରକାଶ କରିବା ପାଇଁ କବିମାନେ ବିଭିନ୍ନ ରସର ଅବତାରଣା କରିଥିଲେ ହେଁ ସେଥିରେ ଗୋଟିଏ ରସ ଅବଲମ୍ବନ କରି ଆତ୍ମପ୍ରକାଶ କରିଥାଆନ୍ତି । ରସକଲ୍ଲୋଳରେ ମୁଖ୍ୟରସ ଶୃଙ୍ଗାର। ଏହା କେତେବେଳେ ସମ୍ଭୋଗ ଶୃଙ୍ଗାର ତ କେତେବେଳେ ବିପ୍ରଲୟ ଶୃଙ୍ଗାର ରୂପେ ବର୍ଣ୍ଣିତ ।

ରସକଲ୍ଲୋଳର ପ୍ରକୃତି ବର୍ଣ୍ଣନା -

ଯୁଗେଯୁଗେ ପ୍ରକୃତିର ନୈସର୍ଗିକ ବିଳାସ କବି ପ୍ରାଣରେ ସୃଷ୍ଟି କରିଆସିଛି ବିଚିତ୍ରଭାବ । ଋତୁଚକ୍ରର ଆବର୍ତ୍ତନରେ ତା'ର ପ୍ରାଣରେ ଦେଖାଦେଇଛି ଭାବାନ୍ତର । ବାହ୍ୟ ପ୍ରକୃତିର ବର୍ଣ୍ଣବିଭା ତାକୁ କେବେ ଚମତ୍କୃତ କରିନାହିଁ । ଅନ୍ତଃ ପ୍ରକୃତିର ମାନବୀୟ ସ୍ୱରୂପ ତାକୁ ବିମୋହିତ କରିଛି । ରୀତିଯୁଗର ଅନ୍ୟତମ ବିଶିଷ୍ଟ କବି ଦୀନକୃଷ୍ଣ ରସକଲ୍ଲୋଳରେ କେବଳ ବାହ୍ୟ ପ୍ରକୃତିରେ ବର୍ଣ୍ଣନା ନାହିଁ । ଅନ୍ତଃ ପ୍ରକୃତିର ବର୍ଣ୍ଣନାରେ ଏହା ସୁ-ଶୋଭିତ । ଦୀନକୃଷ୍ଣଙ୍କର ପ୍ରକୃତି ବର୍ଣ୍ଣନା ମଧ୍ୟରେ ସର୍ବପ୍ରଥମେ ତାଙ୍କର ଋତୁଚିତ୍ରଣ ପାଠକରି ଦୃଷ୍ଟିଆକର୍ଷଣ କରିଥାଏ । ସେ ଏକାଦଶ ଛାନ୍ଦଠାରୁ ଆରମ୍ଭ କରି ତ୍ରୟୋବିଂଶ ଛାନ୍ଦପର୍ଯ୍ୟନ୍ତ ପାଞ୍ଚଟି ଋତୁର ଚିତ୍ରଣ କରିଅଛନ୍ତି । ଦ୍ୱାଦଶ ଛାନ୍ଦରେ କବି ଋତୁରାଜ ବସନ୍ତର ବର୍ଣ୍ଣନା କରିବାକୁ ଯାଇ ଗାଇଛନ୍ତି -

''କୁସୁମ ସମୟ ହୋଇଲା ଉଦୟ
ଦକ୍ଷିଣା ପବନ ବହିଲା
କାମଦେବ ଦୂତ ହୋଇ ମହାମତ୍ତ
ପଞ୍ଚମ ସ୍ୱରରେ କହିଲା !
କନ୍ଦର୍ପ, ଦର୍ପ ହୋଇଲା ଅତିଶୟ
କୁସୁମ ବିଶିଖ କରିବାକୁ ଲାଖ
କାମିକାମିନୀ କଲେ ଭୟ ।''

ରୀତିଯୁଗର ଅନ୍ୟ କବିମାନେ ବସନ୍ତ ବର୍ଣ୍ଣନା କରିଅଛନ୍ତି । ତେବେ ଦୀନକୃଷ୍ଣଙ୍କ ଭାଷାବିନ୍ୟାସ ଓ ଭାବ ଐଶ୍ୱର୍ଯ୍ୟ ଅନ୍ୟମାନଙ୍କ ଲେଖାରେ ବିରଳ । ବସନ୍ତ ଋତୁ ପରେ ଆଗମନ କରେ ଗ୍ରୀଷ୍ମ ଋତୁ । କବି ଏହି ଋତୁର ବର୍ଣ୍ଣନା କରିଅଛନ୍ତି -

''କ୍ରମେ ମଧୁ ଶେଷ ହୋଇଲା
ପ୍ରବେଶ ହୋଇଲା ଗ୍ରୀଷମ ସମୟ
କରମାଳି କର ମହା ଖରତର
କମଳ କୁମାର ପରାୟେ ।
ସୁଜନେ, କି କହିବା ମହୀତପତ
କରାଇଲା ନୃତ୍ୟ ପଥିକ ପଦକୁ
ସଂଗ୍ରାମଭୂମି ଅଶ୍ୱବତ ।''

***ରସକଲ୍ଲୋଳର ସାମାଜିକ ଜୀବନର ଏକ ମନ୍ମୟ ଆଲେଖ୍ୟ :—***

ରସକଲ୍ଲୋଳ ରୀତି ଆଦର୍ଶ ନିୟମିତ ଏକ ମନୋଜ୍ଞ ଲାଳିତ୍ୟ କାବ୍ୟ ହେଲେ ହେଁ ଏହା ତତ୍‌କାଳୀନ ସାମାଜିକ ପ୍ରାଣ ପ୍ରବାହରୁ ଅଲଗା ହୋଇପାରିନାହିଁ । ଏଥିରେ କବି ଜଗନ୍ନାଥଧର୍ମ ପ୍ରସୂତ ଯୋଗଜ୍ଞାନ ପଣ୍ଡିତ ବୈଷ୍ଣବଧର୍ମ ପ୍ରବାହିତ ସାମାଜିକ ଜୀବନର ଚିତ୍ରକୁ ପ୍ରକାଶ କରିଅଛନ୍ତି । ବୈଷ୍ଣବ ସହଜିଆମାନଙ୍କୁ

